# ମାନସିଂହ ଗ୍ରନ୍ଥାବଳୀ

[ ଦ୍ୱିତୀୟ ଖଣ୍ଡ ]

ଡକ୍ଟର ମାୟାଧର ମାନସିଂହ

ସଂପାଦନା : ଡକ୍ଟର ଶ୍ରୀଚରଣ ମହାନ୍ତି

ଗ୍ରନ୍ଥମନ୍ଦିର

MANSINHA GRANTHABALI – Vol.-2
by **Dr. Mayadhar Mansinha**
Published by – Manoj Kumar Mohapatra
**GRANTHA MANDIR,** Binodbihari, Cuttack - 2

First Edition : 1962
Second Edition : 1994
Third Edition : December, 1998
Fourth Edition : April, 2007
Fifth Edition : 2010

Price : Rs. 250/-

ପ୍ରକାଶକ :
ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ପ୍ରକାଶନ ପରିଚାଳନା : ଅଭିରାମ ମହାପାତ୍ର

ମୁଦ୍ରକ :
ତପନ କୁମାର ମହାପାତ୍ର
**ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟସ୍,**
ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ୧୯୬୨
ଦ୍ୱିତୀୟ ସଂସ୍କରଣ : ୧୯୯୪
ପରିବର୍ଦ୍ଧିତ ତୃତୀୟ ସଂସ୍କରଣ : ଡିସେମ୍ବର, ୧୯୯୮
ଚତୁର୍ଥ ସଂସ୍କରଣ : ଏପ୍ରିଲ୍, ୨୦୦୭
ପୁନର୍ମୁଦ୍ରଣ : ୨୦୧୦

ମୂଲ୍ୟ : ଟ.୨୫୦/-

## ନୂତନ ସଂସ୍କରଣର ଭୂମିକା

ଡକ୍ଟର ମାୟାଧର ମାନସିଂହ (୧୯୦୫-୧୯୭୩) ଚଳିତ ଶତାବ୍ଦୀ ଓଡ଼ିଆ ସାହିତ୍ୟର ଜଣେ ଅନନ୍ୟ ସ୍ରଷ୍ଟା । କାବ୍ୟ, କବିତା, ନାଟକ, ପ୍ରବନ୍ଧ, ସମାଲୋଚନା, ଜୀବନୀ, ପାଠ୍ୟପୁସ୍ତକ ଆଦି ସାହିତ୍ୟର ବିବିଧ ବିଭାଗକୁ ନେଇ ତାଙ୍କର ସୃଷ୍ଟିଜଗତ ଗଠିତ । ଏହି ସୃଷ୍ଟିଜଗତର ପ୍ରତ୍ୟେକ ପୃଷ୍ଠା ମାନସିଂହୀୟ ସ୍ୱାତନ୍ତ୍ର୍ୟରେ ଭାସ୍ୱର । ଗତାନୁଗତିକତା ପ୍ରତି ସେ କେବଳ ନିସ୍ପୃହ ନୁହନ୍ତି, ଅନେକାଂଶରେ ତା' ବିରୋଧରେ ସ୍ୱର ଉତ୍ତୋଳନ ବି କରିଛନ୍ତି । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ନିଜପାଇଁ ନୂତନ ପଥ ପ୍ରସ୍ତୁତ କରିବା ମାନସିଂହଙ୍କ ବ୍ୟକ୍ତିତ୍ୱର ଏକ ବିଶିଷ୍ଟ ଦିଗ ।

ମାନସିଂହଙ୍କର ଏହି ବୈଚିତ୍ର୍ୟପୂର୍ଣ୍ଣ ସ୍ରଷ୍ଟା ଓ ବ୍ୟକ୍ତିଜୀବନର ବହୁ ସ୍ତର ମଧ୍ୟରୁ ଗୋଟିଏ ସ୍ତର ଓଡ଼ିଆ ପାଠକମାନଙ୍କ ନିକଟରେ ଅଧିକ ପରିଚିତ । ସେହି ସ୍ତରଟି ହେଲା ମାନସିଂହଙ୍କ କବିତା, ବିଶେଷତଃ ପ୍ରେମକବିତା । ଚହଲା ମନ ଦୋହଲା ଭାବନାକୁ ଅକ୍ଷର ଫୁଲରେ ସଜାଇଛନ୍ତି ମାନସିଂହ । ଯେଉଁ ପ୍ରେମକବିତା ପ୍ରଣୟର ଗାଥା ଗାଇଥିବାରୁ କବି ମାନସିଂହ ପାଠକ ମହଲରେ ଗୋଟାପଣେ ପ୍ରେମ ଓ ପ୍ରଣୟର କବି ବୋଲି ପରିଚିତ ହୋଇଗଲେ, ମାନସିଂହଙ୍କ ଜୀବନରେ ଏହା ମାତ୍ର ଅଳ୍ପକାଳ ପାଇଁ ଆସିଥିଲା; ତା'ପରେ ସେ ଘଟଣାର ପୁନରାବୃତ୍ତି ହୋଇନି, ସେ ଘଟଣା ପୁଣି ଅଳ୍ପ ଦିନ ପାଇଁ । ମାନସିଂହଙ୍କ କାବ୍ୟବାଣୀ ହିଁ ତାଙ୍କ ଜୀବନ-ବାଣୀ । ତାଙ୍କର ପ୍ରତ୍ୟେକ କବିତାର ପୃଷ୍ଠପଟରେ ତାଙ୍କ ଜୀବନର ଆତ୍ମଲିପି ପ୍ରକାଶିତ । କବିତାରେ ଲିପିବଦ୍ଧ ଆତ୍ମଲିପିରେ ସେ ସମୟର ସ୍ପନ୍ଦନର ରୂପ ବି ବ୍ୟାପକ ଭାବରେ ପ୍ରତିଫଳିତ । ମାତ୍ର ସେହି ସ୍ମୃତିର ରୋମନ୍ଥନରୁ ହିଁ 'ଧୂପ'ର ସୃଷ୍ଟି ।

ପ୍ରୀତିର ଦୀପ ଜଳିଥିଲାବେଳେ 'ଧୂପ'ର ସୃଷ୍ଟି ହୋଇନଥିଲା – ଧୂପ-ସମ-କବିପ୍ରାଣ ଜଳିଥିଲା ଅନେକ ଆଗରୁ । 'ଧୂପ'ର ସୃଷ୍ଟ ବେଳକୁ ଖାଲି ମହକ ଯାହା ଥିଲା, ଆଉ 'ଧୂପ' ପ୍ରକାଶ ପାଇବା ବେଳକୁ କବିଙ୍କର ଚହଲା ମନ ସ୍ଥିର ହେବାକୁ ବସିଲାଣି । ସମବୟସୀର ପ୍ରୀତିଗାଥା ଗାଇଲାବେଳେ 'ଚାରୁ-କେଶୀ-ସେଇ-ବାଳିକା' କବି ମାନସିଂହଙ୍କର ହୃଦୟ ସିଂହାସନର ଦ୍ୱାରଦେଶରେ । ମନ୍ଦିର ପ୍ରବେଶ

ପୂର୍ବରୁ କବି ମାନସିଂହ 'ଧୂପ'କୁ ସେଇ ଚାରୁକେଶୀ ବାଳିକା ହେମଲତାଙ୍କୁ ଉତ୍ସର୍ଗ କରିଦେଇଛନ୍ତି । 'ଧୂପ'ର ପ୍ରଥମ ସଂସ୍କରଣ ମାନସିଂହଙ୍କ ବିବାହ ପୂର୍ବରୁ ପ୍ରକାଶିତ ହୋଇଥିଲା ଓ ତାହା ଭାବୀ ପତ୍ନୀ ହେମଲତାଙ୍କ କରକମଳରେ ଉତ୍ସର୍ଗ କରାଯାଇଥିଲା ।

ପ୍ରେମକବିତାର କବି ହିସାବରେ ମାନସିଂହଙ୍କର ସ୍ୱୀକୃତି ପଶ୍ଚାତରେ ତାଙ୍କର କବି-ଜୀବନ ଓ ବ୍ୟକ୍ତି-ଜୀବନ ରହିଛି ନିଶ୍ଚୟ । କିନ୍ତୁ ତା' ଅପେକ୍ଷା ଅଧିକ ରହିଛି ଓଡ଼ିଆ ସାହିତ୍ୟ ପାଠକଙ୍କର ଆବଶ୍ୟକତା । ପ୍ରାଚୀନ ତଥା ମଧ୍ୟଯୁଗୀୟ ଓଡ଼ିଆ କବିତାରେ କୌଣସି କବି ନିଜର ପ୍ରେମ ଜୀବନକୁ ମାନସିଂହଙ୍କ ଭଳି ମାଦକଭରା ଭାଷା ଓ ଖୋଲା ହୃଦୟ ନେଇ ପ୍ରକାଶ କରିନଥିଲେ । ଛଳନା ଓ କୃତ୍ରିମତା ଭିତରେ ଏବଂ ଅନୁସରଣସର୍ବସ୍ୱତା ଭିତରେ ଓଡ଼ିଆ ପାଠକ ଆତ୍ମ-ମୁକ୍ତି ଖୋଜୁଥିଲା, ଅନୁଭବସିଦ୍ଧ କବିତାର ଅନୁସନ୍ଧାନ କରୁଥିଲା । 'ଧୂପ', 'ପ୍ରେମପୁଷ୍ପ', 'ହେମପୁଷ୍ପ', 'ହେମଶସ୍ୟ', 'ଉପେକ୍ଷିତା', ଇତ୍ୟାଦିର କବିତାବଳୀରେ ଓଡ଼ିଆ ପାଠକର ଅବଚେତନରେ ଥିବା ରୁଦ୍ଧ ଆବେଗ ଯେଉଁଭଳି ଭାଷାରୂପ ନେଇଥିଲା । ଫଳରେ ସେ ସମୟର ଦୁର୍ଗମ ଅଞ୍ଚଳ 'ନନ୍ଦଲା'ର ଅଭାବକ୍ଲିଷ୍ଟ ଯୁବକ ମାୟାଧର ମାନସିଂହ ହଠାତ୍ ଓଡ଼ିଶାର କେବଳ ଯେ ଜଣେ ବିଶିଷ୍ଟ କବି ହୋଇଗଲେ ନୁହେଁ, ନୂତନ ପୀଢ଼ି ପାଠକର ହୃଦୟ-ସିଂହାସନରେ ଏକେଶ୍ୱର ହୋଇ ବିରାଜିତ ହେଲେ ।

ଓଡ଼ିଆ ପାଠକମାନଙ୍କର ଅଜସ୍ର ଶ୍ରଦ୍ଧା ଫଳରେ ମାନସିଂହ କବିଭାବରେ ପରିଚିତ ଓ ପ୍ରତିଷ୍ଠିତ ହୋଇଛନ୍ତି ସତ୍ୟ; କିନ୍ତୁ ଏକ ନିର୍ଦ୍ଦିଷ୍ଟ ଭାବର କବିତା ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରିବା ଫଳରେ ମାନସିଂହଙ୍କର ଅନ୍ୟାନ୍ୟ ଭାବଧାରାର କବିତାଗୁଡ଼ିକ ଅବହେଳାର ଶରବ୍ୟ ହୋଇଛି । ମାନସିଂହଙ୍କ କବି-ଜୀବନର ବୈଚିତ୍ର୍ୟ ଏହା ଫଳରେ ପାଠକ ଦୃଷ୍ଟିରେ ଧରାପଡ଼ିନାହିଁ । ଏଠାରେ ସ୍ମରଣଯୋଗ୍ୟ – ମାନସିଂହଙ୍କ କବିତାର ମୂଳଭିତ୍ତି ହେଲା ଇହଜଗତ ପ୍ରତି ତାଙ୍କର ଆସକ୍ତି ଓ ଅତ୍ୟଧିକ ମାନବପ୍ରୀତି । ଅବଶ୍ୟ ଏହା ସହିତ ଜଡ଼ିତ ରହିଛି ତାଙ୍କର ଦେଶପ୍ରୀତି ଓ ରୂପପ୍ରୀତି । ମାନବବାଦୀ କବି ଗତାନୁଗତିକ ପିତୁଳାପୂଜା ପୁରୋହିତ-ତନ୍ତ୍ରରେ ଆସ୍ଥା ସ୍ଥାପନ କରିପାରିନାହାନ୍ତି । ସେ ଉତ୍ତର-ଜୀବନରେ ବୌଦ୍ଧ ଧର୍ମ ପ୍ରତି ଆସକ୍ତ ହୋଇ ଯେ ଅପୌତ୍ତଳିକ ହୋଇଥିଲେ ତାର ସୂଚନା ୧୯୩୫ ମସିହା ପୂର୍ବରୁ ଦେଖାଦେଇଥିଲା । 'ମାନବସେବା ହିଁ ମାଧବ ସେବା', 'ନରସେବା ହିଁ ନାରାୟଣ ସେବା' । 'ନର ଦେହ ହୀନ ମୃତ୍ତିକା ନୁହେଁ, ନାରାୟଣ ତା'ର ଜୀବନ-ରସ । ମହାଚେତନର ଅଂଶ ସେ ଏକ, ବିକାଶ ପାଇଁକି ଶରୀର-ବଶ' । (ବାପୁଜୀ-ଜୁଲାଇ-୧୯୩୮) ଏହି ସ୍ୱର

ପୂର୍ବରୁ 'ଦେବପୂଜା' (୧୯୩୪) କବିତାରେ ପ୍ରତିଧ୍ୱନିତ । 'ଏବେ କାଠ ପଥର ନପୂଜି, ଆସ ପୂଜ ଜୀବନ୍ତ ଦେବତା / ଯା' ଆଖିରୁ ଲୁହଯିବ ବହି କହିଦେଲେ ପଦେ ମଧୁକଥା ।' ମାନସିଂହ ବ୍ୟକ୍ତିଗତ ଭାବରେ ସାମ୍ୟବାଦୀ ଆନ୍ଦୋଳନକାରୀମାନଙ୍କ ସହ ସଂପୃକ୍ତ ନ ଥିଲେ ମଧ୍ୟ ସ୍ୱର୍ଗତ ଭଗବତୀ ଚରଣ ପାଣିଗ୍ରାହୀ ଜଣେ ଲେଖକ ଭାବରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ । ମହାତ୍ମା ଗାନ୍ଧିଙ୍କ ଭାବଦର୍ଶନରେ ଅନୁପ୍ରାଣୀତ ମାନସିଂହ ୧୯୩୪ ବେଳକୁ ଚିନ୍ତାରାଜ୍ୟରେ ସାମ୍ୟବାଦୀ ଭାବ ଓ ମାନବବାଦୀ ଦୃଷ୍ଟିକୋଣ ଗ୍ରହଣ କରିବା ଅମୂଳକ ନୁହେଁ । ତାଙ୍କର 'ତକିଆ ଜୀବର ବିଳାପ' ଓ 'ଜୀବନଚିତା'ର ଅନେକ କବିତାରେ ସେ ଭାବଧାରା ସ୍ପଷ୍ଟ । ପରବର୍ତ୍ତୀ ସମୟରେ ସେ ଚିନ୍ତାଧାରାର ପ୍ରତିଫଳନ ହୋଇଛି 'ସ୍ୱରାଜ୍ୟାଶ୍ରମ' କବିତା ପୁସ୍ତକରେ ।

'କୃଶ' ସନେଟ ଶତକରେ ମାନସିଂହଙ୍କର ଆଧିଭୌତିକ ଚେତନା ପ୍ରତିଫଳିତ । କବି ମାନସିଂହ, ଚିନ୍ତାନାୟକ ମାନସିଂହ, ମୁହୂର୍ତ୍ତର ଭାବାବେଗକୁ ପ୍ରାଣର କେତେକ ଗଭୀର ଅନୁଭୂତି ଓ ଜିଜ୍ଞାସାକୁ ଅନ୍ୟ ରୀତି ଅପେକ୍ଷା ଅଧିକତର ପରିଚ୍ଛନ୍ନ ଭାବରେ ପ୍ରକାଶ କରିବା ପାଇଁ ସନେଟ୍ ରଚନାର ଅଭ୍ୟାସ କରିଥିଲେ । ସେ ଯେତେବେଳେ ଏ ପ୍ରକାର ଭାବନାକୁ ପ୍ରକାଶ କରିବା ପାଇଁ ଚାହିଁଛନ୍ତି ସେତେବେଳେ ସନେଟର ଆଶ୍ରୟ ନେଇଛନ୍ତି । ଯେତେବେଳେ ବ୍ୟାପକ ଭାବେ ବର୍ଣ୍ଣନା ପାଇଁ ଇଚ୍ଛା କରିଛନ୍ତି, ସେତେବେଳେ ଚିନ୍ତାଶୀଳ ପ୍ରବନ୍ଧର ଆଶ୍ରୟ ନେଇଛନ୍ତି । ୧୯୪୫ରୁ ୧୯୫୬ ମଧ୍ୟରେ 'କୃଶ'ର ସମସ୍ତ କବିତା ରଚିତ । (ପରିଶିଷ୍ଟରେ କବିତାଗୁଡ଼ିକର ସମୟ / ସ୍ଥାନ ସୂଚିତ) ପୂର୍ବ-ଗଡ଼ଜାତ ସମୂହର ଶିକ୍ଷା ପରାମର୍ଶଦାତା, ଉତ୍ତର-ଓଡ଼ିଶା, ଦକ୍ଷିଣ-ଓଡ଼ିଶାର ଶିକ୍ଷାପରିଦର୍ଶକ ରହିଥିବା ସମୟରେ ଭ୍ରାମ୍ୟମାଣ ଜୀବନ ମଧ୍ୟରେ ବିଭିନ୍ନ ସ୍ଥାନରେ 'କୃଶ' କବିତାର ପୃଷ୍ଠଭୂମି ଓ ରଚନା ସମ୍ଭବ ହୋଇଛି । ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷତା କାଳରେ ନିଜର ସ୍ୱପ୍ନ ସାକାର କରିବାର ମୁହୂର୍ତ୍ତରେ ଏହି ପୁସ୍ତକର ଅଧିକାଂଶ କବିତାର ସୃଷ୍ଟି ।

କବି ମାନସିଂହଙ୍କର ଦାର୍ଶନିକ ଚିନ୍ତନ, 'କୃଶ'ରେ ପ୍ରତିଫଳିତ ହେବା ସଙ୍ଗେ ସଙ୍ଗେ ଏଥିରେ ତାଙ୍କର ଦୃଷ୍ଟିଭଙ୍ଗୀର ମାର୍ମିକ ପ୍ରକାଶ ଘଟିଛି । ଜହ୍ନ ଓ ମାଟିର କବି, ଫୁଲ-ଫଗୁଣର କବି, ମାନସିଂହଙ୍କ ଜୀବନ ସର୍ବଦା ଝଡ଼ ଝଞ୍ଜା ଓ ଘନ କୁଜ୍ଝଟିକା ମଧ୍ୟରେ ବିତିଛି । ଏଣୁ କାବ୍ୟ, କବିତା, ପ୍ରବନ୍ଧ, ଆଲୋଚନାରେ ସେ ଚାନ୍ଦିନିରାତିର ପୁଲକ, ହସିବା ଫୁଲର ଝଲକ ଓ ବାସିଲା ମଲ୍ଲୀର ମହକ ଦେଖାଇପାରୁଥିଲେ ବି 'ଧୂପ' ଭଳି ନିଜେ ଜଳି ଅନ୍ୟକୁ କେବଳ ବାସନା ଦେଇ ଆସିଛନ୍ତି । ମାନସିଂହ ଯେଉଁ କଳ୍ପଲୋକର କଳ୍ପନା କରୁଥିଲେ ବାସ୍ତବ ଦୁନିଆଁ ତା'ଠାରୁ ଦୂରରେ ଥିଲା । ଏଣୁ ସେ ଅନେକ ସମୟରେ ନିଜ ସହିତ ନିଜେ ସାଲିସ କରି ନ ମାନିବାର ବି

ଦୁଃଖ ଭୋଗ କରିଛନ୍ତି । କାରଣ ଜଟିଳ ଦୁନିଆର କୁଟିଳତା ସହିତ ଅନେକ ସମୟରେ ସେ ସାଲିସ୍ କରିପାରି ନାହାନ୍ତି । ଯେଉଁଠି ବା ସାଲିସ୍ କରିବାକୁ ସହମତ ହୋଇଛନ୍ତି ସେଠାରେ କତିପୟ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ 'ନଇଁପଡ଼ିଥିବ ଯେତିକି ବେଳେ, ବିଧାଏ ମାରିବ ସେତିକି ବେଳେ' ରୀତିରେ ମାଡ଼ିବସିଛନ୍ତି । ଏଭଳି କେତେକ ମୁହୂର୍ତ୍ତର ଦହନରୁ ରକ୍ଷା ପାଇବାପାଇଁ କବି ପ୍ରାଣରୁ ଝରିପଡ଼ିଛି ଅନେକ କବିତା । 'କ୍ରୁଶ'ର ପ୍ରାୟ ସମସ୍ତ କବିତା ସେହି ଶୋକ-ବିକ୍ଷୁବ୍ଧ, ଅଶ୍ରୁ-ଦଗ୍ଧ ଆତ୍ମାର ଶାଶ୍ୱତ ପରିପ୍ରକାଶ ।

'ସିନ୍ଧୁ ଓ ବିନ୍ଦୁ'ର ଦାର୍ଶନିକ ଚିନ୍ତନ କିନ୍ତୁ ଭିନ୍ନ ପ୍ରକାରର । ଉତ୍ତର-ବୟସରେ ରଚିତ ଏହି କବିତାଗୁଡ଼ିକରେ କବିପ୍ରାଣର ଦହନ ପ୍ରତିଫଳିତ ହୋଇଥିଲେ ବି ଭଗବାନ ଗୌତମ ବୁଦ୍ଧଙ୍କ ବାଣୀ ଓ ଭାବନାରେ ପ୍ରଲେପିତ କବି ଆତ୍ମାର ଏହା ପରିପ୍ରକାଶ । ଜୀବନର ଏକ ନିର୍ଦ୍ଦିଷ୍ଟ ପଥରେ ଅବସ୍ଥାନକରି ବିନ୍ଦୁ ମଧ୍ୟରେ ସିନ୍ଧୁକୁ ପରିକଳ୍ପନା କରିଛନ୍ତି କବି ମାନସିଂହ । ପାରମ୍ପରିକ ଭାବନାକୁ ଏକ ନୂତନ ଦୃଷ୍ଟିକୋଣରୁ ଦେଖି-ଛନ୍ତି ସେ । ସିନ୍ଧୁ ତଟରେ ଦଣ୍ଡାୟମାନ ହୋଇ ଆର ପାରିକୁ କଳ୍ପନା ନେତ୍ରରେ ଦେଖିବାର ପ୍ରୟାସ କରିଛନ୍ତି । ଭାରତୀୟ ଧର୍ମ ଦର୍ଶନର ଶ୍ରୀକୃଷ୍ଣଙ୍କୁ ମାନସିଂହ ଏହିପରି ଦେଖିଛନ୍ତି –

> ଯା' ନୀଳିମା ପରିବ୍ୟାପ୍ତ ମହା ଅନ୍ତରୀକ୍ଷେ,
> ଯେ ପୀତ-ଦୁକୂଳ ପିନ୍ଧେ ଉଷା, ପ୍ରଦୋଷରେ,
> ଯା'ଶିରେ ଚନ୍ଦ୍ରିକା-ପୁଚ୍ଛ, ମେଘ ବିଦ୍ୟୁତ୍‌ବନ୍ତ
> ସେ ସୁନ୍ଦର କୃଷ୍ଣ ପଦେ ମୁହିଁ ପୂଜାକରେ ।

ଓଡ଼ିଆ ସାହିତ୍ୟରେ ଚିନ୍ତାନାୟକ ମାନସିଂହ କବିପ୍ରାଣର ଅସଲ ପରିଚୟ ଏବେ ମଧ୍ୟ ଅନେକ ମାତ୍ରାରେ ଅନୁଦ୍‌ଘାଟିତ । ସମସାମୟିକ ପତ୍ରପତ୍ରିକା ଓ ପୁସ୍ତକର ମୁଖବନ୍ଧ, ସମ୍ପାଦକୀୟ ଓ ଭାଷଣ ପ୍ରସଙ୍ଗରେ ଚିନ୍ତାନାୟକ ମାନସିଂହ ଅନେକ ସୃଷ୍ଟି ସମ୍ପଦ ଓଡ଼ିଆ ଜାତିକୁ ଦାନ କରିଯାଇଛନ୍ତି ।

ମାନସିଂହ ଜଣେ ତୁଚ୍ଛା ପ୍ରେମ-ପ୍ରଣୟର କବି – ଏଭଳି ଏକ ଧାରଣା ସୃଷ୍ଟି କରିବା କ୍ଷେତ୍ରରେ ସ୍ୱୟଂ ମାନସିଂହ ନିଜେ କମ୍ ଦାୟୀ ନୁହନ୍ତି । ତାଙ୍କର ପ୍ରାଥମିକ ପ୍ରକାଶିତ ପୁସ୍ତକଗୁଡ଼ିକ ତ ଥିଲା ପ୍ରେମ-ମୂଳକ, ତା' ବାହାରେ ତାଙ୍କଦ୍ୱାରା ସଂପାଦିତ ନିଜର ରଚନାବଳୀ 'ମାନସିଂହ ଚୟନ' ପ୍ରଥମଭାଗ ଓ ଦ୍ୱିତୀୟ ଭାଗ ଅନେକାଂଶରେ ଏହି ଧାରଣା ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା । ମାନସିଂହଙ୍କ କବିତା ତଥା ସମଗ୍ର ସୃଷ୍ଟିସଂପଦର ଯଥାର୍ଥ ଅଧ୍ୟୟନ ପାଇଁ ତାଙ୍କ ଗ୍ରନ୍ଥାବଳୀର ଏକ ବୈଜ୍ଞାନିକ ସମ୍ପାଦନା ଅତ୍ୟନ୍ତ ଜରୁରୀ

ସୁସ୍ଥ ସଂପାଦନା ଅଭାବରୁ ତାଙ୍କ କବିତା ସଂପର୍କରେ ଏକପାର୍ଶ୍ୱିକ ଧାରଣା କେବଳ ସୃଷ୍ଟିହୋଇନାହିଁ, ଅନେକ କବିତାର ଅଧ୍ୟୟନ କ୍ଷେତ୍ରରେ ତାହା ବିଘ୍ନ ସୃଷ୍ଟି କରିଛି । ଏହି ଖଣ୍ଡରେ ପ୍ରକାଶିତ 'ଜୀବନଚିତା'ର 'ନିଦ୍ରିତ ଭଗବାନ' କବିତାକୁ ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଗ୍ରହଣ କରାଯାଇପାରେ । 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ଏହି କବିତାରୁ କବି ମାନସିଂହ ପରବର୍ତ୍ତୀ ସମୟରେ ୩୦ ଧାଡ଼ି ଉଠାଇଦେଇଛନ୍ତି ଓ କେତେକ ଧାଡ଼ିକୁ ପରିବର୍ତ୍ତନ କରିଛନ୍ତି । ଏ ଖଣ୍ଡରେ ସେହି ଅଂଶକୁ ସଂଯୋଜିତ କରାଯାଇଛି (ପରିଶିଷ୍ଟ ଦ୍ରଷ୍ଟବ୍ୟ) । ପୂର୍ବ ଖଣ୍ଡ ଭଳି ଏ ଖଣ୍ଡରେ ବି ମାନସିଂହଙ୍କ ଜୀବଦ୍ଦଶାରେ ପ୍ରକାଶିତ ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ (୧୯୬୨)କୁ ମୂଳ ପାଠଭାବେ ଗ୍ରହଣ କରାଯାଇଛି ।

'ନିଦ୍ରିତ ଭଗବାନ' ମୂଳ କବିତାରେ ମାନସିଂହଙ୍କର ଅନୁଶୋଚନା ସ୍ପଷ୍ଟ ହୋଇଯାଇଛି । କବିତାର ପରିବର୍ତ୍ତିତ ରୂପ ପାଠକଲେ ଜଣାଯାଏ, ଏହା ଯେପରି ଈଶ୍ୱରଙ୍କ ନିକଟରେ ଭକ୍ତର ଅଭିମାନ ବ୍ୟକ୍ତ ହୋଇଛି ଓ ଏହା ଏକ ଧର୍ମୀୟ କବିତାର ରୂପ ଲାଭ କରିଛି । କିନ୍ତୁ ଯେଉଁ ପାଠକ ପାଠିକା କବିଙ୍କ ମୂଳ ଭାବନାର, କବିଙ୍କ ମୂଳ ଚିନ୍ତନର ସ୍ୱରୂପ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିବେ ସେମାନଙ୍କ ପାଇଁ ପରିଶିଷ୍ଟ ପାଠ୍ୟାଂଶ ନିତାନ୍ତ ଆବଶ୍ୟକ । ବର୍ତ୍ତମାନ ମୂଳ କବିତା ସମ୍ପର୍କରେ ଆଲୋଚନା କରାଯାଉ । ସର୍ବଦ୍ରଷ୍ଟା ସର୍ବମୟକର୍ତ୍ତା ଭଗବାନ ନରକୁ ଅୟନ ଦେଖାନ୍ତି ବୋଲି ନାରାୟଣ; ମାତ୍ର ଯେତେବେଳେ ଏଭଳି ଏକ ଅମୃତସନ୍ତାନ ଅମଡ଼ାରେ ପଥ ବଣା ହୋଇଯାଉଛି, ଯାହା ସମାଜ ଦୃଷ୍ଟିରେ ନିନ୍ଦିତ ଭାବ, ସେତେବେଳେ ବୋଧହୁଏ ନାରାୟଣ ନିଦ୍ରିତ, କାରଣ ସେ ସମୟରେ ଚେତନା ମାଧ୍ୟମରେ, ଚୈତନ୍ୟ ମାଧ୍ୟମରେ ସେ ଦେବଶିଶୁକୁ (ଏଠାରେ ମାନସିଂହଙ୍କୁ) ନିବୃତ୍ତ କରିପାରିଥାଆନ୍ତେ ।

ମାନସିଂହ ଲେଖିଛନ୍ତି – "ପ୍ରଥମ ଯୌବନରେ ବାପା-ମାଆ-ଭାଇ-ଭଉଣୀଙ୍କର ଉପସ୍ଥିତି ସତ୍ତ୍ୱେ ଏକ ନିଃସଙ୍ଗତା ପ୍ରତ୍ୟେକ ଜୀବନରେ ଆସେ – ଏହା ପ୍ରାୟ ସାର୍ବଜନୀନ । ତେବେ ପିତୃ-ମାତୃ-ଭ୍ରାତୃହୀନ ଏକ ନିଃସଙ୍ଗ ତରୁଣକୁ ଯେଉଁ-ମାନେ ସଖ୍ୟ ଦାନକରି ତାକୁ ଅନୁଗୃହୀତ କଲେ, ତାଙ୍କର ମହିମ୍ନ ସ୍ତବ ଗାଇବା ତା' ପକ୍ଷରେ କି ବିଚିତ୍ର ବ୍ୟାପାର ?" ('ଧୂପ' ମୁଖବନ୍ଧ) ଜୀବନର ଉତ୍ତରାର୍ଦ୍ଧରେ ଏ ସ୍ୱୀକାରୋକ୍ତି ତରୁଣ ବୟସରେ କିନ୍ତୁ ଅନ୍ୟରୂପ ନେଇଥିଲା । ସେ ଦିନର 'ଧୂପ'ର କବି ନିଷ୍ଠୁର ଜନତାର ବ୍ୟବହାର ଦେଖି 'ଭାବେ ଅବା ନାହିଁ ବଞ୍ଚିବାର ଅଧିକାର ମୋ'ରେ ଯେଉଁ ଭାବ ବ୍ୟକ୍ତ କରିଥିଲେ, ପୂର୍ବରୁ 'ନିଦ୍ରିତ ଭଗବାନ'ରେ ସେହି ବକ୍ତବ୍ୟକୁ ସ୍ପଷ୍ଟ କରି ଦେଇଛନ୍ତି । ଜୀବନର ଚଲାପଥରେ ସହସା ଭେଟିଥିବା ସାଥୀର

ସଖ୍ୟ / ସଂପର୍କ ଯେ ସମାଜ ନିକଟରେ ନିନ୍ଦିତ ରୂପ ନେବ ଏ କଥା ତରୁଣ ଚିତ୍ତ ଭାବିପାରିନି । ଏଣୁ ମାନସିଂହ ଭଗବାନଙ୍କୁ ଆକ୍ଷେପ କରି କହିଛନ୍ତି – 'ସକଳ ଶୁଣିଲେ, ତୁମେ ନ ଶୁଣିଲ କିଆଁ ?'ରେ (ଦ୍ରଷ୍ଟବ୍ୟ : ପରିଶିଷ୍ଟ) ମାନସିଂହଙ୍କ ଜୀବନର ସେହି ସଂଘର୍ଷ ମୁହୂର୍ତ୍ତର ଚିତ୍ର ପ୍ରତିଫଳିତ । 'ଧୂପ'ର ଅନେକ କବିତାରେ ମାନସିଂହ ଯେଉଁ ପ୍ରଣୟଗାଥା ଗାଇଛନ୍ତି 'ନିଦ୍ରିତ ଭଗବାନ' ରଚନା ବେଳକୁ ସେ କବିର ମନ ଚଳଚଞ୍ଚଳ ଓ ବ୍ୟସ୍ତ ବିବ୍ରତ ଅବସ୍ଥାରେ ରହିଛି । କେବଳ 'ନିଦ୍ରିତ ଭଗବାନ' ନୁହେଁ, 'ଜୀବନଚିତା'ର ଅନେକ କବିତାରେ ସେ ଦିନର ଭାବନା ପ୍ରତିଫଳିତ । 'ଶେଷକଥା' କବିତାରେ କବି କହିଛନ୍ତି –

> ହେ ବିଧାତା,
> ଦେଲ କିମ୍ପା ମୋ' ଜୀବନେ ଯେତେ ଯାହା ଅଭିଜ୍ଞତା ?
> X X X
> ମରମେ ଦେଲ ତ ମୋର ସେନେହର ଭାଦ୍ରବ-ଜାହ୍ନବୀ,
> ଅକାଳେ, ଅକ୍ଷେତ୍ରେ କିନ୍ତୁ ଅବିଚାରେ ଗଲି ମୁହିଁ ପ୍ଲାବି ।
> କାହା ସ୍ନେହ କା'ରେ ଦେଲି, କାହା ପାଇଁ କଲି ଅଭିସାର,
> ଯୋଗ-ଦୋଷେ ସ୍ନେହ ମୋର ହୋଇଗଲା ଘୃଣ୍ୟ ବ୍ୟଭିଚାର ।

'ଧୂପ'ର ମହନୀୟ କବି ଜୀବନର ଗାଥାକୁ, ଜୀବନର କଥାକୁ କେବେ ଅସ୍ୱୀକାର କରି ନାହାନ୍ତି । ବରଂ 'ଧୂପ' ପୂର୍ବରୁ ପ୍ରକାଶିତ 'ଦକ୍ଷିଣା ପ୍ରତି' (୧୯୨୯ ଅଗଷ୍ଟ)ରେ ସ୍ୱୀକାର କରିଛନ୍ତି –

> ଏକ ଦିନ ସନ୍ଧ୍ୟାକାଳେ ଏ ବ୍ୟଥାର ପ୍ରଥମ ପ୍ରକାଶ,
> ତୁମେ ଥିଲ, ଥିଲା ଜ୍ୟୋସ୍ନା, ଥିଲା ଘନ ସହକାର ଛାୟା,
> ଏକାକୀ ନ ଥିଲି ମୁହିଁ, ଗଣ୍ଡେ ମୋର ଆନର ନିଶ୍ୱାସ
> ବାଜୁଥିଲା ଥରି ଥରି, ରକ୍ତେ ସୃଜି ଯାଦୁକରୀ ମାୟା ।

ନାନା କାରଣରୁ କବି ଜୀବନସାରା ଜଳି ଜଳି ଜୀବନର ଗାଥାକୁ 'ଜୀବନ-ଚିତା'ରେ ଲେଖିଲେ ମଧ, କବିଙ୍କର ଆଶା –

> ମୃତ୍ୟୁ ରାଜ୍ୟେ ଯିବି ଯେବେ ଛାଡ଼ି କୋଳ ମାଆ ଧରିତ୍ରୀର
> ବସନ୍ତର ପୁଷ୍ପୋତ୍ସବେ, ଶାରଦ ଜ୍ୟୋତ୍ସ୍ନାରେ
> ସ୍ମରି କେବେ ମୋ ଦେଶର ଯୁବକ ଯୁବତୀ,
> ଆସି ସେ ସମାଧି ପରେ

ପୁଷ୍ପ ଢାଳି ପ୍ରୀତିଭରେ
କବିରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର,
ସେହି ମୋର ମାନଦଣ୍ଡ ଜୀବନ-ଯାତ୍ରାର ।

ମାନସିଂହ ଗ୍ରନ୍ଥାବଳୀର ପ୍ରଥମ, ଦ୍ୱିତୀୟ ଓ ତୃତୀୟଖଣ୍ଡ ମାନସିଂହଙ୍କ ଜୀବଦ୍ଦଶାରେ 'ଗ୍ରନ୍ଥମନ୍ଦିର' ପ୍ରକାଶନ ସଂସ୍ଥା ତରଫରୁ ପ୍ରକାଶିତ ହୋଇଥିଲା । ଗ୍ରନ୍ଥାବଳୀର ପ୍ରଥମ ଓ ଦ୍ୱିତୀୟ ଖଣ୍ଡ ୧୯୬୨ ଓ ୧୯୬୪ରେ ପ୍ରକାଶିତ ହେଲା ପରେ ବହୁ ବିଳମ୍ବରେ ୯ ବର୍ଷ ପରେ ତୃତୀୟ ଖଣ୍ଡ ପ୍ରକାଶିତ ହୋଇଥିଲା । ସେହିବର୍ଷ ଦୁର୍ଯୋଗକୁ ମାନସିଂହଙ୍କର ପରଲୋକ ହୋଇଗଲା । ଉତ୍ତୀର୍ଣ୍ଣ ବୟସରେ ନିଜ ରଚନାବଳୀର ଯେଉଁ ରୂପ ପାଠକମାନଙ୍କ ଦୃଷ୍ଟିକୁ ଆସୁବୋଲି ମାନସିଂହ ଚାହୁଁଥିଲେ, ସେହି ରୂପରେ ଓ ସେହି କ୍ରମରେ ତାହା ଗ୍ରନ୍ଥାବଳୀରେ ସେ ସନ୍ନିବିଷ୍ଟ କରିଥିଲେ । ଫଳରେ ମାନସିଂହ ଗ୍ରନ୍ଥାବଳୀର ଏହି ତିନିଖଣ୍ଡ ତାଙ୍କ ରଚନାବଳୀର ଏକ ନୂତନ ସଂସ୍କରଣ ରୂପରେ ହିଁ ପ୍ରକାଶିତ ହୋଇଥିଲା । ଏଠାରେ ସୂଚନାଯୋଗ୍ୟ – ମାନସିଂହଙ୍କ ସମଗ୍ର ରଚନାର ଏକ କ୍ଷୁଦ୍ର ଅଂଶ ହେଉଛି ଗୀତିକବିତା ଏବଂ ଅନେକ କବିତା ରୂପରୂପାନ୍ତର ମଧ୍ୟ ଦେଇ ଗ୍ରନ୍ଥାବଳୀରେ ସର୍ବଶେଷ ରୂପ ଲାଭ କରିଛି । ଅନେକ କବିତା ଏବେ ମଧ୍ୟ ଅସଂକଳିତ ଅବସ୍ଥାରେ ରହିଛି । ବର୍ତ୍ତମାନ ପ୍ରକାଶ କରାଯାଉଥିବା ମାନସିଂହ ଗ୍ରନ୍ଥାବଳୀ ସମୟକ୍ରମେ ତାଙ୍କର ସମସ୍ତ ରଚନାକୁ ୧୮ଟି ଖଣ୍ଡରେ ପ୍ରକାଶ କରାଯିବାର ଯୋଜନା କରାଯାଇଛି । ପ୍ରାଥମିକ ଉଦ୍ୟମକୁ ଏହା ଅସ୍ୱୀକାର କରୁନାହିଁ କିମ୍ବା ତାର ଗୁରୁତ୍ୱ ହୀନ କରାଯିବାର ଚେଷ୍ଟା ଏହି ପ୍ରକଳ୍ପରେ ନାହିଁ । କିନ୍ତୁ ଭବିଷ୍ୟତକୁ ଦୃଷ୍ଟି ସମ୍ମୁଖରେ ରଖି ତଥ୍ୟ ନିର୍ଦ୍ଦେଶ, ପାଠାନ୍ତର ଆଦି ନିର୍ଦ୍ଦେଶ କରାଯାଇଛି ।

ମାନସିଂହ ତାଙ୍କର ପ୍ରତ୍ୟେକ ଲେଖାରେ ରଚନା ତାରିଖ ଓ ସ୍ଥାନ ଉଲ୍ଲେଖ କରୁଥିଲେ । ଘଟଣାକ୍ରମେ ତାହା ମାନସିଂହଚୟନ ପ୍ରଥମ ଭାଗ, ଦ୍ୱିତୀୟ ଭାଗ ତଥା ମାନସିଂହ ଗ୍ରନ୍ଥାବଳୀ ୧୯୬୨, ୧୯୬୪, ୧୯୭୩, ୧୯୯୪ ରେ ପ୍ରକାଶିତ ବିଭିନ୍ନ ଖଣ୍ଡରେ ସ୍ଥାନ ପାଇପାରିନଥିଲା । ୧୯୯୭ ରେ ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ ପ୍ରାମାଣିକ ସଂସ୍କରଣରେ ସେ ସବୁର ଉଲ୍ଲେଖ କରିବା ପାଇଁ ଚେଷ୍ଟା କରାଯାଇଛି । ସମସ୍ତ ଲେଖାର ଆଦ୍ୟ ରୂପ ଓ ଲେଖାଗୁଡ଼ିକୁ କାଳାନୁକ୍ରମିକ ସଜାଇ ପଢ଼ିଲେ ତାହା କବି ମାନସିଂହଙ୍କର ଆତ୍ମଲିପି ଭାବରେ ପରିପ୍ରକାଶ ଲାଭ କରିବ । ଏ ଖଣ୍ଡରେ କେତେକ ସ୍ଥାନରେ ମୂଳଲେଖାର ଆଦ୍ୟରୂପକୁ ପରିଶିଷ୍ଟରେ ଦେଖାଇଦିଆଯାଇଛି, ଯେଉଁଥିରୁ କି ପାଠକ ପାଠିକା, ଆଲୋଚକ, ଆଲୋଚିକା କବି ମାନସିଂହଙ୍କର କବିମାନସର ବିବର୍ତ୍ତନ ସମ୍ପର୍କରେ ସ୍ପଷ୍ଟ ଧାରଣା ପାଇପାରିବେ ।

ଓଡ଼ିଶାର ସୁପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା 'ଗ୍ରନ୍ଥମନ୍ଦିର' ତରଫରୁ ୧୯୬୨ ଓ ୧୯୬୪ ମସିହାରେ ଯେଉଁ ଆଦ୍ୟ ପ୍ରୟାସ ହୋଇଥିଲା, ସେଥିରେ କବି ମାନସିଂହଙ୍କର ଲୋକମାନଙ୍କ ପାଖରେ ପହଞ୍ଚିବା ସମ୍ଭବ ହୋଇଥିଲା । ୧୯୭୩ ମସିହାର ୩ୟଖଣ୍ଡ ଗ୍ରନ୍ଥାବଳୀ ଖଣ୍ଡ ଖଣ୍ଡ ହୋଇ ଚାହିଦା ଅନୁସାରେ ବଜାରକୁ ଆସିବାରୁ ଗ୍ରନ୍ଥାବଳୀର ସାମଗ୍ରିକ ରୂପ ପାଠକଙ୍କ ପାଖରେ ପହଞ୍ଚିବା ସମ୍ଭବ ହୋଇପାରିଲାନାହିଁ । କବି ମାନସିଂହଙ୍କର ଅତି ଅନ୍ତରଙ୍ଗ ତଥା ଗ୍ରନ୍ଥମନ୍ଦିର ପ୍ରକାଶନ ସଂସ୍ଥାର ପ୍ରତିଷ୍ଠାତା ସ୍ୱର୍ଗତ ଶ୍ରୀଧର ମହାପାତ୍ର ମାନସିଂହ ଗ୍ରନ୍ଥାବଳୀର ଆଦ୍ୟ ପ୍ରକାଶକ ଥିଲେ । ଦୀର୍ଘ ଦିନର ବ୍ୟବଧାନ ପରେ ସ୍ୱର୍ଗତ ଶ୍ରୀଧର ମହାପାତ୍ରଙ୍କ ପୁତ୍ର ଶ୍ରୀ ଅଭିରାମ ମହାପାତ୍ର ଓ ପୌତ୍ର ଶ୍ରୀ ମନୋଜ କୁମାର ମହାପାତ୍ର ମାନସିଂହଙ୍କ ସମଗ୍ର ରଚନାବଳୀର ପ୍ରାମାଣିକ ସଂସ୍କରଣ ପ୍ରକାଶନ ପାଇଁ ପ୍ରୟାସ କରିଛନ୍ତି । ବର୍ତ୍ତମାନର ଗ୍ରନ୍ଥାବଳୀ ଆକାରରେ ଏହା ପ୍ରାୟ ୧୮ ଖଣ୍ଡ ମଧ୍ୟରେ ଶେଷ ହେବ ବୋଲି କଳନା କରାଯାଇଅଛି ଓ ସମଗ୍ର ରଚନାବଳୀ ମାନସିଂହଙ୍କ ଜନ୍ମ-ଶତବାର୍ଷିକୀ ୨୦୦୫ ମଧ୍ୟରେ ସମ୍ପାଦିତ ଓ ପ୍ରକାଶିତ ହେବାର ଯୋଜନା ମଧ୍ୟ କରାଯାଇଛି । ଯଦି ଏହା ସମ୍ଭବ ହୁଏ, ଓଡ଼ିଆସାହିତ୍ୟର ଅନ୍ୟତମ ମାଇଲ୍ ଖୁଣ୍ଟ ଶିକ୍ଷାବିତ୍ ଓ ଚିନ୍ତାନାୟକ ମାନସିଂହଙ୍କୁ ସାମଗ୍ରିକ ଭାବରେ ଜାଣିବାର ସୁଯୋଗ ମିଳିପାରିବ ।

ମାନସିଂହ ଗ୍ରନ୍ଥାବଳୀ ସଂକଳନ ଏକ ଜାତୀୟ କାର୍ଯ୍ୟ । ଏହି ବିରାଟ କାର୍ଯ୍ୟ ସମ୍ପାଦନ ପାଇଁ ଗ୍ରନ୍ଥମନ୍ଦିରର ଶ୍ରୀ ଅଭିରାମ ମହାପାତ୍ର ଓ ଶ୍ରୀ ମନୋଜ କୁମାର ମହାପାତ୍ର ସାହସିକ ପଦକ୍ଷେପ ନେଇ ସମ୍ପାଦନା କାର୍ଯ୍ୟ ପାଇଁ ମୋତେ ପ୍ରେରଣା ପ୍ରଦାନ କରୁଥିବାରୁ ଓ ମୋର ବନ୍ଧୁ ଅଧ୍ୟାପକ ଶ୍ରୀ ଦେବେନ୍ଦ୍ର କୁମାର ଦାଶ ସମୟୋଚିତ ପରାମର୍ଶ ପ୍ରଦାନ କରିଥିବାରୁ ମୁଁ ଗଭୀର କୃତଜ୍ଞତା ଜଣାଉଛି ।

୧ । ୧୧ । ୧୯୯୮　　　　　　　　　　　　　　　　　ଡକ୍ଟର ଶ୍ରୀଚରଣ ମହାନ୍ତି



କବି ମାୟାଧର ମାନସିଂହ

ଜନ୍ମ – ୧୯୦୪

ଦେହାନ୍ତ – ୧୯୭୩

# ସୂଚୀପତ୍ର ୨ ଭୂମିକା

—

# ଜୀବନ-ଚିତା

## କବିର ପୁରସ୍କାର

ପଲ୍ଲୀଗ୍ରାମେ ଥାଇ ବଙ୍ଗକବି କୃତ୍ତିବାସ
ଶୁଣିଲେ ବଙ୍ଗଳା ରାଜା ସନ୍ତୋଷ ପ୍ରକାଶ
କରୁଛନ୍ତି ତାଙ୍କ-ସୃଷ୍ଟ ନବ ରାମାୟଣେ,
ସାନ୍ଧ୍ୟ-ବିନୋଦନ ହୁଏ ତା'ର ଆଲୋଚନେ ।

ଶୁଣି ତା, ଗ୍ରାମରୁ କବି ବାହାରିଲେ ଥରେ
ଗୌଡ଼ ରାଜଧାନୀ ପ୍ରତି । ରାଜସିଂହଦ୍ୱାରେ
ଯେବେ ସେ ମିଳିଲେ ଯାଇ, ସ୍ୱିନ୍ନ, ଅବସନ୍ନ,
ଢାଳିଲେ ତାହାଙ୍କ 'ପ୍ରତି ଈର୍ଷିତ ନୟନ
ରାଜ ଅନୁଚରବର୍ଗ, – କହିଲେ ସକଳେ
'ନିଶ୍ଚିନ୍ତ ରହିବ ରାଜ-ଅନୁଗ୍ରହ-ତଳେ
ଏ ଥର ଏ ଦୀନ ବିପ୍ର' ।

ଶୁଣି କୃତ୍ତିବାସ –
କହିଲେ ଫୁଟାଇ ମନ୍ଦେ ବିନୟିତ-ହାସ,
''ମୋହର ନୃପତି ପାଶେ ନାହିଁଛି ଯାଚନା
ଅର୍ଥ, ମାନ, ଅନୁଗ୍ରହ । ମୋ' ହସ୍ତରଚନା
କେମନ୍ତେ ଗଉଡ଼ - ରାଜା କରନ୍ତି ଆଦର
ତା' କେବଳ ଦେଖିବାର ଉତ୍କଣ୍ଠା ମୋହର ।''

## ବୀଣା-ଭିକ୍ଷା

ଗାଇବା ଇଚ୍ଛା ଯଦି ଦେଲ ହେ ପ୍ରଭୁ ମତେ
ବାଇବା ପାଇଁ ବୀଣା ଦିଅ ଏ ମୋର ହସ୍ତେ ।
ପାଗଳ ଘନ-ରାତି ଆଗୁଳହୀନ-ଗୀତି
ପ୍ରାଣେ ମୋ ଉପୁଜାଏ ବିପୁଳ ଗାନ-ପ୍ରୀତି ।

ନ ଥାଏ ନ ଥାଏ ଗୋ କୁଟୀରେ ବୀଣା ମୋର
ପୁହାଇଦିଏ ରାତି ଶ୍ରାବଣ ଘନ-ଘୋର
ହତାଶ ପରି ସଖା, ହତାଶ ପରି ସତେ !
ଦେଇନା ମତେ ବୀଣା ଯେଣୁ ହେ ମୋର ହସ୍ତେ ।
ଜୋଛନା ମୋ ଅଗଣା ଶୋଭନା କରି ଆସେ
ମଲ୍ଲୀ ଫୁଟିଉଠେ, ବକୁଳ ତୁଟେ ବାସେ,
ଆକୁଳ ସହକାରେ ଦୁକୂଳ ପରି ଘେରି
ଶୁକଳ କଉମୁଦୀ, ମଳୟେ ନାଚେ ଥରି;
କାମିନୀ ଛାୟା ନାଚେ, ନାଚଇ ମାଧବିକା
ଲାଗଇ ଶୋଭା-ପୁରେ ପ୍ରମୋଦ କିଣାବିକା;
ସେ ପରସାଦ-ସ୍ୱାଦ, ଅନ୍ତେ ଦେଇ ଢାଳି
ଗାଇବା ଘୋର ଆଶା ପରାଣେ ଦେଇ ଜାଳି,
ବାଇବା ପାଇଁ ବୀଣା ଦେଇନା କିପାଁ କହ
ବ୍ୟର୍ଥ ଅଭିଳାଷ ପୋଡ଼ଇ ଅହରହ ।

## ନିଦ୍ରିତ ଭଗବାନ୍

### (୧)

ଦେବଶିଶୁ ଚଳେ ନରକର ଅଭିସାରେ
ଭଗବାନ୍ ତୁମେ ନିଦ୍ରିତ କେଉଁଠାରେ ?
ନିରଞ୍ଜନ ମୁଁ ଆସିଥିଲି ପରା
ଆନନ୍ଦ ବିତରଣେ,
ବାଣ୍ଟିବି ବୋଲି ଅମୃତ ଏହି
ପୃଥିବୀର କଣେ କଣେ ?
ଅମୃତ-ଶିଶୁ ଅମୃତ ପିଇ
ଆସିଥିଲି ଧରାତଳେ
ଦେବତାର ସୁଖ ଅଜାଡ଼ିବି ବୋଲି
ମନିଷର ପଦତଳେ ?
ମନ୍ଦାକିନୀରେ ଅବଗାହି ଥିଲି
ଗନ୍ଧ-ଆକୁଳ ଜଳେ

ଗନ୍ଧଚକିତ କରିବାକୁ ପରା
ଧରଣୀରେ ପଳେ ପଳେ ?
ଅପ୍‌ସରୀ ଦେହ ଆଶ୍ଲେଷ ପରା
ଆଣିଥିଲି ସାଥେ ବହି
ପରଶେ ମୋହର ସ୍ନିଗ୍ଧ ମଧୁର
କରିବାକୁ ଏହି ମହୀ ?
ଦେବ-ମାତା ଯେତେ, ମଙ୍ଗଳ ହାତେ
ପରଶି କପାଳ କେଶ
ପଠିଆଇ ଦେଲେ ମନ୍ତ୍ରେନିଷେକି
ମୋର ନିର୍ବାସ ବେଶ ?
ମନ୍ତ୍ର ଭୁଲିଲି ମାନବର ଏ ଧରାରେ
ଭଗବାନ୍, ତୁମେ ନିଦ୍ରିତ କେଉଁଠାରେ ?

(୨)

ପଠିଆଇଦେଇ ଚାହିଁଲ ନାହିଁ କି ଆଉ
କି ହେଲା ମୋ' ତବ-ଦର୍ଶିତ ପଥ ବାହୁଁ ।
ରହିଲ କାହିଁ ହେ କୁହେଳି ଅନ୍ତରାଳେ
ଡାକିବି ବୋଲି ମୁଁ ବିପଦେ ବା କେଉଁ କାଳେ ?
ପଥେ ଆସି ଆସି ଡାକିଲି ଅନେକ ବାର
ଲୋତକେ ଓଦାଇ ବକ୍ଷ ମୋ ଅନିବାର;
କ୍ରନ୍ଦନେ ମୋର ଥରିଲେ ଯେ ପାଶେ ଥିଲେ
କୃପାମୟ ତୁମେ ଶୁଣି ନ ପାରିଲ ତିଳେ ?
ଜୀବନ ଦେଇ ଯେ ନ ବୁଝିଲା ଭୋକ-ଶୋଷ,
କିପରି କହ ତ ବୁଝାଇବି ତା'ର ଦୋଷ ?
ପାଥେୟ ନ ଦେଇ ବରଗଲ ଯେ ବା ଦୂତ,
ପ୍ରଭୁ ବୋଲି ତା'ରେ ଡାକିବାର ଅଦ୍‌ଭୁତ !
ତେଣୁ ସିନା ମୁହିଁ ଠକିଲି ଧରାରେ ଆସି,
ଅଶ୍ରୁନିକି ଗୋ ଜାଣଇ ସରଗବାସୀ ?

(୩)

ଚାଲି ମୁଁ ଆସିଛି ବହୁଦୂର ପଥେ ପଥେ,
ଦେଉଳ ତୁମର ଦିଶୁନାହିଁ ଆଉ ମତେ,

ଫେରି ପଛେ, ଉଠି ପଥ ବିଟପୀର ଶାଖେ,
ନିରେଖି ଖୋଜିଛି ଦେଉଳରେ ଆଖେ ଆଖେ
ଚକ୍ର, ପତାକା କେବେ ବା ପଡ଼ିବ ଧରା,
ପଥ ମୁଁ ପାଆଁତି ପର-ଦେଶୀ ପଥହରା,
କାହିଁ ହେ ଚକ୍ର, କାହିଁ ହେ ପତାକା ତବ ?
ସାରିଲାଣି ମତେ ଧରଣୀର ପରାଭବ !

ଆଲୋକବାସୀ ମୁଁ ଅନ୍ଧାରେ ଗଲି ମିଶି,
ମୁକ୍ତ ମୁଁ, – ମତେ ଅବରୋଧ ଦଶ ଦିଶି ।
ଚକ୍ର ରଖିଲ, ପତାକା ନୋଇଁଲ ତଳେ,
ଗହନ ମୁଁ ପାରି ହେବି କହ କାହା ବଳେ ?
ଆଲୋକ ଦେଖାଅ, ଜାଗି ଶୁଣ ମୋର କଥା,
ନିଦ୍ରା କି ଶୋଭେ ଆଶ୍ରିତ ପାଉଁ ବ୍ୟଥା ?

(୪)

ଅପ୍‌ସରୀ-ଦେହ-ଆଶ୍ଳେଷ ଧରି ଦେହେ
ଆସିଥିଲି ପରା ସେ ଦିନ ଏ ଭବ-ଗେହେ ?
କାହିଁ ସଉରଭ ? କାହିଁ ଦେବତାର ଶିରୀ ?
ଏଇ ଦେହେ ମୋର ଚୁମ୍ବିଥିଲା କି ପରୀ ?
ଏ ବପୁ ଘେନି କି ସ୍ୱର୍ଣ୍ଣଦୀ ବନ-ପଥେ,
ଗନ୍ଧ-ବ୍ୟାକୁଳ, ଚନ୍ଦ୍ର-ଚକିତ ରାତେ,
ତିଳ-ତଣ୍ଡୁଳ-ଛାୟା-ସଙ୍କୁଳ ଘାସେ
ଅଳସେ ଆଉଜି, ଶମାଇ ଚରଣ ପ୍ରାସେ,
ଚୁମ୍ବିଥିଲି ମୁଁ ଲାଜନତ ସୁରବାଳା
ଆଲିଙ୍ଗନେ ତା ବାଜିଥିଲା କରବଳା !
ନର ହେଲି, କାହିଁ ଦେବତ୍ୱ ଗଲା ଚଳି
ସଇତାନ ମୋର ଲକ୍ଷ୍ମୀରେ ନିଏ ଛିଡ଼ି ।
ଏବେ ଗୋ ଆହୁରି ପଳ ପଳ କରି ଖାଏ,
ଆତୁର ପରାଣ ଭଗବାନ୍ ଡାକୁଥାଏ ।
ବୁଝିଲା କି କିଏ ଗୁରୁ ନିଶ୍ୱାସମାନ ?
ତେଣୁ ମୁଁ ବୋଲଇଁ, ନିଦ୍ରିତ ଭଗବାନ୍ ।

(୪)

ଧରଣୀରେ ଆସି ମନ୍ତ୍ର ଭୁଲିଲି ପରା,
ପାଇବ ନିକି ହେ ନିସ୍ତାର ପଥହରା ?
ଦେବତାରେ ଏ ଯେ ସଂସାର ଭୁଲାଇଲା;
ସରଗବାସୀ ସେ ମୃତ୍ତିକା ଆଦରିଲା ।
ବିରାଟ ସେ ଆଜି ଧାଉଁଛି କ୍ଷୁଦ୍ର ଆଶେ,
ସନାତନ, ପ୍ରାଣ ବିକୁଛି କ୍ଷଣିକ ପାଶେ,
ସୁନ୍ଦର ସେ ଗୋ, ଭୁଲୁଛି ଇତର ରୂପେ,
ଚିର ଊର୍ଦ୍ଧଗ, ଖସୁଛି ଅତଳ କୂପେ !
ନାହିଁ ନିସ୍ତାର ? ନିସ୍ତାର ନାହିଁ କି ହେ !
ମଙ୍ଗଳ ହାତ ପାତିବାକୁ ନାହିଁ କିଏ ?
ଅମୃତପାୟୀ ମରଣରେ ଦିଏ ଧରା,
ନନ୍ଦନବାସୀ ନରକେ ଚଳଇ ପରା !
ଶଙ୍କର-ଶୂଳ ଗରଜି ଉଠିବନିକି
ଅତ୍ୟାଚାର ଏ କାଟିବାକୁ ଟିକି ଟିକି ?
ବିଳାସେ ଅଳସେ ରହିଲେ ଦେବତାଦଳ
କେ ବୁଝିବ ନର-ଆତ୍ମାର କଳବଳ ?
ବିଶ୍ୱେ ମୁହିଁ ଯେ ସୃଷ୍ଟି କରୁଛି ବିଷ,
ପ୍ରତିକ୍ରିୟା ତା' ହେବ ତ ହେ ଅବନୀଶ ?
କରିବାର ଯାହା, ତ୍ୱରା ହେଉ ଅବଧାନ,
ଡାକେ ଦେବଶିଶୁ, ନିଦ୍ରାଳୁ ଭଗବାନ୍ !

## ଧରଣୀ-ବାସ

(୧)

ଥରେ ଥରେ ଲାଗେ ମନେ ଏ ଜୀବନ ଅମୃତରୁ ଜାତ,
ନୁହେଁ ଏ ମୃତ୍ତିକାର । ଧରଣୀର କଳୁଷ-ସଂଘାତ
କଳୁଷ କରିଛି ମୋର ଶ୍ୱେତ, ପୂତ ଦେବତା ଜୀବନ
ବିରୂପ କରିଛି ଦେହ, କର୍ଦ୍ଦମିତ କରିଅଛି ମନ ।

ମନେହୁଏ କିଏ ମୋର ଜନ୍ମ-ରାତ୍ରେ ଯେହ୍ନେ ଅନ୍ଧକାରେ
ସେ କେଉଁ ବିଷମ-ଦଣ୍ଡେ ସ୍ୱର୍ଣ୍ଣଦୀର ତଟ-ବନଧାରେ
ନେଲା ମୋ ମନ୍ଦାରମାଳା ମୋ' କଣ୍ଠରୁ କାଢ଼ି ଦ୍ୱେଷଭରେ
ଶରୀରୁ ମୁଛାଇଦେଲା କଳ୍ପ ପୁଷ୍ପ-ରେଣୁ ନିଜ କରେ;
ସ୍ୱର୍ଣ୍ଣ-ଅରବିନ୍ଦ-କଢ଼ି କେଶୁଁ ମୋର କାଢ଼ି ଦେଲା ଥୋଇ
ପାରିଜାତ-ଗନ୍ଧ ଦେଲା ମୋ ନିଖିଳ ଦେହୁଁ ଧୀରେ ଧୋଇ;
ତା'ପରେ ନିକ୍ଷେପି ଦେଲା ଅନ୍ତରୀକ୍ଷୁ ନିଃସହାୟ କରି,
ଧରଣୀର ମୃତ୍ତିକାରେ ପଡ଼ିଲି ମୁଁ ମୃତ ଉଲ୍‌କାପରି ।
ତା'ପରେ ମୃତ୍ତିକା-ସ୍ପର୍ଶେ ଏ ମାଟିର ଲକ୍ଷ କୀଟ ସମ
ଆରମ୍ଭିଛି ଜୀବଲୀଳା ମୋହବଶେ ଭୁଲିଛି ପରମ, —
ମୋ ଦୈବତ ଆଭିଜାତ୍ୟ । ଧରଣୀର ଜୀବନ-ସଂଗ୍ରାମେ
ଜୀବନ ଦେଇଛି ଢାଳି ସଂସାରର ଘୃଣ୍ୟ ଶ୍ରେୟଃ ନାମେ ।
ପୂତିମୟ ଏ ଜୀବନ । ନିର୍ଯାସିତ ଶୁଷ୍କ ପୁଷ୍ପ ସରି
ମ୍ରିୟମାଣ ମୋର ପ୍ରାଣ, ପୂର୍ବଜନ୍ମ ସଉରଭ ସ୍ମରି ।

(୨)

ହାୟ ଲୋ ଧରଣି, ତୋର ସ୍ପର୍ଶ ଏଡ଼େ ଅଶିବ କିପାଇଁ ?
ନିସର୍ଗ-ଅତିଥି ଆସି ତୋ ବାୟୁର ତପ୍ତ-ଘ୍ରାଣ ପାଇ
ଜୀବନେ ମରଣ ଭୋଗେ; ମୃତ୍ତିକାର କାମନା-ବାସନା
ଅନ୍ଧ କରେ ଚିତ୍ତ ତା'ର । ଦେବତା ସେ ଅମୃତ-ଚେତନା
ପଦେ ପଦେ ମୃତ୍ୟୁ ଲଭେ । ପ୍ରାଣ-ଘାତୀ ବିଷୟ-ସଂଗ୍ରାମେ
ବିଷମ ଜଞ୍ଜାଳ-ଜାଲ ଘେରି ତା'ରେ କୃତାର୍ଥତା ନାମେ,
ନତ କରେ ଶିର ତା'ର; ଅବଶେଷେ, ଆଶ୍ରି ତୋର ତଳ
ଆପଣାର ଭାରେ ସେ ଯେ ଚୁମ୍ବେ ପଦ ଜରା ମରଣର ।
ଭୂମାର ପରମ ସ୍ପର୍ଶ ପ୍ରାଣୁ ଲିଭେ କ୍ରମଶଃ ଜୀବନେ,
କ୍ରମଶଃ ଘୋଟଇ ମାୟା-ଅନ୍ଧକାର ମରମେ ମରମେ ।
ସତ୍ୟର ସନ୍ଧାନ ଭୁଲେ, ମିଥ୍ୟା ପଛେ ସତ୍ୟ ବୋଲି ଧାଏଁ,
ସତ୍ୟର ସଖ୍ୟତା କଲେ, ଅତ୍ୟାଚାର ଅଙ୍ଗୁଳି ଦେଖାଏ ।
ଜୀବନୁଁ ଆନନ୍ଦ ତୁଟେ ନ ତୁଟଇ ବୁଭୁକ୍ଷା ପ୍ରାଣର,
ହୃଦୟେ ଉଠଇ ଆଶା, ଲଭିବାକୁ ବ୍ୟର୍ଥତା ମାତର;
ସୁଖ ବୋଲି ଯାହା ମିଳେ, ହୁଏ ତାହା ଶେଷ ତିକ୍ତତାରେ,
ବ୍ୟର୍ଥତାର ଅସନ୍ତୋଷେ ପ୍ରାଣ ମରେ କ୍ରୁଦ୍ଧ ହାହାକାରେ ।

ଅବଶେଷେ ଅନ୍ତରୀକ୍ଷେ ହସ୍ତ ଟେକି ମାଗେ ପରିତ୍ରାଣ –
ହେ ଧରଣି, କହ କିପାଁ ସ୍ପର୍ଶ ତୋର ଏଡ଼େ ଅକଲ୍ୟାଣ ?

(୩)

ତଥାପି ଧରଣି ! ତୁମ୍ଭେ ପ୍ରିୟ ଏତେ, ଗୁରୁ ଅକଲ୍ୟାଣେ;
ତୋ' ମାଟିରେ ମାନବର ଗୁରୁ ସ୍ନେହ, ବିଧାତା-ବିଧାନେ !
ଏତେ ଭାବେ ଏହି ମାଟି, ଚିତ୍ତବୃତ୍ତି ଟାଣେ ମାନବର,
ସତ୍ୟ ଲାଗି, ମୁକ୍ତି ଲାଗି ନାହିଁ ପାଏ ଚିତ୍ତ ଅବସର ।
ଊର୍ଦ୍ଧ୍ୱେ ଏ ଅନନ୍ତାକାଶ, କୋଟି କୋଟି ତାରକାମଣ୍ଡିତ
ପ୍ରକୃତି ସବଳ ଲୀଳା, ବିହଗର ମଧୁର ସଙ୍ଗୀତ,
ଅନ୍ତରୀକ୍ଷେ ଋତୁସବ, ଗ୍ରୀଷ୍ମ, ବର୍ଷା, ବସନ୍ତରେ ଘେନି;
ଛାୟାଲୋକ କ୍ରୀଡ଼ାମୟୀ, ଲୀଳାମୟୀ ଦିବାରାତ୍ରି ବେନି,
ସମସ୍ତ ରହଇ ପଡ଼ି, ମାନବର, ଚେତନା ବାହାରେ
ସେ କେବଳ ଦୃଷ୍ଟି ରଖେ, ହେ ଧରଣି, ତୋର ମୃତ୍ତିକାରେ;
ଧରଣୀର ସୁଖଦୁଃଖେ, ଜଞ୍ଜାଳରେ ପରମ କଲ୍ୟାଣ
ଦେଖେ ସେ । ମରଣ ମଧ୍ୟେ ଲଭଇ ସେ ଅମୃତ-ଆଘ୍ରାଣ ।

(୪)

ଜୀବନ-ସଂଗ୍ରାମେ ଯେବେ, ଭଗ୍ନଜାନୁ ଗୃହେ ଆସେ ଫେରି
କାହାର ମୃଣାଳ-ବାହୁ ଶାନ୍ତି ଦିଏ, କଣ୍ଠେ ତା'ର ଘେରି ?
ଜୟ ଲଭି ସଂଗ୍ରାମରେ, ଫେରିଲେ କା ପ୍ରବାଳ-ଓଷ୍ଠର
ପରମ ଚୁମ୍ବନ ଲଭି କୃତାର୍ଥତା ଲଭେ ଜୀବନର ।
ପିତାମାତା, ବନ୍ଧୁଜନ, ଭଗିନୀର ସେନେହ ବନ୍ଧନେ
ସେ ଲଭେ ପରମ ମୁକ୍ତି, ପରାଜୟେ ଜୟ ଲଭେ ରଣେ ।
ରୋଗଶୋକେ ପ୍ରତିବେଶୀ ନେତ୍ରୁ ଢାଳେ ଅଶ୍ରୁ ତାହା ପାଇଁ
ମାଗିଲେ କରୁଣା ତାକୁ କେହି କେବେ, ନାହିଁ କରେ ନାହିଁ ।
ଅନନ୍ତ ବ୍ୟର୍ଥତା ମଧ୍ୟେ ହେ ଧରଣି, ଏ ଦାନ ପରମ
ମାନବେ ମାନବେ ପ୍ରୀତି, ଏ ବିଶ୍ୱାସ ଏ ସ୍ନେହ-ଧରମ,
ଅନ୍ତରେ ଅନ୍ତରେ ଏହି ସମଘାତ ଦୟା କରୁଣାର,
କୁଟୁମ୍ବ ସମାଜ ମଧ୍ୟେ ଏ ମଧୁର ସମ୍ବନ୍ଧ-ସଞ୍ଚାର,
ସଂଗ୍ରାମ-କଠୋର ଏହି ଅବସନ୍ନ ବିଷଣ୍ଣ ଜୀବନେ
ପରମ ଆନନ୍ଦମୟ କରିଅଛି, ଅମୃତ-ସିଞ୍ଚନେ ।

ସର୍ବ ଅକଲ୍ୟାଣ ମେଳେ, ହେ ଧରଣି, ତେଣୁ ତୋ ଆଶ୍ରୟ
ପ୍ରିୟ ଏତେ; ସର୍ବବ୍ୟାପୀ ପରାଜୟେ ଜୟ-ସୁଖମୟ ।

## ଶେଷକଥା

ହେ ବିଧାତା,

ଦେଲ କିପାଁ ମୋ ଜୀବନେ ଯେତେ ଯାହା ତିକ୍ତ ଅଭିଜ୍ଞତା ।
ଚିତ୍ତେ ଦେଲ ଦୟା ଯାହା ଇଚ୍ଛା କରେ ଦୀନା ଏ ଧରାର
ଦେବ ପୋଛି ରାତାରାତି ଯେତେ ଦୁଃଖ, ଭୟ, ଅତ୍ୟାଚାର;
ବାହୁରେ ଦେଇଛ କିନ୍ତୁ ଶିଳିପୀର ଘୃଣ୍ୟ ଦୁର୍ବଳତା
କରିଛ ରିକ୍ତ ମୋ କରେ, ନୀରବରେ ଦେଖେ ଦୁରବସ୍ଥା ।

ଅନ୍ତରେ ଥାପିଲ ମୋର ସତ୍ୟ, ଶିବ, ସୁନ୍ଦରର ବଡ଼ି,
ବାହାରେ, ଯେ ପଥେ କିନ୍ତୁ ଘୂରାଇଛ ମୋ ଚରଣ ଗତି;
ସେ ପଥେ, କି ବୀଭତ୍ସତା, କି ବା ପାପ, କି ଅବା ଅନ୍ୟାୟେ
ଅଜ୍ଞାତେ ପୂରାଇ ମତେ, କଳୁଷିତ କଲ ଚିତ୍ତେ କାୟେ ।
ପ୍ରାର୍ଥିଛି ମୋ ଦୀନ ଆତ୍ମା ସରଗର ଜ୍ୟୋତିଃ ସଦାକାଳେ,
ବିପଥିଲ ପଦେ ମମ, ଟାଣି ମତେ ମୋହ ଅନ୍ଧକାରେ ।

ମରମେ ଦେଲ ତ ମୋର ସେନେହର ଭାଦ୍ରବ-ଜାହ୍ନବୀ,
ଅକାଳେ, ଅକ୍ଷେତ୍ରେ କିନ୍ତୁ ଅବିଚାରେ ଗଲି ମୁହିଁ ପ୍ଲାବି ।
କାହା ସ୍ନେହ କା'ରେ ଦେଲି, କାହା ପାଇଁ କଲି ଅଭିସାର,
ଯୋଗ-ଦୋଷେ ସ୍ନେହ ମୋର ହୋଇଗଲା ଘୃଣ୍ୟ ବ୍ୟଭିଚାର !
ପିତୃମାତୃହୀନ ବୋଲି ଯେବା ସ୍ନେହେ ବାଲ୍ୟେ ବଞ୍ଚାଇଲେ
ମୋ ଆଗରୁ ମୃତ୍ୟୁ ତବ ଗୋଟି ଗୋଟି ନେଲା ତାଙ୍କୁ ଧୀରେ ।
ସବୁ ଆଡ଼େ ଭଗ୍ନ ଆଶା, ବ୍ୟର୍ଥତାର ସ୍ତୂପ ଚାରିପାଶେ,
ଲକ୍ଷ୍ୟହୀନ, ଛିନ୍ନଭିନ୍ନ, ଏ ଜୀବନ ଦେଲ କେଉଁ ଆଶେ ?
ସଙ୍ଗହୀନ ପ୍ରେତ ପରି ଠିଆ ମୁହିଁ ଆଜି ଜୀବଗ୍ରାମେ
ଦରିଦ୍ର, ଲାଞ୍ଛିତ, ପାପୀ —
ହେ ବିଧାତା, ଘୃଣେ ତୋହ ନାମେ ।

(୨)

ଅର୍ଦ୍ଧପଥେ ପୁଛେ ନିଜେ, ଶେଷ ତେବେ ସବୁ ଅଭିଳାଷ ?
ଜୀବନ କି ଏହିପରି ଖାଲି ପଦବିଦଳିତ ଘାସ ?
ଅରଣ୍ୟର ବୃକ୍ଷ ପରି ମୁଁ କି ମଥା ନ ଟେକିବି ନଭେ
ପ୍ରଭଞ୍ଜନ, ବଜ୍ର, ବୃଷ୍ଟି ସଙ୍ଗେ ଲଢ଼ି ଉନ୍ନତ ଗରବେ ?
ବିଧାତା ନିର୍ଦ୍ଦେଶ ବୋଲି ନିଜେ ମେଲି ଘଟଣା-ସରିତେ
ହେଉଥିବି ଛଳିତ କି ବାରମ୍ବାର ହରାଇ ବ୍ୟକ୍ତିତ୍ୱେ ?
ବିଦ୍ରୋହ ଆସିଛି ଆଜି, ଯେ ବିଦ୍ରୋହ ଲାଞ୍ଛନାରୁ ଆସେ
ବାଧାପ୍ରାପ୍ତ ସ୍ରୋତ ସମ, ଧାଏଁ ଯାହା ବ୍ୟଗ୍ରେ ମୁକ୍ତି ଆଶେ ।
ଆଜ ମୁଁ ବିଚାରେ ମନେ ପୋଛିଦେଇ ସକଳ ଅତୀତ
ରଚିବି ମୋ ଜୀବନରୁ ନବ ଏକ ମହାନ୍ ସଙ୍ଗୀତ ।
ପାପ ଯାହା, କୁତ୍ସିତ ଯା', ଲାଞ୍ଛନା ଯା', ଫିଙ୍ଗି ତା' ବନ୍ଧନ,
ସତ୍ୟେ ଶିବେ ଶବଳିତ କରିବି ଏ ବିକଳ ଜୀବନ ।
ଖିଆଲୀ ବିଧାତା ଲାଗି ଅନୁଯୋଗ ଅବା ଅଭିଯୋଗ,
ନ ରଚି, — କକ୍ଷଣେ, ଲୁହେ ନର ଲାଗି ରଚିଯିବି ଯାଗ ।

## ବିଶୃଙ୍ଖଳ ସୃଷ୍ଟି

ମାନବେ ମାନବ ଶାସେ, ଏକ ଆନେ ରଖେ କ୍ରୀତଦାସ,
ଧନିକ ପ୍ରାସାଦେ ବସି ଦରିଦ୍ରରେ କରେ ଉପହାସ ।
ଦରିଦ୍ରର ଅନ୍ନ ନେଇ ରାଜା କରେ ନାରୀ-ସୁରା ପାନ,
ପାପର ପରମ ଜୟ, ସାଧୁ ଲଭେ ତିକ୍ତ ଅପମାନ ।
ଶରୀରର ସ୍ୱେଦ ଢାଳି ଦରିଦ୍ରରେ ନ ମିଳେ ଆହାର,
ବହୁ ଭୋଜ୍ୟେ କୁକ୍ଷି ପୂରେ, ବ୍ୟଭିଚାରୀ ଯେତେ ଅକର୍ମାର,
ଅଯୋଗ୍ୟ ମସ୍ତକେ ମଣି, ଯୋଗ୍ୟତାର ନାହିଁ ପୁରସ୍କାର
ନ୍ୟାୟର ମସ୍ତକେ ପଡ଼େ ଜଗତର ସର୍ବ ଅତ୍ୟାଚାର !
ଏହି ତ ସୃଷ୍ଟିର ଦୃଶ୍ୟ ? ଲାଞ୍ଛିତର ବ୍ୟାକୁଳ କ୍ରନ୍ଦନ
କର୍ଣ୍ଣେ ପଶେ; ଦେଶେ ଦେଶେ ଅନ୍ୟାୟର ନିଠୁର ବନ୍ଧନ
ମାନବ ଶରୀର ଭେଦି ବିଷଜ୍ୱାଳା ଆଣେ ଶୋଣିତରେ,
କ୍ରନ୍ଦନ ଉଠଇ କୋଟି ନରବକ୍ଷୁ ବିଷମ କାତରେ ।

ଅଭିଜାତ ଧନିକର ରଥ ତଳେ ଭାଗ୍ୟ ଦରିଦ୍ରର
ପଳେ ପଳେ ହୁଏ ପିଷ୍ଟ । କୃପାହୀନ ଜୀବନ-ସମର
ଭଗ୍ନଜାନୁ ଧରାଶାୟୀ ସହଜରେ କରେ ଦରିଦ୍ରରେ,
ଧନିକର ଯାନ ଚଳେ ଜୟ-ଗର୍ବେ ତାଙ୍କ ଶବ ପରେ ।

କିଏ କରେ ନ୍ୟାୟ ରକ୍ଷା ? କାହା ଆଗେ ପୀଡ଼ିତ ଦଳିତ
ଜଣାଇବେ ତାଙ୍କ ଦୁଃଖ ? କା ହୃଦୟ ହୋଇବ ଗଳିତ
ଜଗତର ଦୁର୍ବିପାକେ ? ଯୁଗେ ଯୁଗେ ନୟନର ଜଳେ
କୋଟି କର ଊର୍ଦ୍ଧ୍ୱେ ଟେକି ଧରଣୀର ନୀଳାମ୍ବର ତଳେ
ମାନବ ପେଶିଛି ତାର ଉଚ୍ଛ୍ୱସିତ ବ୍ୟଥିତ ପ୍ରାର୍ଥନା
ଅଜ୍ଞାତ ପୁରୁଷ ପାଶେ; ଲଭିଛି କି ଯୁକ୍ତ ଅଭ୍ୟର୍ଥନା
ମାନବର ଅଶ୍ରୁଜଳ, ସେ ପୂଜିତ ଦେବତାର ପାଶେ
କେବେହେଲେ ମାନବର ଦୀର୍ଘ ଇତିହାସେ ?

ତେବେ ଏ କ୍ରନ୍ଦନ କିପାଁ ? ଗୃହେ ଗୃହେ କରୁଣ ବିଳାପ,
ଜୀବନେ ଜୀବନେ ବ୍ୟଥା; ଦୁଃଖୀ ଭାଗ୍ୟେ ଲାଞ୍ଛନା-କଳାପ
ଏ ତୀବ୍ର ଜୀବନ-ଯୁଦ୍ଧେ ? ଶକ୍ତି ଦାନେ କିପାଁ ଏ ଭିନ୍ନତା ?
ମାନବର ସୁଖେ ଦୁଃଖେ କିପାଁ ଏହି କ୍ରୂର ନିର୍ମମତା ?
ନିଜେ ସେ ଈଶ୍ୱର ଲାଗି ଧରା ହୁଏ ରଞ୍ଜିତ ରକତେ
ମାନବେ ମାନବେ ଦ୍ୱେଷ, ଜାତି ଜାତି ଯା'ନ୍ତି ଭିନ୍ନ ପଥେ !
ଅଜ୍ଞାତ ଦେବତା କେବେ ଦ୍ୱନ୍ଦ୍ୱ, ଦୁଃଖ ଦେଖେ ମାନବର ?
ଶୁଣେ ଅନ୍ତରୀକ୍ଷେ ରହି ଅଭିଯୋଗ ଲାଞ୍ଛିତ ନରର ?
ଭ୍ରାନ୍ତି ! ଭ୍ରାନ୍ତି ! ମାୟାଚ୍ଛନ୍ନ ଏହି ଧରଣୀରେ
ଏ ବିଶ୍ୱାସ ଏକ ମାୟା । ଆରାଧନା ଅଜ୍ଞେୟ ଶକ୍ତିରେ
ଫଳହୀନ ବିଡ଼ମ୍ବନା । ଧରଣୀରେ ମାନବ-ସୃଜନ
ଜୀବନ୍ତ ମରଣ ଲାଗି । ଏ ସୃଷ୍ଟିର ସର୍ବ ବିଘଟନ
ମାନବ-ଲାଞ୍ଛନା ଲାଗି । କ୍ରୀଡ଼ାପର କ୍ଷିପ୍ର ଶିଶୁପରି
ପୁତ୍ତଳିକା ସମ, ସ୍ରଷ୍ଟା ଗଢ଼ି ଭାଙ୍ଗେ ତିଳ ତିଳ କରି ।

କି ଉପାୟ ଉଦ୍ଧାରର ?
ଉଠ ନର, କର ରେ ବିଦ୍ରୋହ
ସାଙ୍ଗ କର ଆରାଧନା, ଶେଷ ହେଉ ଧର୍ମର ସମ୍ମୋହ ।
ଲାଞ୍ଛିତ ଦଳିତ ଯେତେ, ସର୍ବେ ଆସ ଏକ କେତୁ ତଳେ
ଯୁଗ-ଯୁଗ-ଗଠିତ ଏ ସମାଜରେ ନାଶ ଏକାଥରେ ।

ପ୍ରାଚୀନରେ ଚୂର୍ଣ୍ଣ କରି ଗଢ଼ ତବ ନୂତନ ସଂସାର
ନିଜର ଶକ୍ତିରେ ଚିହ୍ନ, ଶେଷ ହେଉ ଆଶିଷ ଭିକ୍ଷାର ।
ଆଭିଜାତ୍ୟ ଚୂର୍ଣ୍ଣ ହେଉ, ଧନ ହେଉ ସମାନ ବଣ୍ଟିତ
ଜୀବନର ସର୍ବ ସୁଖୁଁ ଦୀନ ଦୁଃଖୀ ନୁହନ୍ତୁ ବଞ୍ଚିତ ।
ବିଜ୍ଞାନ ସମୃଦ୍ଧ କରୁ ନାନା ସୁଖେ ମାନବଜୀବନେ
ଉପେକ୍ଷିତ ଭଗବାନ୍, ଚାହିଁଥାନ୍ତୁ ନଭ ବାତାୟନେ ।
ଲାଞ୍ଛନା-ଗଞ୍ଜଣା-ରୋଗ-ଦୈନ୍ୟେ କରି ଜୀବନ ଜର୍ଜର
କି ଲାଭ ଅଜ୍ଞାତ ଭୟେ ମୁଖେ ଡାକି 'ଈଶ୍ୱର', 'ଈଶ୍ୱର' !
ଉଠ ସର୍ବେ, ନାଶ ମନୁ ଏକାବେଳେ ଏ ଅନ୍ଧବିଶ୍ୱାସ,
ନୂତନ ସୃଷ୍ଟିରେ କର ଅନ୍ୟାୟର ନିଃଶେଷ, ବିନାଶ ।
ବ୍ୟର୍ଥ ଯଦି ହୁଏ ତାହା, ଖୋଜି ନେବା ମୁକ୍ତି ବିନାଶରେ,
ନର ଦର୍ପେ ଥରୁକିନା ଈଶ୍ୱରର ସିଂହାସନ ଥରେ ।

## ଜୀବନ

ଜାଣି କି ଥିଲି, ଜୀବନ ଏହା ବୋଲି –
ଜୀବନ ନୁହେଁ, ମରଣ ପଳେ ପଳେ,
ସୁଖର ଏଥି କଣା ତ ନାହିଁ, – ଏ ଯେ
ପିଷ୍ଟ ହେବା ଭାଗ୍ୟ ପଦତଳେ !
ଜନମଠାରୁ ମରଣ ଦିନ ଯାଏଁ,
ଆଉ କେ ଟାଣେ କର୍ମ-ରଜ୍ଜୁ ଧରି,
କର୍ମ-ବୃକ୍ଷ ତିକ୍ତ ଫଳ କିନ୍ତୁ
ଆମରି ପାତ୍ରେ ନିତ୍ୟ ପଡ଼େ ଝଡ଼ି ।
ଜୀବନର ଏ କଣ୍ଟକିତ ପଥେ
ଲକ୍ଷ କ୍ଷତେ ଗଳିତ ପଦ ମମ,
ଚଳି ମୁଁ ନାହିଁ ପାରେ ଯେ ଆଉ ପାଦେ,
ବୁଭୁକ୍ଷିତ, କ୍ଳାନ୍ତ ପାନ୍ଥ ସମ ।
ଯଥେଷ୍ଟ ତ ହେଲାଣି ଏ ଜୀବନେ
ଏ ପାରର ତିକ୍ତ ଅଭିଜ୍ଞତା,
ଦେଖିବା ଦେଖି ମୃତ୍ୟୁ ଆରପାରେ
ଭାଗ୍ୟେ ଅଛି ଆନନ୍ଦ ବା ବ୍ୟଥା !

# ଦକ୍ଷିଣା ପ୍ରତି

## (୧)

ଦକ୍ଷିଣରେ ବାସ ତବ ? କାହା କନ୍ୟା ? କାହା ଗୃହବଧୂ ?
ବସନ୍ତପ୍ରେୟସୀ କି ଗୋ ! – ସଙ୍ଗେ ତା'ର ଭ୍ରମ ଯେ ସର୍ବଦା !
ଦକ୍ଷିଣ-କବାଟ ଫେଇ ସୁକୁମାରୀ, ଚାଲିଆସ ଲଘୁ
ସାଗର ପର୍ବତ ଡେଇଁ ଅଭିସାରେ ତା ପାଇଁ ପ୍ରମଦା !

ଆଜି ଏ ଚଇତ୍ର ସଞ୍ଜେ ବାତାୟନ ବସିଛି ମୁଁ ଖୋଲି
ଆପଣାର ଭାଗ୍ୟ ଚିନ୍ତି – ପ୍ରହରେକ ହୋଇଲାଣି ନିଶା;
ଶୀତଳ ଚନ୍ଦନରାଶି ତୋ ପରଶ ଦିଏ ଅଙ୍ଗେ ବୋଳି,
ମୁଗ୍ଧ ମୁଁ, ନ ପାରେଁ କରି ଆପଣାର ଭାଗ୍ୟର ମୀମାଂସା ।
ଶୀତଳ ପରଶ ତବ; ତରଙ୍ଗିତ କୋମଳ ଆଶ୍ଳେଷ,
ତୁଷାର-ଧବଳ ଜ୍ୟୋତ୍ସ୍ନା ଆବରିଛି ଗଗନ ଧରଣୀ,
ଏକାକୀ ତରୁଣ ମୋର ବୁକେ ଆସେ ବେଦନା ବିଶେଷ
ଏ କାଳେ । ପାଇଛ କିକି, ସେ ବ୍ୟଥାର ସନ୍ଧାନ ରମଣି ?

ଏକଦିନ ସନ୍ଧ୍ୟାକାଳେ ଏ ବ୍ୟଥାର ପ୍ରଥମ ପ୍ରକାଶ,
ତୁମେ ଥିଲ, ଥିଲା ଜ୍ୟୋତ୍ସ୍ନା, ଥିଲା ଘନ ସହକାରଛାୟା,
ଏକାକୀ ନ ଥିଲି ମୁହିଁ; ଗଣ୍ଡେ ମୋର ଆନର ନିଶ୍ୱାସ
ବାଜୁଥିଲା ଥରି ଥରି, ରକ୍ତେ ସୃଜି ଯାଦୁକରୀ ମାୟା ।
ସେଦିନ ଯାଇଛି ଦୂରେ, ଅଛି ମୁହିଁ, ସେ ଦିନର ସାକ୍ଷୀ
ଆସିଅଛ ଆଜି ତୁମେ । ବ୍ୟଥା ପୁଣି ଜାଗଇ ନୂତନ,
ମନେହୁଏ ଆହା ସତେ ଏ ଜୀବନ କେଡ଼େ ନିରିମାଖି –
ନ ପାଉଁ କେବଳ ତା'ରେ ଯାହା ଲାଗି ଏତେ ଅନ୍ୱେଷଣ !
ହାୟ ଏ ମାନବ-ଜନ୍ମ ! ପ୍ରାଣେ ଏଡ଼େ ଗଭୀର ପିପାସା,
ହାତେ ତା'ର ନାହିଁ କିନ୍ତୁ କରିବାକୁ ତୃଷ୍ଣା ପରିତୋଷ;
ନିଷ୍ଠୁର ଏ ପରିହାସ ! ତୃପ୍ତି ନାହିଁ, ଅଛି ମାତ୍ର ଆଶା;
ମିଳନର ଆଶା ନାହିଁ, ପ୍ରିୟ ପାଇଁ ପ୍ରାଣେ ଏଡ଼େ ଶୋଷ !
ବିଦ୍ରୋହ ଉଠୁଛି ମନେ, ହେ ଦକ୍ଷିଣେ, ଇଚ୍ଛା ତେଜି ଦୂରେ
ଏ ସମାଜ, ଏ ଅନୀତି, ଯା'ନ୍ତି ଚାଲି ତବ ସିନ୍ଧୁକୂଳେ ।

(୨)

ଦୂର ସେ ଦିକ୍‌ଚକ୍ର ପାରେ କେଉଁ ମହାପ୍ରାସାଦର ରାଣୀ,
ଶ୍ୟାମଳ ତମାଳ-ତାଳୀବନ ଘେନି ଯା ସୀମାନ୍ତ ଘେରା,
ତହିଁ ମୋତେ ଘେନିଯାଅ, ବଦନରେ ଅନ୍ତରର ବାଣୀ
ନ ଫୁଟୁଁ, ପ୍ରେୟସୀ ଯହିଁ ବୁଝିଥାଏ ଅନ୍ତରର ଖେଳା ।

ବକ୍ଷ ପାତି ନିଅ ମତେ ହେ ଚଞ୍ଚଳା ! ହେ ଶୀତଳ-ଦେହି !
ତୁମର ସେ ଦୂର ଦେଶେ – ନୀଳସିନ୍ଧୁ, ସ୍ୱର୍ଣ୍ଣବେଳା ପରେ
ବିରହିଣୀ ପରି ଯହିଁ କବରୀ ଫେନପୁଷ୍ପ ଫେଇ
ଅହର୍ନିଶ ପିଟେ ମଥା, ବିଳାପେ ତା ସାରା ବେଳା ଥରେ !

ଜଳ-ନାରୀ ଦୃପ୍ତ ହାସ୍ୟେ ଭାଙ୍ଗେ ଯହିଁ ମହା ନୀରବତା,
କେବଳ ଅପ୍‌ସରୀ ପଦେ ମଥିତ ଯା କମନୀୟ ବେଳା,
ମଧ୍ୟାହ୍ନେ ପ୍ରଣୟୀ ଯହିଁ କେତକିତ-କନକ-ସିକତା
କୀର୍ଣ୍ଣ କରେ ପଦଚିହ୍ନେ, ଖୋଜୁଁ ପ୍ରିୟା-କ୍ରୀଡ଼ାଭ୍ରଷ୍ଟ-ବଳା ।

ଚନ୍ଦ୍ରାଲୋକେ ସଇରିନ୍ଧ୍ରୀ ଖେଳୁଥାନ୍ତି ଯହିଁ ଜଳ-ନାରୀ,
ନଗ୍ନଦେହା, ଘନକେଶେ ସୁନିତମ୍ବଯୁଗଳ ଘୋଡ଼ାଇ,
ଉଚ୍ଛଳ ଯୌବନ-ମଦେ, ଦିଗେ ଦିଗେ ଚନ୍ଦ୍ରିକା ବିଦାରି
ଭ୍ରମୁଥାନ୍ତି, ଦିଗେ ଦିଗେ ଶରୀରର ସୌରଭ ଛଡ଼ାଇ ।
ସେହି ଦେଶେ ନିଅ ମତେ, ଭୁଜ ପାତି ଧର ମତେ ଧର,
ସନାତନ ସ୍ୱପ୍ନେ ଯିବି ଏ ଜଞ୍ଜାଳ ତେଜି ସଂସାରର ।

(୩)

ତୁମରି ପରିରେ ମତେ କର ସତେ ଜୀବ, ଦେହହୀନ,
କ୍ଷୁଧା ମୋର ଯାଉ ଚାଲି, ନ ରହୁ ଏ ସୀମା ଶରୀରର,
ବିହଙ୍ଗ ପରି ମୁଁ ଦୂର ଦିକ୍‌ଚକ୍ରେ ହୋଇଯାନ୍ତି ଲୀନ
ଇଚ୍ଛାମତେ ଜାଣୁଥାନ୍ତି, ବାର୍ତ୍ତା ମୋର ପ୍ରବାସୀ ପ୍ରିୟର ।
ଅଶରୀରୀ ହୋଇ ଥରେ ମିଶନ୍ତି କି ତବ ଦେହ ସାଥେ,
ନ ଥାନ୍ତା ବାସନା, କ୍ଷୁଧା, ନ ଥାନ୍ତା ଏ ଶୋଣିତର ପୀଡ଼ା ।

ଅତୀନ୍ଦ୍ରିୟ ହୋଇ ଏହି ସଂସାରରେ ଫିଙ୍ଗି ପଦାଘାତେ
ଭୋଗନ୍ତି ତୋ ସଙ୍ଗେ ମିଶି ଦେହହୀନ ସୌନ୍ଦର୍ଯ୍ୟର କ୍ରୀଡ଼ା ।
ଦାରୁଣ ଏ ଭାଗ୍ୟ ମୋର, ଇଚ୍ଛାମତେ ଚଳେ ନା ଜୀବନ,
ଆଉ କେ ଅଦୃଷ୍ଟ ପ୍ରଭୁ ବାଧା ମତେ ଦିଏ ପଦେ ପଦେ,

ଇଚ୍ଛା ମୋର, ଛିଣ୍ଡାଇବି ଏ ଶୃଙ୍ଖଳା ଏ ଯେ ନିୟନ୍ତ୍ରଣ,
କରିବି ଜୀବନ ମୋର ଉଚ୍ଛଳିତ ସ୍ୱାଧୀନ ଆନନ୍ଦେ ।

(୪)

ବହ, ବହ, କି ଶୀତଳ କି ପେଲବ ପରଶ ଦେହର !
ଯୌବନ-ଜୀବନ୍ତ କା'ର ହସ୍ତ ସଖି, ବକ୍ଷ ପରେ ତବ
ଦେଇଛି ଚନ୍ଦନ ଲେପ ? କେଉଁ ବଣ କୁସୁମ-କେଶର
ଲଗାଇଛି ଦେହେ ତବ ଏ କୋମଳ ମଧୁର ସୌରଭ ?
ବାତାୟନ ଦିଏଁ ମୁଦି, ସ୍ୱପ୍ନେ ମୋର ଚକ୍ଷୁ ଆନମିତ,
ଅଙ୍ଗନ ବକୁଳପତ୍ରେ ଶୁଭୁଥାଉ ତୋ ବଳାବାଜଣା,
କେବେ ସଖି, ଯିବ ଫେରି ? ପଦପାତ ସରମ-ଶଙ୍କିତ
ଅପେକ୍ଷି ପ୍ରିୟ ଯେ ତେଣେ କରୁଥିବ ଦିବସ ଗଣନା ।

## ସ୍ୱର୍ଣ୍ଣଯୁଗ

ଗଲା ସ୍ୱର୍ଣ୍ଣଯୁଗ କାହିଁ ?
ଦେବତା ମାନବ ସାଥୀ ହୋଇଥିଲେ
ଭେଦ ପରା ଥିଲା ନାହିଁ !
ଛାଡ଼ି ମନ୍ଦାକିନୀ ତଟ,
ଦେବତା, ଧରଣୀ – ଧୂଳି-ସୁଖ ପାଇଁ
ଧରୁଥିଲେ ପରା ଘଟ !
ସୁଖେ ଦୁଃଖେ ମନୁଷ୍ୟର
ମିଶି ତେଜୁଥିଲେ ନୟନୁ ଲୋତକ
ସ୍ନେହେ ଧରି କରେ କର ।
ସୁଖେ ଦୁଃଖେ ମନୁଷ୍ୟର
ସଖା ସଖୀ ପରି ପାଖେ ହୋଇ ଠିଆ
ଦେଉଥିଲେ ପରା ବଳ ?
ସେ ଯୁଗ ଯେ ଗଲା କାହିଁ,
ଲୁହ ଢାଳି ଢାଳି ଡାକିଲେ ତ ଏବେ
ଦେବତା ଆସନ୍ତି ନାହିଁ !

କି ହୋଇଲା ଧରଣୀର ?
ସେଇ ତ ଆକାଶ, ସେଇ ରବି, ତାରା
ସେଇ ନଦୀ, ସେହି ନୀର !
ସେହି ନାରୀ, ସେହି ନର,
ରାଧିକା-ବିରହ ଏବେ ମିଶେ କରେ
ନାରୀ-ଆଖି ଛଳଛଳ !
ଅଛି ସେହି ସୁଖ ଦୁଃଖ
ସୁଦାମା-ଦାରିଦ୍ର୍ୟ କୋଟି ଗୁଣ ହୋଇ
ପୋଡୁଛି ଧରଣୀ-ବୁକ ।
ଦେବତା କାହିଁ ଗୋ ତେବେ,
ହାତେ ପୋଛି ଦେଉ- ନାହାନ୍ତି କାହିଁକି
ନରନେତ୍ରୁଁ ଲୁହ ଏବେ ?
ତେବେ ମିଛ କବି-କଥା,
ଭଗବାନ୍ ଅବ- ତରି ଆସିବାର
ହରିବାକୁ ନର ବଥା ?

## ସୁଖ ଦୁଃଖ

ମତେ ସିନା ସୁଖୀ କଲ, ଚତୁର୍ଦ୍ଦିଗେ ମୋର
ସ୍ରଷ୍ଟା ହେ, ଦୁଃଖର ଏ କି ବିଭୀଷିକା ଘୋର !
ମୋ ପ୍ରାଣେ ଢାଳିଲା ସିନା ସୁଧା ତୁମ୍ଭ ନାରୀ
ପ୍ରଣୟର ହେମ-ପାତ୍ରୁ; ଆନ ବକ୍ଷେ ଢାଳି
ନାରୀ ପାଏ ହଳାହଳ । ମୋ ଭୋଜନ ପାଶେ
ଏଇ ଯେ ମାନବ-ମୁଖ ମୋ ଉଚ୍ଛିଷ୍ଟ ଆଶେ
ବ୍ୟାକୁଳେ ରହିଛି ଚାହିଁ, ତୁମ୍ଭେ ନାରାୟଣ
ଦେଖୁଛ ତା ଶୂନ୍ୟେ ରହି ?
ଏ ଦୈନ୍ୟ କାରଣ ।
ନିତ୍ୟ ମୁଁ ଖୋଜଇ ଚିତ୍ତେ, ଦିଗ-ଦିଗନ୍ତରୁ
ମାନବର ଆର୍ତ୍ତ ସ୍ୱର କୋଟି ହୃଦୟରୁ
ଆସି ମୋର କର୍ଣ୍ଣେ ପଶେ । ମୃତ୍ୟୁ, ଅପମାନ

ଦାରିଦ୍ର୍ୟ, ଦୀନତା, ରୋଗ, ରାଜ-ଅବିଧାନ
କେତେମନ୍ତେ ସହେ ନର କ୍ରୂର-ଅତ୍ୟାଚାର,
ପ୍ରତିକାର କାହିଁ ତା'ର; କାହିଁ ପ୍ରତିକାର ?
ଏ ଦୁଃଖ-ସମୁଦ୍ରେ ମୋର କ୍ଷୁଦ୍ର ସୁଖ ଲାଗେ
ପରିହାସ ସମ ମତେ । ପ୍ରିୟା ଅନୁରାଗେ
ବାହୁ ତା'ର କଣ୍ଠେ ମମ ଭିଡ଼ିଲେ ପ୍ରାଣରେ
ସହସା ମୋ ଚିତ୍ତେ ଉଠେ ତିକ୍ତ ବିରହରେ
କେମନ୍ତେ କାଟନ୍ତି କାଳ କୋଟି ନାରୀନର
ନିଃସଙ୍ଗ ଶୟନେ କାହିଁ । ଗୃହେ ପ୍ରିୟା-କର
ଭୁଞ୍ଜାଇଲେ ମୋତେ ସ୍ନେହେ, ଉଠେ ମୋର ମନେ
ଅଗଣ ମାନବ ମୁଖ ତିକ୍ତ ଅନଶନେ;
ପାଶେ ତାଙ୍କ କେହି ନାହିଁ ଦୟା କରି କରେ
ଦେବ ତାଙ୍କ ମୁଖେ ଅନ୍ନ ।
ଦୁଃଖ ସମୁଦ୍ରରେ
ମୋର ସ୍ୱାର୍ଥ-ସୁଖ-ବିନ୍ଦୁ ଲୟ ଲଭେ ଧୀରେ —
ସ୍ରଷ୍ଟା ହେ, କିପାଇଁ ବାନ୍ଧ ସୁଖ ଏ ବିଧିରେ ?
ଦିଅ ମତେ, ଶକ୍ତି ଦିଅ, ଦୀନ-ଦୁଃଖୀ ଜନେ
ସୁଖୀ ମୁଁ କରାଏ ତ୍ୱରା, ତିକ୍ତ ଅନଶନେ
ଅମୃତ ମୁଁ ଦିଏ ଆଣି, ବାସ-ବସ୍ତ୍ରହୀନେ
ପିନ୍ଧାଏ ମୁଁ ଚିନାଂଶୁକ; ଦିଅ ଏକ ଦିନେ
ଜଗତରୁ ଦୁଃଖ ମୁହିଁ ପୋଛିଦେବି କରେ
ଦେଖିବି ଆନନ୍ଦରେଖା ନିଖିଳ-ମୁଖରେ ।

## ବନ୍ଧନ

ସଂସାରର କର୍ମସ୍ରୋତେ, ଭସାଇବି ବୋଲି ଏ ଜୀବନ
କେତେଥର ମନେକଲି, ଛିଣ୍ଡାଇ ମୋ ସକଳ ବନ୍ଧନ
ଅୟୁତର ଦୁଃଖ ସୁଖେ ମିଶାଇବି ମୋର ଦୁଃଖ ସୁଖ,
କେତେ ବୁକେ ହାତ ଥୋଇ, ପୋଛିଦେବି ସ୍ନେହେ କେତେ ମୁଖ ।
ପାରିଲି ମୁଁ କାହିଁ କହ ? ବନ୍ଧନ ତ ନ ପାରେ ଛିଣ୍ଡାଇ
ଯେତେ ଆଗେ ଯାଏ ମୁହିଁ, ପଛୁ ମୋର ଟାଣେ କେହି ଥାଇ ।

ସେ ବନ୍ଧନ ଘୃଣ୍ୟ ନୁହେଁ, ମାୟା ନୁହେଁ, ନୁହେଁ ସେ ବଞ୍ଚନା,
ପରମ ପବିତ୍ର ସେ ଯେ, ତା' ଘେନି ତ ସ୍ୱରଗ ରଚନା
ହୁଏ ଏ ଧରଣୀ ପରେ । ଭଗିନୀର ପ୍ରଶାନ୍ତ ପ୍ରଣୟ,
ପରିଜନ-ପ୍ରତିବେଶୀ-ବନ୍ଧୁ-ପ୍ରୀତି ଘେନି ରସମୟ
ସେ ବନ୍ଧନ-ଜାଲ, ପୁଣି ସର୍ବୋପରି ଅୟି ବିନୋଦିନୀ
ତୁମର ଅମୃତ-ସ୍ପର୍ଶ ସେ ଯେ ଚିର ମାନସ-ରଞ୍ଜିନୀ !
କେମନ୍ତେ ଛାଡ଼ିବି ତାରେ ? କେମନ୍ତେ ବା କହିବି ସେ ହେୟ
ଅନ୍ତରର ପ୍ରାଣ-ରସ ଯା'ର ପ୍ରିୟେ, ଅଟେ ଖାଦ୍ୟ, ପେୟ ।

ଏ ବନ୍ଧନ ମଧ୍ୟେ ସଖି ପାଏନା କି କହ ଥରେ ଥରେ
ଦେବତାର ଅନୁଭବ ମୋର ଏହି ଜୀବନପଥରେ ?
ପାଏ ପାଏ – ହେ ବିଚିତ୍ରେ, ଥରେ ଥରେ ଚାହଁ ଯେବେ ମତେ
ଭାଷାମୟ ଚକ୍ଷୁ ଦେଇ, ପ୍ରାଣଭରି ଅନନ୍ତ ସଂକେତେ,
ଭାବେ ଏ ବନ୍ଧନ ନୁହେଁ ମାୟା, ଆଉ ଏ ଶରୀର ମାଟି,
ଗଭୀର ଅମୃତଧାରା ଏହା ତଳେ ଉଠୁଅଛି ଫାଟି;
ପ୍ରଣୟେ ସେ ସୁଧାଧାରା ନର ନାରୀ ବାଣ୍ଟି ଏକ ଆରେ
ରଚନ୍ତି ନନ୍ଦନ ଏଥି ଧରଣୀର ପ୍ରାଣ-ନଦୀଧାରେ ।

ଗଭୀର-ପ୍ରଣୟ-ପାୟୀ ମୁହିଁ ତେଣୁ ମୋ କ୍ଷୁଦ୍ର ନନ୍ଦନ
ତେଜି ନାହିଁ ଯାଏ ଦୂରେ – ସୁଖ ଲାଗେ ମୋତେ ଏ ବନ୍ଧନ ।
ତଥାପି ଶ୍ରବଣେ ବାଜେ ବେଳେବେଳେ କ୍ରନ୍ଦନ କାହାର
ଦରିଦ୍ର ପତିତ ଦୀନ ଭୋଗୁଅଛି କାହିଁ ଅତ୍ୟାଚାର ।
ଦେଶ ଦେଶ ଜାତି ଜାତି ରାକ୍ଷସର ନିର୍ମମ ଶୋଷଣେ
ଆସନ୍ନ ମରଣ ଦେଖି କି ଚିତ୍କାର କରେ କ୍ଷଣେ କ୍ଷଣେ !
ମାତା କାନ୍ଦେ, ପୁତ୍ର କାନ୍ଦେ, ପ୍ରିୟ କାନ୍ଦେ ପ୍ରିୟାର ବିରହେ
ଅନ୍ନାଭାବେ ପୁଣି କାହିଁ ଈଶ୍ୱରର ପୁତ୍ର ପଡ଼ିରହେ
ଅନାଦୃତେ ପଥପାର୍ଶ୍ୱେ । ବିଶ୍ୱେ ଯେତେ ଅନ୍ୟାୟ ତାହାର
ପ୍ରତିଧ୍ୱନି ବାଜେ କାନେ । ମୋ ନନ୍ଦନ-ବନ ଚାରିଧାର
ଥରିଉଠେ ସେ କ୍ରନ୍ଦନେ । ପ୍ରାଣ ମୋର କହେ ଯିବି ଭାସି
ବିଶ୍ୱର ନୟନ ଲୁହେ; ଅୟୁତର ଭାଗ୍ୟେ ପ୍ରାଣ ଝାସି ।

ସେ ଅନ୍ୟାୟ-ଅନାଚାରେ ନିଜରେ ମୁଁ କରନ୍ତି କି ଭାଗୀ !
କିନ୍ତୁ ହାୟ, ମୋର ମନ – ନିତାନ୍ତହିଁ ଗୃହ-ଅନୁରାଗୀ,

ପାରେନା ତ, ପାରେନା ତ ମିଶି ଏ ଯେ ଲକ୍ଷ କୋଟି ସାଥେ,
ପରକୁ ନିଜର ନାହିଁ କରେ କାହିଁ ଏ ଜୀବନପଥେ ।
ସେ ଚାହେଁ ବାନ୍ଧବୀ-ବନ୍ଧୁ-ପ୍ରତିବେଶୀ-ସେନେହ ବନ୍ଧନେ
ଗଭୀର ମଗନ ରହି କୃତକୃତ୍ୟ କରିବ ଜୀବନେ
ମହତ୍ତର ଚିତ୍ତ ଅଛି ବୁଝିବାକୁ ବିଶ୍ୱର ସନ୍ତାପ
କି କରିବ ଅକିଞ୍ଚନ ବୋଧିବାକୁ ବିରାଟ-ବିଳାପ ?
କ୍ଷୁଦ୍ର ମୁଁ, ମୋ ସୁଖ ଛାଡ଼ି କିପାଁ ଶୁଣେ ବିଶ୍ୱର କ୍ରନ୍ଦନ ?
କେ ଡାକେ – 'ଜାତି ଯେ ମରେ ଛିଣ୍ଡାଅ ହେ ତୁମର ବନ୍ଧନ !'
କେ ହେଲେ ଘିରରେ କହୁ କେଉଁ ସତ୍ୟପଥ ଧରି ଯାଇ,
ବନ୍ଧନ କାଟିବା ଇଚ୍ଛା, – ଦୁଃଖ ଲାଗେ ପାରେନା ଛିଣ୍ଡାଇ ।

## ପ୍ରାଣପକ୍ଷୀ

ପ୍ରାଣବନେ ପକ୍ଷୀ ଗାଏ ଆକୁଳ ରାଗିଣୀ
ବୁକୁ ସାରା ବେଦନାରେ ଡାକେ କିଣିକିଣି ।
ଗଭୀର ଜୀବନ-ବନେ କେଉଁ କୁଞ୍ଜତଳେ
କି ପକ୍ଷୀ ସେ, କି ଯେ ଗାଏ ଏଡ଼େକ ବିକଳେ !

ଖୋଜି ଖୋଜି ଚିହ୍ନାଚିହ୍ନି କିଛି ନାହିଁ ପାଏ
ଜାଣେ ଖାଲି ପ୍ରାଣ-ବନେ ବିହଙ୍ଗମ ଗାଏ ।
ଯୁଗ-ଯୁଗାନ୍ତରୁ ସେ ଗୋ ଜୀବନ-ଦୋସର
ଜନମେ ଜନମେ ସହଚର ସେ ମୋହର ।

ପ୍ରାଣବନ ଅନ୍ତଃପୁରେ ଚିର-ବଧୂ ପରି
ଓଢ଼ଣାରେ ମୁଖ ଢାଙ୍କି, ଆଖି ଜଳେ ଭରି
କାହାର ବିରହେ ସେ ଯେ ଧରିଅଛି ତାନ,
ଏଡ଼େ ବୁକୁଫଟା ! – ମୋର ଭାଙ୍ଗିଯାଏ ପ୍ରାଣ ।

ଯୁଗ-ଯୁଗଧରି ସେ ଯେ ବିଳପୁଛି ବସି
ନିଭୃତ ସେ ବନକୋଣେ – ଦିନେ ମୁଁ ଭରସି
ପଚାରିନି, ହେ ବିଦେଶି, କାହିଁ କାନ୍ଦ ନିତି ?
କି ବାସନା, କାହାପାଇଁ ଏ ଗଭୀର ପ୍ରୀତି ?

ଜିଜ୍ଞାସାର ଅବସର ନାହିଁ ମୋର ମନେ
ଅବାଧରେ ଗାଇଯାଏ ପ୍ରାଣ-ପକ୍ଷୀ ବନେ ।
ତା ଲୋତକେ ସିକ୍ତ ମୋର ସମସ୍ତ ଜୀବନ
ଜନମେ ଜନମେ ତେଣୁ ସାଥୀ ବିହଙ୍ଗମ ।

## ବିଶ୍ୱରୂପ

ଅନ୍ଧକାର ଦେବାଳୟେ, ପର୍ବତ କନ୍ଦରେ
କଠୋର ତପସ୍ୟା ସାଧି କିପାଇଁ ଈଶ୍ୱରେ
ଖୋଜିଥାନ୍ତି ଯୋଗୀ-ଜନେ ? ଏହି ଦୃଶ୍ୟମାନ
ବିଚିତ୍ର ଧରଣୀ-ପରେ ତାଙ୍କର ସନ୍ଧାନ
ବ୍ୟର୍ଥ କି ହୋଇବ ହେଳେ ? ରେଣୁ ରବିଯାଏ
ଊର୍ଦ୍ଧ୍ୱେ, ଅଧେଃ, ଚତୁର୍ଦ୍ଦିଗେ, ଯହିଁ ମୁଁ ପକାଏ
ଦୃଷ୍ଟି ମୋର, ତହିଁ ପାଏ ବିରାଟ ସ୍ରଷ୍ଟାର
ସତ୍ୟ-ସ୍ପର୍ଶ ମୋ ଇନ୍ଦ୍ରିୟେ । ମୋ ପଦ-ସଞ୍ଚାର
ଯେ ତୁଚ୍ଛ ରେଣୁରେ ହୁଏ, ତହିଁ ଭଗବାନ୍
ଓତପ୍ରୋତ ଛନ୍ତି ରହି । ନଭେ ଲମ୍ୱମାନ
ତାରାଗଣେ ପୁଣି ସେହି । ତାଙ୍କୁ ଖୋଜିବାରେ
ପର୍ବତେ ପଶିବି କିପାଁ ? ମୋର ଚାରିଧାରେ
ଏ ଧରଣୀ ରନ୍ଧ୍ରେ ରନ୍ଧ୍ରେ, ଅଣୁ ଅଣୁ ଭେଦି
ଅଛନ୍ତି ସେ, ଖିଳ-ବିଶ୍ୱ ତାଙ୍କ ପୂଜା-ବେଦୀ ।

## ଦେବ-ପୂଜା

ପୁରୋହିତ, ଶୁଦ୍ଧପୂତ ହୋଇ ଦେଉଳରେ କା' ପୂଜା କର ହେ ?
ସୃଷ୍ଟି ଯା'ର ଉଦାର ଆଲୋକ, ସେ ଦିଅଁ କି ଅନ୍ଧକାରେ ରହେ ?
ଅନ୍ଧକାରେ ଆଖି ବୁଜି ତାକୁ ଦେଖିବାରେ କିପାଁ ଏ ପ୍ରୟାସ ?
ଆଖି ମେଲି ଦେଖ ନା, ଆଲୋକେ କି ସୁନ୍ଦର ତାହାର ପ୍ରକାଶ !
ଅନ୍ତରରୁ ଅନ୍ତରୀକ୍ଷେ ବ୍ୟାପି ବିରାଜିତ ଯେ ଭୁବନେଶ୍ୱର,
କ୍ଷୁଦ୍ର, ରୁଗ୍ଣ, ଅନ୍ଧକାର ଗୃହେ, ତା'ର କିପାଁ ଆରାଧନା କର ?

ଦେଖ ଦେଖ ଆଗେ ପଛେ ତବ, ଶତ ଶତ ନରନାରାୟଣ,
ଯାଙ୍କୁ ତୁମେ ପଛେ ଦେଇ ପେଲି, ଦେବତାରେ ଲଭିବ ବ୍ରାହ୍ମଣ ?
ଦେବତାକୁ ବାହାରେ ରଖିଲ, ଛୁଇଁବାକୁ ଡରିଲ ତାହାରେ,
କା'ରେ ତୁମେ ଗଲ ପୂଜିବାକୁ ଦେଉଳର କ୍ଷୁଦ୍ର ଅନ୍ଧକାରେ ?
ପାପ ଏ ଯେ, ପୁଣ୍ୟ କେ କହିଲା, ସେ ପାପରୁ ମୂକ ସେ ଦେବତା,
ଯେତେ ଦିଅ ପୂଜା ବା ଆରତି; ତେଣୁ ସେ ଯେ ନ କହୁଛି କଥା ।
ଏଇ ପାପେ ଜାଣ ହେ ଋତ୍ୱିକ, ଦେଶୁ କଲେ ଦେବତା ପ୍ରୟାଣ,
ଆଜି ଖାଲି ଦେଉଳେ ଦେଉଳେ ବିରାଜିତ କାଷ୍ଠ ଓ ପାଷାଣ ।

ଏବେ କାଠ ପଥର ନ ପୂଜି, ଆସ ପୂଜ ଜୀବନ୍ତ ଦେବତା,
ଯା ଆଖିରୁ ଲୁହ ଯିବ ବହି, କହିଦେଲେ ପଦେ ମଧୁ କଥା ।
ବନ୍ଦ କର ମନ୍ତ୍ରପାଠ ତବ, ବନ୍ଦ କର କର୍ପୂର ଆରତି,
ଦେଉଳର ବାହାରେ ଦେବତା ହାତ ପାତି ଉଭା ରହିଛନ୍ତି ।

ଦେବ-ଭୋଗ ନିରନ୍ନରେ ଦିଅ, ଦେବ-ସେବା ହେଉ ମାନବରେ,
ଦେବତାର ଦରଶନ ଲଭ, ମାନବର ପ୍ରତି ଘରେ ଘରେ ।
ସେ ପୂଜାରେ ମୂକ ଭଗବାନ୍, ବାକ୍‌ମୟ ତୁରିତେ ହୋଇବେ,
ଦିଅଁ ହୋଇ ପ୍ରତି ପ୍ରତିବେଶୀ ନାରାୟଣୀ ବାଣୀ ଶୁଣାଇବେ ।
ଆସ ଭକ୍ତ, ଆସ ପୁରୋହିତ, ନ ପଶ ହେ ଆଉ ଅନ୍ଧକାରେ,
ବିଧାତାର ବିମଳ ଆଲୋକ, ଖୋଜ ଆସି ମୂର୍ତ୍ତ ବିଧାତାରେ ।

## ମୂକଦେବତା

ହେ ମୂକ ଦେବତା,
ଦେଉଳ ଦୁଆର ଖୋଲ ହେ ଖୋଲ,
ସତ୍ୟ ମିଥ୍ୟା କିବା ତୁମେ, ଥରେ ବୋଲ ହେ ବୋଲ ।
ନିଷ୍ଠୁର ତୁମେ ଖୋଲିବନି ଜାଣେ
ବୃଥା ମୁଁ ଆଘାତ କରୁଛି ପାଷାଣେ
କେତେ ମୁଁ ଡାକିଲି ମନ୍ଦିର ଆଗେ ଭକତି-ଭୋଳ
କିଛି ହେଲେ ତା'ର ମୂଲ୍ୟ କି ନାହିଁ ? ଥରେ ହେ ବୋଲ ।
ଖୋଜିଛି ତୁମରେ କେତେ ଏ ନୟନ-ଅଶ୍ରୁ ଢାଳି,
ହେ ବଧିର, ତୁମେ ରହିଲ କେବଳ ମଉନ ମାରି ।

ଶେଷେ ଆଜି ମନେ ସନ୍ଦେହ ଜାଗେ
ଚିରେ ପୂଜାର ବ୍ୟର୍ଥତା ଲାଗେ,
ଫେରୁଛି ମୁଁ ତବ ଦେଉଳୁ ମନ୍ଦେ ଚରଣ ଚାଳି
ଗୁରୁ ଅଭିମାନ, ମନେ ସନ୍ଦେହ, ନୟନେ ବାରି ।

## ଆଲୋକ ମାଗେ

ଗଭୀର ନିରାଶାର ତାମସ ଅନାଚାର
ଚିତ୍ତେ ବିକଳ ମୋ କରଇ,
ଆଲୋକ ନାହିଁ କାହିଁ, ପଥେ କେ ସାଥୀ ନାହିଁ,
ବିପଦ ଧୃତି ମୋର ହରଇ ।

କୃଷ୍ଣ-ବାରିଦର ଗଭୀର ଗରଜନ
ପ୍ରବଳ ବତାସିର ପ୍ରଳୟ ସନସନ,
ଏକାକୀ ପଥିକର ନିଖିଳ ମରମ ଯେ ଥରଇ,
ଗଭୀର ନିରାଶା ମୋ ଚିତ୍ତେ କି ବିକଳ କରଇ ।

ଆଲୋକ ଦେଖା ପ୍ରଭୁ ଆଲୋକ ଦେଖାଅ ହେ,
କୃଷ୍ଣ ବାରିଦରେ ବିଜୁଳି ଲେଖାଅ ହେ ।
ଜଡ଼-ଦୀନରେ କିପାଁ ବିଚାର ବିଡ଼ିବାର,
ଶଙ୍କା ପରାଜୟ କେବଳ ହେବ ସାର !
ଗଭୀର ଭୟେ ତେଣୁ ଚରଣ ପଛ କରି ଫେରଇ,
ନିରାଶ ମୋ ନିଖିଳ ଚିତ୍ତେ କି ବିକଳ କରଇ !

ଦେବତା ଧର ହାତ, ଆଲୋକ ଜାଳ ମୋର ପଥରେ,
ଭଗ୍ନଜାନୁ ଏହି ଶ୍ରାନ୍ତ ପଥିକରେ ଥାନ ଦିଅ ହେ ତବ ରଥରେ ।
ଯଦି ସେ ଦୟା ନାହିଁ, ବଜ୍ର ତବ କାହିଁ, ଆଣ ହେ
ଝଞ୍ଜା, ଅବସାଦ-ଗ୍ରସ୍ତ ଅସହାୟ ପଥିକ ମଥା ପରେ ହାଣ ହେ ।
ସେଥିରେ ନିରାଶାର ନିଠୁର ଅନାଚାର ସରଇ,
କିପାଁ ଏ ଅସହାୟ ପଥିକ କଲବଲେ ଚାଲଇ ?

# ଆହୁତି

ତୁମର କରୁଣାର ଯୋଗ୍ୟ ନୁହେଁ ମୁଁ ଯେ –
ତୁମ କରୁଣା କିପାଁ ମାଗିବି,
ଦେଇଛ ଯେଉଁ ଦୁଃଖ ନିବିଡ଼ ଦାବ-ଦାହ,
ନୀରବେ ପ୍ରାଣେ ପ୍ରାଣେ ଭୋଗିବି ।
ତୁମର ଲୋକ ଯେତେ ସୁଭଗ ଗରୀୟାନ,
ତାଙ୍କୁ ମନୋମତ କରୁଣା କର ଦାନ,
ତିଳେସେଁ ଅଭିମାନ କରିବି ନାହିଁ ନାଥ,
ଆପଣା ଶାସ୍ତିରେ ମରିବି ।
ତୁମର ସୁଖ ଲାଗି ସହି ମୁଁ ପାରେ ଯଦି
ତୁମ କୁଳିଶ-ବାଣ-କଷଣ,
ସେଇ ତ ଏ ଦୀନରେ ପରମ କରୁଣା ହେ,
ସୁଖଦ, ହୃଦ-ଦାବ-ଦହନ ।
ଅହଙ୍କାର ମମ ଶରତ୍ ମେଘ ସମ
ରିକ୍ତ ଆଜି ନାଥ, ଶୁଦ୍ଧ ସଚ୍ଚେତନ
ପରମ ବିନୟରେ ଶାସନ ନେବି ମାନି,
ତୁମରି ବିଧି-ଜୟ ଗାଇବି ।

# ତୁମର ପ୍ରୟୋଜନ

ନିବିଡ଼ ଦୁଃଖାନଳେ ଜଳି ମୁଁ ମରେ ପଛେ
ତୁମରି ଲୀଳା ପରକାଶୁ ହେ,
ନିବିଡ଼ ନିରାଶାର ଅନ୍ତ ଭେଦି ପ୍ରଭୋ
ଗଭୀର ବିଶ୍ୱାସ ଆସୁ ହେ ।
ମୋର ଏ ଜୀବନର କ୍ଷୁଦ୍ର ନିଜ-କଥା,
ମୋର ଏ ଆପଣାର ତୁଚ୍ଛ ପ୍ରାଣ-ବ୍ୟଥା,
ସେ କିପାଁ ଆଡୁଆଳ କରିବ ମହାଲୋକେ,
ଫେରାଇ ନେବ ତବ ପାଶୁ ହେ ।

ତୁମର ମର-ହୀନ ସୃଜନ ଗତି ପାଇଁ
ମରଣ ଯଦି ଲୋଡ଼ା ପଥରେ,
ମୋ ପରି କୋଟି କୋଟି ପରାଣ ପ୍ରସ୍ତୁତ
ପିଷ୍ଟ ହେବେ ତବ ରଥରେ ।
ଆଜି ମୋ ପ୍ରାଣେ ପ୍ରଭୋ ସେହି ତ ଆୟୋଜନ,
ବକ୍ଷେ ତବ ଲାଗି ପ୍ରାଣର ଇନ୍ଧନ,
ମୋର ଏ ହୋମାନଳ-ଦଗ୍ଧ-ଚିତାଧୂଳି
ଲୋଡ଼ାରେ ତବ ହେଲେ ଆସୁ ହେ ।

## କୃତାର୍ଥ

ଦହ ପଛେ, ଦାବ-ଦାହନେ
ମୋର, ଚିତାରୁ ବାହାରୁ ଆଲୋକ,
ମତେ, ପେଷ ପଛେ ଘୋର କଷଣେ
ମୋର ହସ ଦେଖୁଥାଉ ଭୂଲୋକ ।
ପଛେ, ନିର୍ମମେ ଘଷ ପାଷାଣେ
ଅବା ଫୁଟାଅ ତ୍ରିଶୂଳ ବିଷାଣେ,
ଚନ୍ଦନ ସମ ଗନ୍ଧ ଦିଅ ମୋ ବିନାଶେ,
ଉର୍ବର ହେଉ ମାଟି ମୋ ଶୋଣିତ ସାରଣେ ।
ମୋର, ଜୀବନ ଧୋଇଛ ଲୁହରେ
ମତେ, ପୋଡ଼ିଛ ରୁଦ୍ରକୋହରେ,
ଅନ୍ୟ ମାଗୁଣି ନାହିଁ ନାଥ ତମ ପୟରେ,
ଅର୍ଥ ଦିଏ ଏ ନିରର୍ଥ ଲୁହ ଦାହରେ ।

## ଦୂର୍ବାର ଆରାଧନା

ହେ ଲୋକଲୋଚନ, ଭୁବନବନର କେଉଁ କୋଣରେ
ଜାଣ କି ହେ, ଦୀନ ଦୂର୍ବା ମୁଁ ନିତି ତୁମରେ ସ୍ମରେ ?

ଜୀବନ-ସାରା ଦେଇ ମୃତ୍ତିକା ଅଛି କିଣି,
କି ହୀନ କର୍ଦ୍ଦମରେ ଭରିଲି ମୋ ପସରା !

ପ୍ରଦୀପ ନ ଜାଳି ମୁଁ ତଇଳ ଦେଲି ଢାଳି,
ଅନ୍ଧାର ଆଜି ମୋର ନୟନେ ଘେରି ରହେ,
ସତ୍ୟ କି ଛାୟା ଆଉ ଅନ୍ଧାରେ ନୁହେଁ ବାରି,
ଛାୟାକୁ ସତ ଭ୍ରମେ ଜାକି ମୋ ପ୍ରାଣ ଦହେ ।
ଆଜି ମୁଁ ଭାବେ କିପାଁ ତଇଳ ଦେଲି ଢାଳି,
ଅନଳ-ଅନୁତାପ-ଦାହ ମୋ ହିଆ ସହେ ।

ପତନ ହେଲେ ଜଣେ ଉଠାଏ ଆସି ପରା,
ପଙ୍କିଳ ହେଲେ ଦେହ ଦିଏ ସେ ହାତେ ଧୋଇ,
ଶୁଖିଲା ଦୀପ ଦେଖି ତଇଳେ ଭରେ ସରା,
ବଦନ ଦିଏ ପୋଛି, ଲୋତକ ଗଲେ ବୋହି ।
ମୋ ପାଇଁ ସେ ଦୟାଳୁ ପୁରୁଷ ଗଲେ କାହିଁ ?
ବୃଥା କି ମୋ ନିରାଶ-ଲୋତକ ଯିବ ବୋହି ?
ପ୍ରଭୁ ଅଛ ହେ କାହିଁ ପ୍ରଦୀପ ମୋର ଭର,
ତଇଳ ତବ ଆଉ ନ ଦେବି ଭୂମେ ଢାଳି ।

ଏଥର ତବ ଦାନ ନ ହେବ ହେ ବିଫଳ,
ଉଠାଅ ହାତ ଧରି, ଯିବି ମୁଁ ନିଜେ ଚାଲି ।
ଚନ୍ଦନ ପଙ୍କେ ବୁଝିଲିଣି ମୁଁ ଭେଦାଭେଦ,
ପରୀକ୍ଷା କର ପ୍ରଭୁ, ପାରେ କି ନାହିଁ ବାରି ।

## ଦୁର୍ବଳ ସୈନିକ

ମୋତେ କିପାଁ ତବ ସୈନିକ କଲ ହେ ସେନାପତି,
କରି ମୋ ଜୀବନ ଅବସାଦ-ମୟ, ଅବଳ ଅତି ?
କେ ଧରେ ପତାକା, କେ ଧରେ ଅସ୍ତ୍ର,
କେ ଧରେ ବିଦ୍ୟା-ଧର୍ମ-ଶସ୍ତ୍ର,
ତା ଘେନି ତୁମର ଚଳୁଅଛି ରଣ ହେ ମହାମତି,
ମତେ କିପାଁ ଠିଆ କଲ ରଣଭୂମେ, ମୋର କି ଅଛି ?

ଯେଉଁମାନେ ମତେ ଭାବିଥିଲେ ବୀର ଛାଡ଼ିଲେ ଆଶା,
କିବା ଅପମାନ କହ ତ ! ତା'ର ମୁଁ ନ ପାଏ ଭାଷା
ସଂଗ୍ରାମେ ହାରି କାହିଁ ଯିବି ଏବେ ମୋର କି ଗତି ?
ଏଇଥି ପାଇଁ କି କଲ ସୈନିକ ହେ ସେନାପତି !
ଭଗ୍ନଜାନୁ ମୁଁ ଶକ୍ତି ଯାଚ୍ନା ଚରଣେ କରେ,
ତୁମରି ଆଶିଷେ ତୁମରି ଯୁଦ୍ଧ ଜୟ ମୁଁ କରେଁ,
ମୋର ନାମେ ଥରେ ଉଠାଅ ତୁମର ବିଜୟ-ଛତି
ଆନନ୍ଦେ ତବ କୀର୍ତ୍ତି ଗାଇବି, ହେ ସେନାପତି !

## ତୀର୍ଥ-ଧୂଳି

ବଡ଼ଦାଣ୍ଡେ ଉଡ଼େ ବାଲି ଧୂଳି ଅବିରତ,
ବିଳାସୀର ଅଙ୍ଗେ ପଡ଼ି କରଇ ବିବ୍ରତ ।
''ଏଠି କି ମନୁଷ୍ୟ ରହେ ? ଆସିଲି କିପାଇଁ !''
ବୋଲି ସେ ବିଳାସୀ ଦୁଃଖେ ମୁଖ ପୋଛୁଥାଇ ।
ସେଇ ପଥେ ଭକ୍ତ ଯାଏ ଆନନ୍ଦ-ଗଦ୍‌ଗଦ,
ଆନନ୍ଦେ ଭୂମିରେ ତା'ର ପଡୁନାହିଁ ପଦ ।
''ଏ ଧୂଳି ପଡୁ ମୋ ମୁଣ୍ଡେ ଜନ୍ମ-ଜନ୍ମାନ୍ତର''
ବୋଲି, ସେ ଧୂଳିରେ ଧୁଏ କ୍ଲିନ୍ନ କଳେବର ।

## ରିକ୍ତତାର ଗୌରବ

ଭାଗ୍ୟ-ଭାର ଯା ନ ଦେଇଛ ମାଥେ
ଶ୍ରେଷ୍ଠ ଆଶିଷ ମୋରେ,
ନୁଆଇଁ ପାରିବି ସହଜେ ଏ ଶିର
ହେ ନାଥ ତୋ ପଦ ତଳେ ।
ଆସନ, ଭୂଷଣ ନ ଦେଇ କରିଛ
ଜୀବନ ମୁକ୍ତ-ଭାର,
ହେ ଦେବ ସେ ଯୋଗୁଁ ଦେଉଳେ ମୋର
ସହଜ ମୋ ଅଭିସାର ।

ଭିଡ଼ିବାକୁ ପଛୁ ରଖିନା ଯେ କିଛି
ବିପୁଳ ଏ ଜଗତରେ;
ପରମ ଭାଗ୍ୟ ମୋରେ ।
ଶୂନ୍ୟ ରଖିଛ ପାତ୍ର ମୋର ଯା,
କୃତଜ୍ଞ ସେଥିପାଇଁ,
ପୂର୍ଣ୍ଣହୋଇବ କାଳେ ବା ତୋହର
କରୁଣା-କଣିକା ପାଇ ।
ରିକ୍ତ ଜୀବନ ଦେଇ, ଯା ତୋଲାଗି
ତିନ୍ତାଇଲ ଲୋତକରେ,
ଭାଗ୍ୟ ସେ ଜୀବନରେ !
ବହୁଦିନ ପରେ ଜାଣିଲି ତଥ୍ୟ
ସତ୍ୟେ ପାଇଲି ବୁଝି,
ଦୁର୍ଦ୍ଦିନେ କିପାଁ ଡାକିଛି ତୁମରେ
ଲୋତକେ, ନେତ୍ର ବୁଜି !
ନିଃସଙ୍ଗ କରି ସଙ୍ଗ ତୁମର
ଖୋଜାଇଲ ଆଖିଜଳେ,
ଭାଗ୍ୟ କହିବି କା'ରେ ?

## ଅଶ୍ରୁ-ପୂଜା

ଅଶ୍ରୁ-ସଜଳ ନୟନେ କେବଳ
ମିଳେ କି ତମର ଦେଖା ?
ଦୈନ୍ୟ-ବିକଳ ଲାଞ୍ଛନାରେ
କରୁଣା ତମର ଲେଖା ?
ସ୍ନେହ କି ତମର, ବିକଶେ ହେ ନାଥ
ହୃଦୟ ମନ୍ଥନେ,
ମୁମୁକ୍ଷୁରେ ବାନ୍ଧ କି ଆଗେ
ବ୍ୟଥାର ବନ୍ଧନେ ?
ବିଳାପ-ଘନ ଚିର ହେ ତବ ଦେଉଳ ଚତ୍ୱର,
ପ୍ରାର୍ଥନାର କରୁଣ-ରାଗେ ଆକୁଳ, ମନ୍ଥର ।

ଅଶ୍ରୁ-ଅର୍ଘ୍ୟ ଲୋଡ଼ା କି ଚିର ଚରଣ ଆରାଧନେ,
ଏଇ କି ପରମ ଆଶୀର୍ବାଦ, ତମର ଭକ୍ତଜନେ ?

ଜୀବନ ମମ ଘୋର ଯେ ନାଥ, ଚନ୍ଦନ ପରିରେ,
ସିକ୍ତ କର ଅଙ୍ଗ ମୋର ଲାଞ୍ଛନା ବାରିରେ,

ନୟନ ମମ ଓଦାଅ ନିତ୍ୟ, ଲୋତକ ଅଞ୍ଜନେ,
ନେବ କି ଧରି କେବେ ହେ ତବ ଦେଉଳ ଅଙ୍ଗନେ ?

## ସମର-ବିମୁଖ

### (୧)

ବହିବା ଦୁର୍ବଳ ସ୍କନ୍ଧେ ଦୁର୍ବହର ଚାପ,
ଜୀବନେ ତାହାହିଁ ଗୁରୁତମ ଅଭିଶାପ ।
କର୍କଶ କଠୋର ବାଣୀ ଯଦି ଦରକାର,
ପାରିବ କି ଟାଣି ତାହା ମୃଦୁ ବୀଣା-ତାର ?

ମାଟିର ପ୍ରଦୀପ ସେ ତ ଜୀବ କୁଟୀରର,
କିପରି ସେ ଆଲୋକିବ ରାଜ-ଦରବାର ?
କୁଣ୍ଠିତ ଜୀବନ ଯୁଦ୍ଧେ ଜୟଟିକା ପାଇଁ
ଶ୍ରଦ୍ଧା, ଶକ୍ତି କିଛି ହେଲେ ମୋର ଥିଲା ନାହିଁ;
କେ ଦେଲା କିପାଇଁ ଠେଲି ଏ ମହା କନ୍ଦଳେ,
ତେଣୁ ଚୂର୍ଣ୍ଣ, ବିକଳ ମୁଁ ବାହାରେ ଅନ୍ତରେ ।
ସର୍ବାଙ୍ଗେ ମୋ ଜୀବନର କ୍ରୂର କଶାଘାତ,
କ୍ଷତ-ରକ୍ତ ମୋର ଧୁଏ, ମୋ ଲୋତକପାତ ।

ହୋଇ ଭଗ୍ନ, ଭ୍ରଷ୍ଟ, କ୍ଳାନ୍ତ, ଜୀବନ-ସମରେ
ଏହି ଭାଗ୍ୟ ଚାହେ ମୁହିଁ ଆଜି ମରମରେ –
ଦୂରେ ନରପାଦ ଯହିଁ ନାହିଁ ପାରେ ପଶି,
କେଉଁ ଦୂର ବାରିଧିର ବେଳାବନେ ବସି
ଚାହିଁ ଚାହିଁ ଆକାଶର ନୀଳ ଛତ୍ରତଳେ,
ମେଘମାଳା ଭାସିବାର ସମୀର କୌଶଳେ,
ବନସ୍ପତି ଛାୟାତଳେ, ଘାସର ଆସନେ
ବସି ମୁଁ ଭୁଲିବି ଦୁଃଖ ଉଦାସୀନ ମନେ !

ଅଥବା ବେଳାରେ ଶିଳେ ଶୋଇ ବକ୍ରକରି
ଭୁଲିଯିବି ଜଗତର ଦିବା-ବିଭାବରୀ;
ବିଚାରିବି ନୁହେଁ ମୁହିଁ ଜୀବ ସଂସାରର,
ମୁଁ ଏକ ମଳୟଧାରା, ଧ୍ୱନି କୋକିଳର ।

(୨)

ଜନତା ନୟନ ଆଗେ ଆପଣା ପ୍ରତିମା
କେଉଁମତେ ହେଲେ ଥୋଇ, ଆପଣା ମହିମା
ଦେଖାଇବା ଲାଗି ଯେହୁ ଧରନ୍ତି ଜୀବନ
ମୁଁ ତ ସେ ଗୋଷ୍ଠୀର ଅଙ୍ଗ ନୁହେଁ କଦାଚନ ।
ଜଗତର ଅଜାଣତେ ଆପଣା ସ୍ୱପନେ
କୁଟୀର ତୋଳିବା ଆଶା ପୋଷିଥିଲି ମନେ ।

ଜନତା ନୟନ ଆଗେ ଉଭା ହେବା ଆସି
ଦଶ ଜଣ ସହ ଯୁଝି ଗୌରବ ମନାସି,
ଅୟୁତର ସ୍ତୁତି, ଜନତାର କରତାଳି,
ଏସବୁ ଲାଗି ମୁଁ କେବେ ନ ଥିଲି ତ ଭାଳି !

ରୁଚି ପ୍ରତିକୂଳେ ଚଳାଇବା ଏ ଜୀବନ,
ଜୀବନେ ଅଟେ ସେ କ୍ରୂରତମ ନିର୍ଯାତନ ।
ଭାଙ୍ଗିଦେଇ ମୋ-ସ୍ୱପନ-ନିଭୃତ-କୁଟୀର,
ବିଧାତା ଜୀବନ କିପାଁ କଲେ ମୋ ଅସ୍ଥିର ?

ଆଶାହୀନ, ଆଶ୍ରାହୀନ ଆଜି ପଥ ପରେ,
ଛିଡ଼ାହୋଇ ମୁହିଁ ଜନନେତ୍ରେ ଭୟକରେ !
ଯାଏଁ ଚାଲି ସେହି ସ୍ଥାନେ ପାଇବି ନିସ୍ତାର,
ନଥିବ ଯେଉଁଠି ଜୀବନର ଅତ୍ୟାଚାର ।

(୩)

ବୋଲିବେ କେ ଛାଡ଼ି ମାନବର ସଙ୍ଗ-ସୁଖ,
ଯିବା କେଉଁ ବେଳାଭୂମେ ହୋଇଣ ବିମୁଖ
ସଂସାରର କୋଳାହଳେ, ଜନତା-ଜଞ୍ଜାଳେ
ଘୋର ଦୁର୍ବଳତା ଏ ଯେ କବି, ତୁମ୍ଭଠାରେ ।

ମାନବର ଦୁଃଖେ ସୁଖେ ମିଶାଇ ଜୀବନ,
ଜୀବନ-ସମରେ କରି ସ୍ୱେଦ ବିସର୍ଜନ,
ଦଳିତ-ଦୁର୍ବଳ ବ୍ୟଥା ଅନୁଭବ ପ୍ରାଣେ,
ସହି ଦମ୍ଭ-ମୂର୍ଖତାର କ୍ରୂର ଅପମାନେ,
ଦେଖାଅ ମୁକ୍ତିର ପଥ, ପନ୍ଥା ଉଦ୍ଧାରର,
ପଛେ ଯେ ଆସିବେ ବାଟ କାଢ଼ ତାହାଙ୍କର ।

(୪)

ଏକା ଏକା ଆଜି ଏ ଯେ କାନନ-ପ୍ରୟାଣ,
ଦେଖାଏ କି ତାହା କବି ଦୁର୍ବଳ ପରାଣ ?
ଧରଣୀରେ ଚିରନ୍ତନ ଲାଗିଛି ସମର,
ଯାହା ଲାଗି, ତାହା ଅତି ଅକିଞ୍ଚିତକର ।
କାଞ୍ଚନର ବଞ୍ଚନାରେ ମୋହିତ ଜଗତ,
ତାହାରି ତୁଳାରେ କିଏ ଲଘୁ, କେ ମହତ ।
ମୋର କରପୁଟେ ତାହା ନାହିଁ ଥିଲା ଯେଣୁ,
ଚୁମ୍ବିବାକୁ ହେଲା ମତେ ମୂର୍ଖପଦ-ରେଣୁ ।
କାଞ୍ଚନ ସମରେ ପଶି ଜୀବନ ଲାଞ୍ଛିତ,
କରିବାକୁ ନାହିଁ ମୋର ମାନସ କିଞ୍ଚିତ ।
ଅଥବା ପ୍ରାଧାନ୍ୟ-ଯଶ, ଯାହା କାଳ-ନୀରେ
ଉଠି, ଫାଟି ଚିରଦିନ ନିଭେ ଅବନୀରେ,
ତା ଲାଗି ପାଗଳ ପରି କ୍ଷୟିବା ଜୀବନ
ଅନୁମୋଦନ କି କରେ କେବେ କବି ମନ ?
ତେଣୁ ଆଜି ସେ ଆଡୁ ମୋ ବଦନ ଫେରାଇ,
ସୁଦୂର ସାଗର ତୀର ବେଳାବନେ କାହିଁ,
ଗମନେ ବାସନା ମମ, ରୁଦ୍ଧ ବ୍ୟଥା ସହ,
ଜୀବନ-ଗଞ୍ଜଣା ଯେଣୁ ହେଲାଣି ଦୁର୍ବହ ।
କୋଟି କୋଟି ନରନାରୀ ମତ୍ତ ଯାହା ଲାଗି,
କବିଚିତ୍ତ ହୋଇ ଯଦି ତହିଁରେ ବିରାଗୀ,
ପଛ କରି ତାକୁ, ଚଳେ ଦରିଦ୍ର କୁଟୀରେ,
ଭୀରୁ ବୋଲି ନିନ୍ଦା କିଏ କରିବ କବିରେ ?
ଜନତାରେ ରହି ଅବା ବଜାନ୍ତି ମୋ ବେଣୁ,
ବ୍ୟଥାର ଅଶ୍ରୁରେ ଓଦା କରି ପଥରେଣୁ,

ଜନତା ହସିବ ମତେ ଅଙ୍ଗୁଳି ଦେଖାଇ,
ନାରୀ ପରି ଏ ଲୋକଟା କାନ୍ଦୁଛି କିପାଇଁ ?
ବେଳେ ହେଲେ ଭାବନ୍ତା କି ଏ ମୂର୍ଖ ଜନତା,
କାନ୍ଦିବାକୁ ଜଗତରେ ଅଛି ଏତେ ବ୍ୟଥା !
ଅଥବା ବୀଣାରେ ଦେବି ରୁଦ୍ର ଅଭିଶାପ
ସମାଜ ସଂହାରକାରୀ ବିପ୍ଳବ-ଆଳାପ,
କହିବି ବିନାଶ କର ଧନର ସଂସାର,
ଦରିଦ୍ର ସଂସାର ଲାଗି କାଟ ନୂଆ ଗାର ।
କିନ୍ତୁ ଫଳ ସେଇ କଥା – ଦଳେ ଅତ୍ୟାଚାରୀ
ତଡ଼ି, ଆଉ ଦଳେ ମାତ୍ର ଆଣିବା ହକାରି ।
ଦଳେ ଲୋକ ସବୁବେଳେ ଥିବେ ଜଗତରେ,
ଉଠିବେ ଯେ ମାଡ଼ି ଦଳି ଆନକୁ ଉପରେ;
ତାଙ୍କ ପଦ ତଳେ ଥିବେ ମୋପରି ଅୟୁତ,
ମୁଣ୍ଡପରେ ଉଡୁଥିବ ପତାକା ବହୁତ –
ପ୍ରେମ-ପ୍ରଲିଟେରିୟାଟ୍‌-ସାମ୍ୟ-ଶ୍ରମିକର –
ଅସଲେ ସେ ମେଣ୍ଟ ଦଳେ ଡକାଇତଙ୍କର !
ତେଣୁ ଆଜି ମୋ ବାସନା, ଯାଇ ଦୂର ବନେ,
ତୃଣ-ଶେଯେ ବସି ନିଜ ସହ ନିକାଞ୍ଚନେ,
ରଚିବି ଗାଇବି ଗୀତ ଇଚ୍ଛା ଅନୁସରି;
ବଚନ ରଚିବି ତପ୍ତ ଲୋତକରେ ଭରି ।
ଥିବ ଯଦି ସେ ଗୀତରେ ଦଗ୍ଧ ହାହାକାର,
ମୋ-ପ୍ରାଣ-ବ୍ୟର୍ଥତାମୟ ତିକ୍ତ ଅଶ୍ରୁଧାର,
ମୋ ପରି ପରାସ୍ତ ଯେତେ ଜୀବନ-ସଂଗ୍ରାମେ,
ବାଜିପାରେ ମୋ ସଙ୍ଗୀତ କାଳେ ତାଙ୍କ ପ୍ରାଣେ ।
ହେଉ ତା ଏକହିଁ ସିଦ୍ଧି, ଏ ବ୍ୟର୍ଥ ଜୀବନେ,
ଭଗ୍ନ ବୃକ୍ଷ ଲାଗୁ ହେଲେ କାହାର ଇନ୍ଧନେ ।

## ଆତତାୟୀ

ଅର୍ଦ୍ଧରାତ୍ରି –
ଅହିଫେନ ଆରମ୍ଭିଛି ମୃତ୍ୟୁକ୍ରିୟା ତାର,
କ୍ରମେ ଜଡ଼ ଦେହେ ମୋର, ହୋଇଆସେ ଶୋଣିତର ଧାର ।

ଆଉ ଡେରି ଶୁଭ ନୁହେଁ, ଶେଷ କରେ ମୋ ଦୁଃଖ ଜୀବନ,
ଜୀବନେ ଯେ ପ୍ରିୟ ମମ, ଦେବି ତାଙ୍କୁ ନିଷ୍ଠୁର ମରଣ ।

ଶୋଇଛନ୍ତି ମାତା ପୁତ୍ର ! – ଧୀରେ ଜଳେ କିରାସିନୀ ଦୀପ,
ଅଧା ଅଧା ମୁଖ ତାଙ୍କ, ଦେଖାଯାଏ ଦୁଆର ସମୀପ –
ଦୁଆର ଦେଇଛି କିଳି, ବନ୍ଦ ସବୁ ଭିତର ବାହାର,
କେହି ଶୁଣି ନ ପାରିବ, କଲେ କେହି ଭିତରୁ ଚିତ୍କାର ।

ଦୁହିଙ୍କୁ ଦେଇଛି ନିଶା ପାନୀୟରେ, ଶାଠ୍ୟେ କହି ପଣା,
କ୍ଷୁଧା-ଅବସନ୍ନ ଦେହେ ଲାଗିଅଛି ନିଦ୍ରାର ପ୍ରେରଣା ।
ତୀକ୍ଷ୍ଣ କ୍ଷୁର ହାତେ ମୋର–ଆଶା କରେ ଏକ ଏକ ଚୋଟେ
ଶେଷ ମୁଁ କରିବି ତାଙ୍କୁ, ଦୁଃଖ ଶେଷ ହୋଇବ ମିନିଟେ ।

କଅଣ କହିବେ ଲୋକେ ? କହନ୍ତୁ ନା କହିବେ ଯା ଆସେ,
ମୁଁ ଜାଣେ ମୁଁ ଆତତାୟୀ, ଏମାନଙ୍କ କଲ୍ୟାଣ ସକାଶେ ।
ଏଇ ଯେ ଶୋଇଛି ନାରୀ – ରୂପସୀ ସେ ଅଳପବୟସୀ,
ଦାରିଦ୍ର୍ୟ କରିଛି ତାକୁ ଦୀନା, ରୁଗ୍ଣା, ରୁକ୍ଷା, ବର୍ଷୀୟସୀ ।

ଭଗବାନ୍ କହୁ ଆସି ତାକୁ କେତେ କରିଛି ପ୍ରଣୟ,
ପ୍ରଣୟେ ପୋଡ଼ିବା ଦୁହେଁ ଦେଖିଥିବେ ସେ କରୁଣାମୟ ।
ରଖିବାକୁ ତାହାକୁ ମୁଁ ପ୍ରାଣୀ-ଯୋଗ୍ୟ ବଞ୍ଚିବା ସୁଖରେ
ଗୋଟିଏ କୁଟୀର ଦେଇ, ରଖି ତା'ରେ ଅଭାବ ଉର୍ଦ୍ଧ୍ୱରେ;
ଦୁର୍ଭାଗ୍ୟ ସଙ୍ଗତେ ମୁହିଁ ଲଢ଼ି ଲଢ଼ି ହୋଇଲି ଜଖମ
ତାକୁଇ ଖାଇଲା ବେଶି, ଯେତେ ମୋର ବ୍ୟର୍ଥତା-ସରମ ।

ଧାଇଁବାର ବାରଦ୍ୱାରେ, ମାଗିବାର ଥରା ହାତ ପାତି
ଫେରିବାର ମୁଣ୍ଡେ ବୋହି, ବ୍ୟର୍ଥତାର ଲାଞ୍ଛନା ନିହାତି;
ପ୍ରତ୍ୟହ ବଞ୍ଚିବା 'କାଲି-କି-ହେବ'ର ଭୟ ସଙ୍ଗେ ଲଢ଼ି
ଭାବି ଭାବି ମୋ ଜୀବନ ତା ଆଗରେ ଯାଇଅଛି ସଢ଼ି ।

ସକଳ ଆଶାର ଦ୍ୱାରେ ହାତ ମାରି ଫେରିଛି ନିରାଶେ,
ଆଶାର କୁହୁକୁ ତାକୁ ମୁକ୍ତି ଦେବି ଆଜି ଅବଶେଷେ ।
ତା ପାଶେ ଶୋଇଛି ପୁତ୍ର ! – ଗର୍ବ ଏହି ସତୀ ଜନନୀର
ମୋର ପ୍ରତିବିମ୍ବ ପରି ଯେଉଁ ଦିଶେ ତା କ୍ଷୁଦ୍ର ଶରୀର ।
କର୍ମକ୍ଳାନ୍ତ ଲାଞ୍ଛିତ ମୁଁ ଫେରିଆସେ ଯେବେ ଗୃହଦ୍ୱାରେ
ଛିଡ଼ା ଥାଏ ସ୍ନେହୀ ଶିଶୁ ମୋହଠାରୁ ଆଶ୍ଳେଷ ଆଶାରେ ।

ଯେତେ ଯେତେ ଆସେ ପାଶେ, ଦେଇ ଦେଇ ଆଶ୍ଳେଷ ଚୁମ୍ବନ
ପ୍ରାଣ ମୋର ଶାନ୍ତ ନୁହେଁ ! କର୍ଣ୍ଣେ ତା'ର ଦରୋଟି ବଚନ
ଛୋଟ ଛୋଟ ମୃଦୁ ପ୍ରଶ୍ନ, ଅକାରଣ ହାସ୍ୟ ଅଶ୍ରୁଜଳ,
ଥିଲା ଆମ ଦୁଃଖୀ ଗୃହେ ଏକମାତ୍ର ଆନନ୍ଦ-ସମ୍ବଳ ।

ସେହି ମୋ ରକତୁଁ ଜାତ ସନ୍ତାନରେ କରିବି ବିନାଶ;
ଭଗବାନ୍ ସମ୍ମୁଖରେ ଠିଆହୋଇ କହିବି ନିର୍ଦ୍ଦୋଷ ।
ସବୁ ଶେଷ ହେବା ଆଗୁଁ ଥରେ ପୁଚ୍ଛା କରେ ଭଗବାନ୍
ମିଥ୍ୟା କି ହେ ବେଦେ ଶାସ୍ତ୍ରେ ହୋଇଛି ଯା' ତବ ଗୁଣଗାନ ?
ପଢ଼ିଛି ଭକତେ ତୋତେ ବର୍ଣ୍ଣିବାର କରୁଣା-ବାରିଧି,
କରୁଣା-କଣାହିଁ ହେଲେ ନପାଇଛି ମୁହିଁ ଏ ଅବଧି ।
ପେଟ ଲାଗି ଯାହାଙ୍କର ନାହିଁ ଚିନ୍ତା ସେ ତୁମ ସ୍ତାବକ,
ଦେଉଳ ତୋଳାନ୍ତି ସେହି ଯେତେ ଧନୀ, ଅତ୍ୟାଚାରୀ, ଠକ ।
ମତେ ତ ଦେଇନା କିଛି, ଡାକିଲେହେଁ ଯୋଡ଼ହସ୍ତ ହୋଇ,
ସବୁ ଚେଷ୍ଟା ଭାଙ୍ଗି ମୋର, କରିଅଛ ନିତ୍ୟ ଧୂଳିଶାୟୀ ।
କୀଟେ ଖାଏ ଭେକ, ଭେକେ ଗିଳେ ସର୍ପ, ମାରେ ତା ମୟୂର,
ମୟୂରେ ମନୁଷ୍ୟ ଖାଏ – ପନ୍ଥା ଏହି ତୋ ପୁଣ୍ୟ ସୃଷ୍ଟିର !

ମନୁଷ୍ୟ-ସମାଜେ ଚଳେ ସେହି ନୀତି, – ଜଣେ ଆର ଜଣେ
ଧୂଳିଶାୟୀ କରି ତା'ର ନେଲେ ସବୁ, ପଉରୁଷ ମଣେ ।
କାହାରି ଅନିଷ୍ଟ ମନେ ଚିନ୍ତା ମଧ କରିନି ଜୀବନେ,
ତଥାପି ଗୋଡ଼ାନ୍ତି ଶ୍ୱାନେ ପଛେ ମୋର, କହ କି କାରଣେ !

ଦୟା କରୁଣାରେ ଭରା ବିଧାତାର ଏ ଜଗତ ପରା ?
ଭିକ୍ଷା ତ ମିଳଇ ନାହିଁ, ଭଙ୍ଗା ହୁଏ ମୋ ଅନ୍ନ ଖପରା !
କା ଆଗେ କହିବି ଦୁଃଖ, ଅନ୍ୟାୟେ ତ ଗଢ଼ା ଏ ସଂସାର ।
କିଏ ସେ ପୋଛିବ ଅଶ୍ରୁ ? ଅଶ୍ରୁରେ ତ ଆନନ୍ଦ ସ୍ରଷ୍ଟାର !

ଉପାୟ ନଦେଖି ଆଉ, କରିବାକୁ ଦୁଃଖ ଅବସାନ,
ଭାବି ଭାବି ତୀକ୍ଷ୍ଣ ଖୁରେ ଦେଇଅଛି ଆଜି ମୁଁ ଶାଆଣ ।
କହିବେ କେ ଧର୍ମବକ, ଦୁଃଖ-ଭୋଗ ପାପ-ଫଳ ସିନା,
ବେଶ୍ କଥା – ପାପ ମୋର କେହିହେଲେ ବ୍ୟାଖ୍ୟା କରୁ କିନା !

ଉନ୍ମୁକ୍ତ ଆକାଶ ତଳେ ନିଶୀଥରେ ହୋଇ ଯୋଡ଼ହସ୍ତ,
ଡାକିଛି ମୁଁ ବାରମ୍ବାର, "ଭଗବାନ୍, ବୁଝାଇ ସମସ୍ତ,

କହ କିନା କିବା ପାପେ ଜୀବନକୁ କଲ ଖଣ୍ଡ ଖଣ୍ଡ,
ପ୍ରତିଦିନ କଲ ମୋର ମଧୁସ୍ୱପ୍ନ, ସାଧୁ-ଶ୍ରମ ପଣ୍ଡ !''

ଉତ୍ତର ପାଇଲି କାହିଁ ? ଗଣ୍ଡେ ଅଶ୍ରୁ ବୋହିଯାଏ ଶୁଖି
ଅନାଦୃତ ଶିଶୁ ପରି ଧରେ ଶଯ୍ୟା ମୁଁ ଆଜନ୍ମଦୁଃଖୀ ।
ଭାଗ୍ୟଧର ଯେଉଁସବୁ, ତାଙ୍କ କଥା କରି ଆଲୋଚନା,
ପାଇନି ବି ମୋ ଜୀବନଁ ତାଙ୍କଠାରେ ବେଶୀ ପୁଣ୍ୟକଣା ।

ଥାଉ ସବୁ — ହସ୍ତ ମୋର, ଶିଥିଳିତ ହୋଇଆସିଲାଣି,
ବିଗିଡ଼ିବ ସବୁ ଯଦି, ନିଦ୍ରାଭଙ୍ଗ ହୁଏ କା'ର ପୁଣି ।
ଜୀବନର ମାୟା ବଡ଼ — ହୁଏତ ଏ କରିବେ ଚିତ୍କାର,
ଦୁଃଖେ ଲାଞ୍ଛନାରେ ମଧ ଜିଇବାକୁ କରିବେ ବିଚାର ।

ଅନିଚ୍ଛୁକ ରୋଗୀ ମୁଖେ ବଳେ ଦେବା ପରି ଅଉଷଧ,
ଏ ଦୁହିଙ୍କୁ ଦେବି ଆଜି ନିର୍ବିକାରେ ମୃତ୍ୟୁ ଆଶୀର୍ବାଦ ।
ବଞ୍ଚିବାର ଲଜ୍ଜା-ଦୁଃଖୁ, ଆଶ୍ରା ଦିଏ ଜୀବେ ଯେ ମରଣ,
ସିଏ ପୁଣି ପାପ ? — ସେ ତ ଦୁଃଖୀଜନ-ପରମ-ଶରଣ !
ଆସ ପ୍ରିୟେ, ଆସ ବତ୍ସ — ଅତି ସ୍ନେହୁ ବଧିବି ଦୁହିଁରେ,
ଦଣ୍ଡକେ ଯେ ପାରିହେବା ଦୁଃଖମୟ ଜୀବନ-ନଦୀରେ ।
ଜୀବନେ ପାଇଲେ ଯାହା ଦୀନତାର ବିଷାକ୍ତ ତିକ୍ତତା,
ଜୀବନର ଆରପଟେ ଦେଖାଯିବ କିବା ଅଭିଜ୍ଞତା !
ଏଇ ଦେଲି ଖୁର ଧାର, ଶିଶୁ ବୁକେ,... ବେଶ୍ ବେଶ୍ ବେଶ୍
ସାବାସ୍ ଶାଆଣ ! କଲା ଜଘନ୍ୟତା ଦଣ୍ଡକରେ ଶେଷ ।
ସୁନ୍ଦର ତା ଆଖି ଦୁଇ ଫୁଟିଆସେ — ନାଚେ ଛିନ୍ନ ଶିର;
ନ ଚାହିଁବି ସେ ଆଡ଼େ ମୁଁ ... ଶେଷ କରେଁ ଦୁଃଖ ଜନନୀର !
ଚୁମ୍ବିଛି ଏ ସ୍ୱର୍ଣ୍ଣ ଗଳା ଆଗ ପଛ କେତେ ଲକ୍ଷ ବାର,
ଏ ପାଖ ସେ ପାଖ ଗଣ୍ଡ, ନିମ୍ନ-ଓଷ୍ଠ, ସୁକୋମଳଧାର ।
ଅନାବୃତ ବକ୍ଷ ଏହି — ନିତ୍ୟ ଅଭିସ୍ନାତ ମୋ' ଚୁମ୍ବନେ,
ରୋଗେ ଭୋକେ କ୍ଷୀଣ ଆଜି ଢଳିପଡ଼େ କଙ୍କାଳର କୋଣେ ।
ଖାଲି ସ୍ନେହେ କେତେ ଆଉ ବଞ୍ଚାଇବି ହତଭାଗିନୀରେ,
ସାମାନ୍ୟ କୁଟୀର ଖଣ୍ଡେ ନାହିଁ ତାର ବିରାଟ ମହୀରେ ।
ଭବିଷ୍ୟେ ବା ଆଶା କାହିଁ ? — ଥାଉ, ଥାଉ, ବେଳେ ଦେଇ ଖୁର
ସକଳ ଦୀନତା ତାର କରିଦିଏ କ୍ଷଣକରେ ଦୂର !

ସନ୍ତାନ-ଶୋଣିତ-ରକ୍ତ ଖୁର ଏଇ ଜନନୀର ଗଳେ
ବସାଇଲି ... ଯାଇଛି ତ ! ବେଶ୍ ଯାଏ ! – ଶେଷ୍ ଏକାଥରେ ।
ଯାଅ ଖୁର ...
ଦେଲି ଫିଙ୍ଗି ... ଦୁହିଁଙ୍କର ଶବର ମଝିରେ,
ଶୋଇ ଆଲିଙ୍ଗନେ ଧରି ଠିଆହେବି ମରଣର ତୀରେ ।

## ଦ୍ୱନ୍ଦ୍ୱ

ଜ୍ଞାନ ଯା କହେ କରନା କରନା,
ମନର ତହିଁ ବିଶେଷ ଅନୁରାଗ
ଜବାବ ଦିଏ "ଇଚ୍ଛା ହେଲା କିପାଁ
ବୁଝାଇ ମତେ ଉତ୍ତର ଦିଅ ଆଗ ।"
କହଇ ଜ୍ଞାନ "ପାପ ରେ ଭାଇ ତାହା"
କହଇ ମନ "ଖାତିର୍ ନାହିଁ କରେ,
ବିଧାତାକୁରେ ପଚାର ଯାଇ ଆଗେ
ପାପକୁ କିପାଁ ମିଷ୍ଟ-ମଧୁର କଲେ ।"
ବୁଝାଏ ଜ୍ଞାନ "ନିନ୍ଦା ଦେବେ ଲୋକେ"
କହଇ ମନ "କି ସାଧୁ ଲୋକମାନେ !"
"ନରକେ ଯିବୁ", କହିଲେ ମନ କହେ
"ଦେଖିବି ମୁହିଁ ସକଳେ ସେହି ଥାନେ ।"
ମନ, ଜ୍ଞାନର ଏପରି ଟଣାଟଣି
ନିରନ୍ତର ଚାଲିଛି କ୍ଷଣେ କ୍ଷଣେ,
କହିଲେ ଜ୍ଞାନ "ଛି ଛି ଛି" କାହିଁପାଇଁ
"ଚମତ୍କାର !" କହଇ ଅନ୍ୟ ଜଣେ ?
ଦୁଇର ଦ୍ୱନ୍ଦେ ମୁଁ ହୁଏଁ ଖାଲି ଦଳି,
ଭୁବନ ବନେ ଧାଉଁଛି ଲକ୍ଷ୍ୟହୀନ,
ଶ୍ରେୟଃ ଓ ପ୍ରେୟଃର ତଉଲ ହେଉଁ ହେଉଁ,
ଅସ୍ତପ୍ରାୟ କ୍ଷୁଦ୍ର ଏ ଜୀବନ ।
ବନ୍ୟାଜଳେ ଶୁଖିଲା ପତ୍ର ପରି
ବିଧାତା, ମତେ କଲ ଯେ ଶୂନ୍ୟ-ବଳ,

ବିଚାର ବେଳେ ସାକ୍ଷୀ ହେବେ ହେ ମୋର
ମୋ ମନ, ଜ୍ଞାନ ସମ୍ମୁଖେ ତୁମ୍ଭର ।
ପାତକ ନାହିଁ, ପୁଣ୍ୟ ନାହିଁ ମମ
ମୁଁ ଖାଲି ଏକ ଅନୁଭୂତିର ମାଳା,
ହସ ଓ ଲୁହର ପାପରେ ଦଣ୍ଡିବାକୁ
ରଖିଛ କିହେ ବେତ୍ର, ଆଉ କାରା ?

## ଜୀବଯଜ୍ଞ

(୧)

ଲୋଡ଼ା କଟ୍‌ଲେଟ୍,
ଲୋଡ଼ା କୁର୍ମା,
ଚାଇ ମଟନ, ମିନ୍‌ସ୍-ଚୂର୍ଣ୍ଣ (୧)
ଚାଇ ଇଲିଶିର ଝୋଳ ଚିକନ୍‌ର ଚପ୍ (୨)
ଚାଇ ଚିଙ୍ଗୁଡ଼ି ହେମବର୍ଣ୍ଣା ।
ଆଜି ବନ୍ଧୁ ଆସିବେ ଛେଳି ହାଣ,
ଆଜି ପାଗ ଭଲ, ରାମ-ପକ୍ଷୀ ଆଣ,
ଆନର ରକ୍ତ ଉଦରେ ନ ଗଲେ
ଉତ୍ସବ ଆମ ନୁହେଁ ଟାଣ ।
ତେଣୁ ପ୍ରତ୍ୟହ କୋଟି କୋଟି ଜୀବ
ମଥା କଟେ ବୃଥା ଚିତ୍କାରେ,
ଛାଗଳ, ଫାଉଲ୍, ଗାଈ, ଛଡ଼ା, ମେଷ
କେ କରିବ ତା'ର ସଂଖ୍ୟାରେ ?
ସବୁ ହୁଏ ନର ଜଠରରେ ଲୀନ,
ବିଜ୍ଞାନ କହେ ଲୋଡ଼ା ଯେ ପ୍ରୋଟୀନ
କୋଟି ଜୀବନର ଯନ୍ତ୍ରଣା ଲୁଚେ
ଭୋଜନ-ତୁଷ୍ଟ ଫୂତ୍କାରେ ।

---

(୧) ମିନ୍‌ସ୍ – ମାଂସକୁ ଖୁବ୍ ଚୂନାକରି କାଟିବାକୁ ଇଂରାଜୀରେ 'ମିନ୍‌ସ୍' କୁହାଯାଏ ।
(୨) ଚିକନ୍ – କୁକୁଡ଼ାଛୁଆ ।

(୨)

''କିବା ମୋଲାଏମ୍ ଏ ମାଂସ ସତେ !
କେଉଁଠୁ ଆଣିଲେ ଆପଣେ ?''
''ମାତ୍ର ତିନୋଟି ମାସର ଛାଗଳ ପୋଷିଥିଲି ନିଜ ଯତନେ,
ଆପଣଙ୍କ ଲାଗି ଖୁସିରେ କାଟିଲି !
କର୍କଟ ଯାହା ଖାଇଲେ,
ତାକୁ ରାନ୍ଧିବାର ପ୍ରଶେଷ୍ ଜାଣଁତି ?
ଏବେ ସିନା ଜଣେ କହିଲେ !
ଟକ୍‌ଟକ୍ ଫୁଟା ପାଣିରେ
ଛାଡ଼ିବେ ଜିଅଁତା ପ୍ରାଣୀରେ
ତା'ହେଲେ ରକ୍ତ ଟୋପାଏ ନଷ୍ଟ
ନୋହିବ । ପାଇବେ ସ୍ୱାଦ ତା'
ଜିଅଁତା ନିକାଲି ଦେଇ ବା ପାରଁତି
ଓଟାରି ତାହାର ଖୋଳଟା !''

(୩)

ଜଳେ, ତଳେ, ନଭେ, ବିଲେ, ବୁଦା, ବଣେ
କୋଟି କୋଟି ପ୍ରାଣୀ କରୁଣ ମରଣେ
ତୋଷ କରେ ନରକ୍ଷୁଧା,
ଜିଇରହିବାକୁ କେ ନ ପାଏ ଭଲ ?
କେ ଚାହେଁ ମରିବ ହୋଇ କଳବଲ,
ଗୁଳି, ଛୁରା ଖାଇ ହଠାତ୍ କେ ଚାହେଁ
ଛାଡ଼ିବାକୁ ଏ ବସୁଧା ?
ଏଇ ସେ ଯେ ନାରୀ
ଚକ୍ଷୁଁ ବାହାରିପଡ଼େ ବାରିଧାରା ଯାହାର,
ନିଜ ସନ୍ତାନ ବେଳେ ନ ଖାଇଲେ,
ଖାଇଲେ ବା କା'ର ପ୍ରହାର !
ସେହି ସେ ରମଣୀ ଜିଅଁତା ମତ୍ସ୍ୟ
କାଟେ କର୍‌କର୍, ନାହିଁ ତା ଲକ୍ଷ୍ୟ, ...
କର୍ତ୍ତିତ ମଥା କଷଣେ ଡେଉଁଛି,
ଶୋଣିତ ହେଉଛି ବାହାର,

ରାଗି ପୁଣି କଟା-ଶ୍ରମରେ
''ଆଉରି ଜିଇଛି ନ ମରେ ...''
କହି, ଛେଚି କରେ ମଥାରୁ ଜୀବନ ବାହାର !

(୪)

ଏଇ ଆମେ ନର !
କରୁ ଦାବି ବହୁ କରୁଣା ।
'ନରତ୍ୱ' ନାମେ କବି ଗାଏ ମନ-ଫୁରୁଣା,
'ପଶୁତ୍ୱେ' ନାକ ଛିଁଚାରି,
ମୈତ୍ରୀରେ ଚାହୁ ଗଢ଼ିବୁ ଧରା ଓ ରାଷ୍ଟ୍ର
କି ପାଇବେ ସେଥି ମୂକ ଜୀବଗ୍ରାମ ବିଚାରି ?
ଏକ ନିୟମରେ ଗଢ଼ା ଆମେ ସବୁ –
ସୂର୍ଯ୍ୟରୁ ପିପିଲିକା,
ଭୂମାର ବିଶ୍ୱ ପରିବାରେ ଛାଡ଼
ଭିନ୍ନତା ଅହମିକା;
ଯେ ଯାଏଁ ଆମର ବାରୁଦ, ଛୁରିକା
ଘାତିବ ମୟୂର, ମେଷେ,
ଅର୍ଥ-ବିହୀନ ଅଶ୍ରୁ ଆମର ପାତିତ ଦେବୋଦ୍ଦେଶ୍ୟେ !
ନିମ୍ନତମର ବ୍ୟଥା,
ବଥାଇବ ଦିନେ ଉଚ୍ଚତମର ସ୍ୱାର୍ଥ-ସର୍ବ ମଥା ।

## ସମାଧି

''ଏଇ, ଏଇ ସେ ଯେ କୋଠା, – ମସ୍‌ଜିଦ୍ ପଛେ,
ଅସ୍ପଷ୍ଟ ଯା ନାରିକେଳ ଗଛେ,
ସେ'ଟା ଜଜ୍ ଅମୁକଙ୍କ ବିସ୍ତୀର୍ଣ୍ଣ ବାଗାନ୍,
ମାଛଠାରୁ ଶାଗଯାଏଁ ସବୁ ଖଞ୍ଜା ତହିଁ,
ତାଙ୍କ ପରି କିଏ ଭାଗ୍ୟବାନ୍ ?''
''ପୁଣି ଏଇ, – ୟାଡ଼େ ଅନା;
ସେ ମୋଡ଼ର ଦି'ତାଲା ସେ ଘର, ଜାଫ୍ରାନ୍ ରଙ୍ଗର,

ତାଆ ପାଖ ଅମୁକଙ୍କ, – ବିଲାତ-ଫେରନ୍ତି,
ବେଙ୍କାଏ ଦରମା ତାଙ୍କ – କଲେଜରେ କି କାମ କରନ୍ତି;
ଆଗ ପଛେ ବହୁ ଜାଗା, – ବିକ୍ରିହୁଏ ଦୁଧ ଓ କଦଳୀ,
ବହୁ ଟଙ୍କା ପା'ନ୍ତି ପୁଣି
ଭଡ଼ା ଘର ଥୋଡ଼ା ଠିଆକରି ।''
''ଏଇ ଯେ; – ପାରିଛ ଦେଖି ?
ଖାଲି ସେହି ପଡ଼ିନି ଜାଗାଟି ?
ଜମା ହୁଏ ଇଟା, କାଠ, ମାଟି;
କିଣିଛନ୍ତି ଅମୁକ ସେ, ତୋଳାଇବେ ତିନିତାଲା କୋଠା,
ଦଶ ବର୍ଷ ତଳେ ତାଙ୍କ ନାହିଁ ଥିଲା ପଟି ଅବା ଲୋଟା,
ଆମ ସେଠି ପ୍ରତେ ଯିବେ କହିଲେ କେ କା'ରେ ?
ଏତେ ଟଙ୍କା ଆସେ ପୁଣି କିତାପ ଛପାରେ ?''
କଟକ-ଟାଉନ୍-ବସ୍ –
ଅତି ଭିଡ଼, – ଅତି ଘେଞ୍ଚାଘେଞ୍ଚ;
ଅଜାଣତେ, ଅନିଚ୍ଛାରେ ହେଉଛନ୍ତି ଯାତ୍ରୀ କେଞ୍ଚାକେଞ୍ଚ,
ଦେଉଛନ୍ତି ଗାଳି ପରସ୍ପରେ, –
ତେବେ ବି ଦଳକୁ ଦଳ, କଣ୍ଡକ୍ଟର ଯାତ୍ରୀ ଆଣି ଭରେ !
ଅଧିକାଂଶ ଦୋଳିତ ଏକତ୍ର;
ସ୍ଥିର ରଖିବାକୁ ପାଦ, ମାରୁଛନ୍ତି ହାତ ଯତ୍ରତତ୍ର ।
ସେହି ଭିଡ଼େ, ସେ କନ୍ଦଳେ, ବୀଭତ୍ସ ସେ ମାନବ ମିଳନେ,
ନିଶ୍ଚିନ୍ତରେ ବସି ଏକ କୋଣେ,
ମଫସଲୁଁ ଦୁଇ ସାଙ୍ଗ ଦେଖୁଛନ୍ତି କଟକ-ନଗର;
ସହରର ଆଡ଼ମ୍ବରେ କୁତ୍ସିତ ତା ଧୂଳି ଆବର୍ଜନା
ନାହିଁ ପଡ଼େ ନଜରେ ତାଙ୍କର ।
ଯିଏ ଆଗୁ ପରିଚିତ କଟକ ସାଥିରେ,
ଦେଖାଏ ସେ ନବ ଅତିଥିରେ;
କଟକ ସହରେ ତାଙ୍କୁ ଅମାଲୁମ୍ ନାହିଁ କେଉଁ ସ୍ଥାନ;
ବଡ଼ଲୋକେ ଜାଣିବା ହିଁ ହେଲା ତା'ର ଅହମିକା-ମାନ ।
ସେହି ସେ ଘେଞ୍ଚରେ ଚିପି ଆପଣାକୁ କଉଣସିମତେ
ବସିଥାଏଁ ମୁହିଁ ଏକପଟେ;

ଶୁଣୁଥାଏଁ ଏ ଦୁହିଁଙ୍କ ବାକ୍ୟାଳାପ ମୁଗଧ କୌତୂହଳେ,
ବର୍ଣ୍ଣିତ ହେବାର ଯେତେ ଗଣ୍ୟମାନ୍ୟ କଟକ-ନଗରେ –
ଧନ, ଧାନ୍ୟ, ଟଙ୍କା, କୋଠାଘର,
ପ୍ରାଚୀନ 'ସାହେବ' 'ବାବୁ' ନୂଆ 'ମାନ୍ୟବର'।

ବସ୍‌ରୁ ଓହ୍ଲାଇ ଶେଷେ ହେଲେ ଅନ୍ତର୍ହିତ
ଯେଝା ପଥେ ଯାତ୍ରୀ-ଦଳ। ମୂକ ବିଚଳିତ
ମୁହିଁ ଧୀରେ ଚାଲେଁ ଶେଷେ ବସ୍‌ରୁ ଓହ୍ଲାଇ
ମଫସଲି ବନ୍ଧୁଙ୍କର ମାପ-କାଠି ମନେ ମନେ ଧ୍ୟାୟି।
ଚିତ୍ତ ହୁଏ ତିକ୍ତ, ବିମନ୍ଥିତ,
କେଉଁ ମାନଦଣ୍ଡେ ସତେ ମୂଲ୍ୟ ମୋର ହେବ ପରିମିତ ?

ଶେଷେ ଶାନ୍ତ ସମାହିତ କରି କ୍ଷୁବ୍ଧ ଚିତ୍ତେ,
ଉଠାଇଲି ଏ ପ୍ରାର୍ଥନା ସ୍ରଷ୍ଟା-ପାଦ-ପୀଠେ,
"ହେ ନାଥ, ଭରିଛ ପ୍ରାଣ ନାନା ଲାଞ୍ଛନାରେ,
ଶୂନ୍ୟ ତାହା ଆଜିଯାଏ ଖାଲି ବଞ୍ଚନାରେ,
କେବେ କିନ୍ତୁ ନାହିଁ ଦିଅ ଅଯାଚିତ ନବ ଅପମାନ,
ମାପିତ ହେବାର ମୋର କ୍ଷୁଦ୍ର ଯାହା ନଗଣ୍ୟ ସମ୍ମାନ,
ମାନଦଣ୍ଡେ ଅର୍ଥ, ହାକିମିର,
ବଞ୍ଚେ, ମରେ ମାତ୍ର କବି – ଚକ୍ଷେ ଯା'ର ପର ପାଇଁ ନୀର।
ଛୋଟ ଏକ ସମାଧିଟି ଶ୍ୟାମଘାସ ପରେ
ଥାଇପାରେ ପଲ୍ଲୀ ବା ନଗରେ,
ଏକମାତ୍ର ଚିହ୍ନରୂପେ ଦୀନ ଏହି ପୃଥିବୀ-ବାସୀର,
ମୃତ୍ୟୁ-ରାଜ୍ୟେ ଯିବି ଯେବେ, ଛାଡ଼ି କୋଳ ମାଆ ଧରିତ୍ରୀର,
ବସନ୍ତର ପୁଷ୍ପୋତ୍ସବେ, ଶାରଦ ଜ୍ୟୋସ୍ନାରେ
ସ୍ମରି କେବେ ମୋ ଦେଶର ଯୁବକ ଯୁବତୀ,
ଆସି ସେ ସମାଧି ପରେ
ପୁଷ୍ପ ଢାଳି ପ୍ରୀତିଭରେ
କବିରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି,
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର,
ସେହି ମୋର ମାନଦଣ୍ଡ ଜୀବନ-ଯାତ୍ରାର।

# ତୀର୍ଥଯାତ୍ରା

ଦୂର ଗ୍ରାମେ ମଫସଲେ ନିରକ୍ଷରା ନାରୀ
'ମଣି' ତା'ର ନାମ, ବଡ଼ ସରଳା ବିଚାରୀ,
ସ୍ୱାମୀ ଛଡ଼ା ଆଉ କିଛି ଜାଣେ ନା ସଂସାର
ସ୍ୱାମୀର ସେବାରେ ଖାଲି ଦିନ ଯାଏ ତା'ର ।
ସ୍ୱାମୀ ପାଇଁ ନାନା ବ୍ରତ ନାନା ଉପବାସ
ନାନା ଦେବପୂଜା, ନାନା ଠାକୁର ମନାସ,
ମନ ଦେଇ ଧନ ଦେଇ ଡାକଇ ସକଳେ
'ହେ ଦିଅଁ, କେବଳ ତାଙ୍କୁ ରଖ ହେ କୁଶଳେ ।'

ସର୍ବ କୁଶଳରେ ମଧ୍ୟ ଯୁଗଳ ପ୍ରାଣୀରେ
ରଖିଥିଲେ ଦିଅଁ; ଖାଲି ଦରିଦ୍ର କୁଟୀରେ
ଶୁଭିଲାନି ଏଯାବତ ଦରୋଟି ଭାଷଣ
ବାଳଗୋପାଳର ମୁଖୁଁ, ଅମୃତ ସିଞ୍ଚନ
କରି ଦୁଇ ପ୍ରାଣୀ-ବକ୍ଷେ । ଏକ ଆନ ମୁଖ
କେତେ ଆଉ ଦେଖି ଦେଖି ପୁଲକିବ ବୁକ ?
ନୂତନ ବନ୍ଧନ ଲୋଡ଼ା ବାନ୍ଧିବାକୁ ଦୁହେଁ,
ସ୍ୱାମୀ ଆଉ ଅନାଉନି ବେଶି ତା'ର ମୁହେଁ –
ଏକଥା ମଣିର ବକ୍ଷେ ମାରିଯାଏ ଛୁରି,
ଅବରୁଦ୍ଧ ସନ୍ତାପେ ସେ ହୁଅଇ ସନ୍ତୁଳି ।

ସ୍ୱାମୀ କଥା ଛାଡ଼, ନିଜେ ମଣିର ହୃଦୟେ
ଜନନୀର ଆବିର୍ଭାବ ହୁଏ ଯେ ସମୟେ,
ସକଳ ଶରୀର ତା'ର, ସ୍ନାୟୁ ଶିରା ଧରି
ସୁନିବିଡ଼ ବେଦନାରେ ଉଠେ ଥରି ଥରି,
ଅବ୍ୟକ୍ତ ଚିତ୍କାରେ କିଏ ଡାକଇ ରକତେ
'ବୋଉ, ବୋଉ' 'କାଖା ଟିକେ' 'ଦୁଧ ଦେଏ ମତେ' ।
ସହି ନ ପାରିଣ ମଣି, ହାତକାମ ଛାଡ଼ି
ଶୋଇପଡ଼େ ଭୂମି ଶେଯେ, ନେତ୍ରୁ ଦୁଃଖ ଢାଳି ।
ନାରୀ ହୋଇ ମାଆ ସେ ଯେ ନ ହେବ କିପରି ?
ଗର୍ଭ ତା'ର ଶୂନ୍ୟ ଯିବ ! ସ୍ତନ୍ୟ ଯିବ ସରି

ଶିଶୁର କୋମଳ-ଲୋଳ-ଓଷ୍ଠ-ପାନ ବିନେ,
ପୁରୁଷ ଜନମ କିପାଁ ନ ହେଲା ଜୀବନେ ?

ମଣି-ସ୍ୱାମୀ ରଘୁନାଥ ଚଷା ତ ସହଜେ
ମଣିର ଏ ସୂକ୍ଷ୍ମ-ଦୁଃଖ ମନେ ନାହିଁ ଭଜେ ।
ସେ କେବଳ ଥରେ ଥରେ ଭାବେ 'ଯଦି ଆନେ
ପିଲାପିଲି କଲେ, ମୋର ନ ହେବ କେସନେ ?'
ତାହା ଛଡ଼ା ବେଳେବେଳେ ଭାବେ ମଧ୍ୟ ବସି
ଶ୍ରାଦ୍ଧଶ୍ରାଦ୍ଧ କଲାବେଳେ କେବେ ପ୍ରତିବେଶୀ,
ମଲାପରେ ତାକୁ ମଧ୍ୟ ପିଣ୍ଡ କିଏ ଦେବ –
ଲୋକମତେ ଆଣ୍ଟୁକୁରା ନରକେ ପଡ଼ିବ ।
ଏ ସକଳ ବୁଝି ଭାବି ରଘୁ ଥରେ ଥରେ
କୃଷକ ରୀତିରେ ରାଗ ଢାଳେ ମଣି ପରେ ।
ସରଳା ସେ ସତୀ ଜାଣି ନିଜ ଅପରାଧ,
ନିର୍ବିବାଦେ ସହିଯାଏ ସବୁ ପରିବାଦ ।

ବରଷ ବରଷ କରି ଦଶଟି ତ ଗଲା
କ୍ରମେ କ୍ରମେ ନିରାଶାରେ ବୁଡ଼ିଲା ସରଳା ।
କ୍ରମେ କ୍ରମେ ତୁଟିଯିବ ଦେହରୁ ଯୌବନ
ବୟସଗତେ କି ହେବ ସନ୍ତାନ ଜନମ ?
ନାନାମତେ ଉପଚାର ବ୍ରତ ଉପବାସ
କରି ମଧ୍ୟ ପୂରିଲାନି ମଣି ଅଭିଳାଷ ।
ଶେଷରେ ଅମୋଘ ପଥ କହିଲେ ସକଳେ,
"ତୀର୍ଥଯାତ୍ରା କର ମଣି, ଦେବତାର ବରେ
ହୋଇପାରେ ଯଦି 'କିଛି – ନ ହେବ କାହିଁକି ?
ଆଖି ଆଗେ ଦେଖିଲୁ ତ 'ପୁରରେ' ପାଇଛି
ପୁରିଆ-ମା ପୁରସ୍ତମେ ଦେଖି ଜଗନ୍ନାଥେ
କି ନ ଘଟେ, ଦୟା କଲେ ଦିଅଁଙ୍କର ହାତେ ?
କାର୍ତ୍ତିକ ପୂର୍ଣ୍ଣିମା ଦିନ ଯାଉଛନ୍ତି ପରା
କେହି କେହି, ଯାଆ ଲୋ ତୁ – ଯଦି ଚକାଡୋଳା
ଦୟା-ନେତ୍ର ପକାଇବେ, ଦୁଃଖ ଯିବ ଚାଲି,
କାନ୍ଦନା ଲୋ – କିପାଁ କାନ୍ଦୁ – କାନ୍ଦି କାନ୍ଦି ଖାଲି
ଶୁଖିଗଲୁଣୁ ତୁ ଅଧେ – କାନ୍ଦନା ଲୋ ଆଉ;
ଇଏ ଗୋଟେ ଦୁଃଖ କ'ଣ, 'ସିଏ' ତୋର ଥାଉ ?"

ସେ ଦିନ ନିଶୀଥେ ମଣି, ସ୍ୱାମୀପଦ ଦୁଇ
ସାଉଁଳି ସାଉଁଳି ସ୍ନେହେ ଦେହ ମୁଣ୍ଡ ଛୁଇଁ,
ଦୁଇ ଗଣ୍ଡୁ ଅଶ୍ରୁ ତେଜି, ତନ୍ଦ୍ରିଳ ସ୍ୱାମୀରେ
କହିଲା ଗୋପନେ ନିଦ୍ରା ଭଙ୍ଗାଇ ସଧୀରେ
ଶ୍ରୀକ୍ଷେତ୍ର ଯିବାର କଥା । ସ୍ଥୂଳବୁଦ୍ଧି ସ୍ୱାମୀ
କି ବୁଝେ ତା ନାରୀ-ଦୁଃଖ ? ନାହିଁ ପରିଣାମି
ମଣି-ବକ୍ଷେ ମା' ହେବାର ସୁତୀବ୍ର ବେଦନା,
ବନ୍ଧ୍ୟା-ଦୋଷୁ ମୁକ୍ତ ହେବା ଅବ୍ୟକ୍ତ ବାସନା,
କେମନ୍ତେ ସେ ନାରୀଟିର ସମଗ୍ର-ଜୀବନ
ଇହ-ପର, ସମସ୍ତ ହିଁ କୋମଳ ବଦନ
ଶିଶୁଟିରେ କେନ୍ଦ୍ର କରି ଘୂରେ ଅବିରତ,
କିଛି ସେ ବୁଝିଲା ନାହିଁ – ରହି ତନ୍ଦ୍ରାରତ;
କହିଲା ଉପେକ୍ଷାଭରେ ''ଯିବୁ ଯଦି ଯାଆ !
ବାଁଝୀଟା ତୁ – ତୋ କପାଳେ ଅଛି ହେବୁ ମାଆ !''
ଏତେ କହି ସୁଗଭୀର ନିଦ୍ରା ଗଲା ପୁଣି
ମଣି ସେହି ସ୍ୱାମୀ ପାଶେ ଦୁଃଖ ଗୁଣି ଗୁଣି
ପୁହାଇଲା ସେ ରଜନୀ ଗଭୀର କ୍ରନ୍ଦନେ ।

ତା ପରେ ଚଳିଲେ ଯେବେ ତୀର୍ଥ-ଦରଶନେ
ଗ୍ରାମବୃଦ୍ଧା କେତେ ଜଣ ପୁରୋହିତେ ଧରି
ମଣି ତାଙ୍କ ସଙ୍ଗେ ଗଲା । ବନ୍ଦୋବସ୍ତ କରି
ସବୁ କଥା ସ୍ୱାମୀ ପାଇଁ, କହି ବାରବାର
ପ୍ରତିବେଶିନୀ ଜାଆରେ, ଖାଇବା ପିଆର
ସବୁ ଯତ୍ନ ଘେନିବାକୁ । ନିଜେ ରଘୁନାଥେ
କହିଗଲା ଫେରିବ ସେ ସମସ୍ତଙ୍କ ସାଥେ
ଅଳ୍ପ ଦିନେ, ରାଗିବନି ବ୍ୟସ୍ତ ହେବ ନାହିଁ –
କହୁ କହୁ ଆଖି ତା'ର ଓଦା କାହିଁ ପାଇଁ ।

ବିରାଟ ଦେଉଳ, ବହୁ ଜନସମାଗମ,
ଅବିରତ କୋଳାହଳ, ସଦା ଗମଗମ
ଶତ ଶତ ଯାନେ, ଦୀର୍ଘ ପ୍ରଶସ୍ତ ନଗର,
ଶତ ଶତ ଅଟ୍ଟାଳିକା, କ୍ରୟ-ବିକ୍ରୟର

ଦିବାରାତି ଅଭିନୟ, ଦେଖି ଦେଖି ମଣି
ଶ୍ରୀକ୍ଷେତ୍ରର ସବୁ କଥା ସ୍ୱପ୍ନ ପରି ମଣି ।

ପ୍ରବେଶନ୍ତେ ସଙ୍ଗମେଳେ ମଣି ଦେଉଳରେ
ଶଙ୍ଖ-ଘଣ୍ଟା-ବାଦ୍ୟରୋଳ-ଗମ୍ଭୀର-ମୁଖରେ,
ଭକ୍ତଜନ-ସମାଗମ, ପ୍ରାଣର ଉଚ୍ଛ୍ୱାସ,
କୃତକୃତ୍ୟ ପ୍ରଣିପତ୍ୟ, ଗନ୍ଧ ମାଲ୍ୟ ବାସ,
ଚନ୍ଦନଅର୍ଗଳି, ବେତମାଡ଼, ଘୃତଦୀପ,
ଗମ୍ଭୀରାରେ ରତ୍ନ-ସିଂହାସନର ସମୀପ
ତ୍ରିମୂର୍ତ୍ତିର ସନ୍ନିଧାନେ ସାତ୍ତ୍ୱିକାନୁଭୂତି
ଗଦଗଦେ ଜଣାଇବା ପ୍ରଭୁର ବିଭୂତି –
– ସବୁ ମିଳିମିଶି ପ୍ରାଣେ ଅଦ୍‌ଭୁତ ଭାବର
ଉଦିତ ହେଲା ତା' ବକ୍ଷେ । ଝର ଝର ଝର
ନେତ୍ରୁ ତା'ର ଲୁହ ଗଲା ଖରତର ବହି,
ପ୍ରଣିପତି ଦେବତାରେ ଦୁଃଖ ଗଲା କହି –
'ହେ ପ୍ରଭୁ, ଜଗତକର୍ତ୍ତା, ଜଗତର ନାଥ,
ଏ ଲୀଳା ଲଗାଇଅଛ, କର ଆତଯାତ
ସକଳ ସଂସାର ତୁମେ, ଏ ଦୁଃଖିନୀଟାର
ସାମାନ୍ୟ ଏ ଦୁଃଖ କି ହେ ନାହିଁ ଟାଳିପାର ?''

ତଳ-ପ୍ରଣମିତା 'ମଣି' ସ୍କନ୍ଧଦେଶେ ତା'ର
ଅନୁଭବ କଲା କର-ସଂଚାର କାହାର,
ଚମକି ହୋଇଲା ଉଭା, ଦେଖିଲା ପଶ୍ଚାତେ
ସେମାନଙ୍କ ପଣ୍ଡା ଧରି ପୁଷ୍ପମାଲ୍ୟ ହାତେ
କହୁଛି, 'ନିଅ ମା' ଏହି ପ୍ରସାଦ ପ୍ରଭୁର' –
ବୋଲି ପଛୁ ହାତ ଆଣି ଛୁଇଁ ତା'ର ଉର
ମଣି-ହାତେ ଦେଲା କିଛି – ସାଶ୍ରୁ ଲୋଚନରେ
ଘୂଞ୍ଚିଯାଇ ମଣି, ତାକୁ ବାନ୍ଧିଲା ଆଦରେ ।
ପଚାରିଲା ପୁଣି ପଣ୍ଡା, ''କିପାଁ ଏତେ ରୋଦ,
କି ହୋଇଛି; କି ଅଭାବ, କରିଦେବା ବୋଧ
ଠାକୁରେ ତୁମର ଲାଗି, କରିବା ଉପାୟ,
କାନ୍ଦୁଛ କିପାଇଁ ଏତେ ପାଗଳିନୀ ପ୍ରାୟ ?''

ମଣି ରହେ ନିରୁତ୍ତର; କିନ୍ତୁ ସାଥୀଜନେ
ପ୍ରକାଶିଲେ ମଣିଦୁଃଖ – "ସନ୍ତାନ ବିହୁନେ
କେମନ୍ତେ ସେ ସାଧିଲାଣି କଠୋର ତପସ,
ଅପେକ୍ଷା କଲାଣି ଦୀର୍ଘ ଦଶଟି ବରଷ
ବୃଥା ଖାଲି । କଉଣସି ଦିଅଁ ବା ଦେବତା
ଶୁଣିଲେନି ଦୁଃଖ ତା'ର । ଶେଷେ ହେଲା କଥା
ଠାକୁରଙ୍କ ରଜା ତ ଏ – ଯାଙ୍କୁ ଜଣାଇବା
କି ହେଉଛି ଭାଗ୍ୟ ତା'ର ପଛକେ ଦେଖିବା ।
ଦୁଃଖିନୀଟା ବହୁ କଷ୍ଟ – ହସି କହେ ପଣ୍ଡା
"ଏଇ କଥା ? ମୋ ଦେଖାରେ ବନ୍ଧ୍ୟା ଗଣ୍ଡା ଗଣ୍ଡା
କାଳିଆ-ଦୟାରେ ଏବେ ବହୁପୁତ୍ରବତୀ
ଏ କି ଗୋଟେ କଥା ? ତେବେ – ଘୁଞ୍ଚିଆସି କତି
ପ୍ରବୀଣା ଜଣକ କାନେ କହେ ପଣ୍ଡା ଧୀରେ
କିଛି କଥା, ଚାହିଁ ଚାହିଁ କଣେଇ ମଣିରେ ।
ପ୍ରବୀଣା ଟୁଙ୍ଗାରେ ମୁଣ୍ଡ – କ୍ରମେ ସେ ବାରତା
ଗୋପନେ ଗୋପନେ ହେଲା ସଭିଙ୍କ ଜାଣତା
କେବଳ ମଣିରେ ଛାଡ଼ି । କହିଲା କେ' ଦଳୁ
"ତା'ର କି ଆପତ୍ତି ଏଥି ? ଘରେ ଆଗେ ଚଳୁ ।"

ବସାରେ ଶୁଣିଲା ମଣି ପ୍ରସ୍ତାବ ଗୋପନ
ଝିମିଝିମି ହେଲା ଦେହ ଶୁବ୍ଧ ତା'ର ମନ
ଘୃଣାରେ ଉଠିଲା ପୂରି । କହିଲା ହଠାତ୍,
"ଏ କି କଥା ? ଛି ଛି ଛି ଛି ।" ଛିଁଛାଡ଼ି ସେ ହାତ
ଘୁଞ୍ଚିଗଲା ଅନ୍ୟ ସ୍ଥାନେ । ତହୁଁ ବୃଦ୍ଧା ଦୁଇ
ପଛେ ଯାଇ, ପାଶେ ଧରି କହିଲେ ବୁଝାଇ,
"ଦେଖ୍ ମଣି, ତୋର ଭଲ ପାଇଁ ସିନା କଥା,
ତୋ ଲାଗି ଆମର କିପାଁ ବଥାଇବ ମଥା ?
ଏତେ କଷ୍ଟ ପାଇ ଶେଷେ ଆସିଛୁ ଏଠାରେ,
ଏଠି ଯଦି ବ୍ୟର୍ଥ ହୁଏ କହିବୁ କାହାରେ ?
ତୀର୍ଥସ୍ଥାନେ ବ୍ରାହ୍ମଣକୁ ଦେଲେ ଉପଭୋଗ
ପାପ କିସ ? ଏ ତ ତୋ'ର ବରଂ ପୁଣ୍ୟଯୋଗ ।
ପିଲା ତୁ ଜାଣିନୁ କିଛି, ବାଁଝ ହେବାଠାରୁ
କ୍ଷତି କ'ଣ ଦେହ ଯଦି ହେଲା ଟିକେ ମାରୁ ?

ଠାକୁର ଠାକୁର-ପଣ୍ଡା ଏକ ବୋଲି ଧର
ଠାକୁରେ ଭୋଗିବେ ତୋତେ ଏ କଥା ବିଚାର ।''

ସେ ଦିନ ନିଶାରେ ସତୀ ସରଳା ସେ ନାରୀ
ପତି ଆଉ ଦେବତାରେ ଉଭୟ ବିଚାରି
ହୃଦଗତେ ପୁତ୍ର ଆଶେ, ଘୋର ଅନିଚ୍ଛାରେ
ଶୁଦ୍ଧ ତା ଶରୀର ଦେଲା ପଣ୍ଡା-ବ୍ୟଭିଚାରେ ।
ଡାକିଲା ବ୍ୟାକୁଳ ହୋଇ ''ପ୍ରଭୁ ନାରାୟଣ,
ପାପ ଏ କି ପୁଣ୍ୟ ତାହା ତୁମ୍ଭେ ଖାଲି ଜାଣ ।''

ଫେରିଲେ ସକଳ ଯାତ୍ରୀ, ମଣି ତାଙ୍କ ସାଥେ,
ଘୋର ଲାଜେ ପତି ଆଗେ ନାହିଁ ପାରେ ମାଥେ
ଟେକି ସେ ନିଃଶଙ୍କ ହୋଇ । ସାଥୀଙ୍କ କୃପାରେ
ଅଜ୍ଞାତ ରହିଲା ନାହିଁ ଗ୍ରାମ-ଜନଠାରେ
ପୁରୀରେ ତାହାର କ୍ରିୟା । ଲଜ୍ଜା ଘୋରତର
ସରଳାରେ ଶର ପରି ବିନ୍ଧିଲା ପ୍ରବଳ ।
ଏ କଥା ସ୍ୱାମୀରେ କହିଦେବ ତୁଣ୍ଡ ଖୋଲି
ଏ ସାହସ ନାହିଁ ଆସେ । କିଛି ସେ ନ ବୋଲି
ଥାଏ ଚୁପେ । ଦିନେ ରଘୁନାଥ କିନ୍ତୁ ଜାଣି
ସବୁ କଥା, ନ ପଚାରି ଗଲା ଅଙ୍ଗ ହାଣି
ପାଞ୍ଚଣରେ – ସତୀ ସାଧ୍ୱୀ ନିରପରାଧୀର,
ଉଚ୍ଚେ ଡାକି – ''ପିଲା ପୁଣି ହେବ ବେଶ୍ୟାଟାର ?''
ସକଳେ ଜାଣିଲେ କଥା ପ୍ରକାଶ୍ୟେ ଏଥର
ଚରଚା ଲାଗିଲା ଗ୍ରାମେ ମଣି-ସତୀତ୍ୱର ।
କହିଲେ ସତୀଏ, 'ପିଲା ନ ହେଲେ ନ ହେଲା
ଏ କଥା କରିବ, ମଲା, ପାଦେ ଦେଇ ଠେଲା
ହାତ ଧରି ବିଭାହେଲା ଯା'କୁ ବେଦୀ ପରେ !
ମରଣ ନ ହେଲା କିପାଁ ? ପୁରୀ ସହରରେ
ଏୟା କରିବାକୁ ଯାଇଥିଲା ଏ ଚଣ୍ଡାଳୀ !''

ବହୁଦିନଯାଏ ମଣି ସବୁ ସହିଲା ଏ ଗାଳି
ମଥା ପୋତି, ଆଉ ସତୀ ନ ପାରିଲା ସହି,
ସେ ଦିନ ନିଶୀଥେ ସବୁ ଦୁଃଖ ମାଥେ ବହି,
ଗଳାରେ ସ୍ୱାମୀର ବସ୍ତ୍ର ଚୁମ୍ବିଦେଲା ବାନ୍ଧି,

କହିଲା ଦ୍ୱିକର ଯୋଡ଼ି ନୀରବରେ କାନ୍ଦି –
"ହେ ବଡ଼ଠାକୁରେ ପ୍ରଭୁ, ତୁମ ଦରଶନେ
ଭ୍ରଷ୍ଟ କଲି ଦେହ ମୋର, ନଷ୍ଟ ମୋ ଧରମେ ।
ମୂରୁଖ ନାରୀ ମୁଁ ଆଶ୍ରା ନେଇଥିଲି ପଦେ
ବାରଣ ଦେଇ କି ପାରନ୍ତନି ମୋ ବିପଦେ ?
ଅସତୀ ତ ବଞ୍ଚିଛନ୍ତି ପୁତ୍ର କନ୍ୟା ନେଇ
ସତୀ ବୋଲି ପରା ସାରା ଜୀବନ ନଚେଇ,
କନ୍ଦାଇ କନ୍ଦାଇ ମୋର ଏ ସାରା ଜୀବନ
ଦେଲ ଶେଷେ ଏଇ ପାପ, ସରମ, ମରଣ ।
ତୁମ ଦୟା କେବେ ମୁଁ ତ ଜାଣିନି ବିଧିରେ
ଯାଉଛି ମୁଁ ଭଲେ ରଖିବ କି ମୋ ସ୍ୱାମୀରେ !" *

## ଫେରାଇ ଦିଅ

ଫେରାଇ ଦିଅ, ଫେରାଇ ଦିଅ
ସ୍ୱପ୍ନ ସରସ କିଶୋର ବୟସ
ମଧୁର ସେ ଦିନ
ପୀରତି-ପ୍ରିୟ !
ଜୀବନ-ପ୍ରଭାତେ ମାଗୁଥିଲି ଯାହା
ନୟନ-ଜଳେ,
ପ୍ରାଣର ସେ ମଗା ଏବେ ବି ଜାଗଇ
ମର୍ମ ତଳେ ।
ଶୁଣି ଶୁଣିନାହିଁ ବିକଳ ଯାଚ୍ନା,
ପଥ-ମଗା ଲୋକେ କଲ ପଥ-ବଣା
ବ୍ୟର୍ଥ, ବିପଥ, ବିକଳ, ମିଥ୍ୟା

---

* ଲେଖକ ନିମାପଡ଼ାରେ ଶିକ୍ଷକ ଥିଲାବେଳେ ତତ୍କାଳୀନ 'ତରୁଣ କବି' ଓ ପୁରୀବାସୀ ଶ୍ରୀମାନ୍ ସଚ୍ଚିଦାନନ୍ଦ ରାଉତରାୟ ଲେଖକ ନିକଟକୁ ଦେଇଥିବା ଏକ ପତ୍ରରେ ଏଇ ଘଟଣା ବର୍ଣ୍ଣିତ ହୋଇଥିଲା । ତାହା ପଢ଼ି ମୁଁ ପ୍ରଥମେ ସ୍ତମ୍ଭିତ ହେଲି । ଶ୍ରୀମାନ୍ ସଚ୍ଚି ଏହା ତାଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତା ବୋଲି ଲେଖିଥିଲେ । ତେଣୁ ଅତ୍ୟାଚାରିତା ନାରୀପ୍ରତି ସମବେଦନା ସମ୍ଭାଳି ନ ପାରି ଏ କବିତାଟି ଲେଖିପକାଇଥିଲି ।

କରାଇଲ ମୋର ଜୀବନ-ଦିଅଁ —
ଭୁବନ-ଦେବତା,
ଅଲୋଡ଼ା ଏସବୁ ନିଅ ହେ ନିଅ ।

ନବ କିଶଳୟ ଗନ୍ଧପାଗଳ ଭ୍ରମର ପରି
ନୂଆ ଜୀବନର ମାଦକେ ନିଖିଳ ଚିତ୍ତ ଭରି,
ଉନ୍ମନେ ବୁଲୁଥିଲି ଏ ଧରଣୀ,
ଅନୁଭବମୟ ତରୁଣ ଧମନୀ,
ମାଟିର ଏ ଧରା ଦିଶୁଥିଲା ସତେ
କି କମନୀୟ,
ସେଇ କାଳ ସତେ ଫେରାଇଦିଅ ।

ବାଟେ ନବ ଫୁଟା ରୂପକୁସୁମର ମାଳାଟି ଧରି
ଏକ ସେ କିଶୋରୀ ଭେଟୁଁ ପାଦ ଆଉ ନ ପାରେ ଚଳି,
ଉଭୟର ଆଖେ ସରମର ଭାର
ଦୁଇ ଓଠେ ମୃଦୁ ସ୍ମିତର ଜୁଆର,
ବିନା ବଚନରେ ଅପରିଚିତରେ
କେ କଲା ପ୍ରଣୟେ ବଦ୍ଧ-ହିଅ !
ହେ ଜୀବନ-ନାଥ,
ପ୍ରଣୟର ସେହି ମଧୁ ଆଗ୍ରହ
ଫେରାଇଦିଅ ।

ସେ ଦିନୁଁ ଯାଇଛି ଯେତେ କାଳ ଏବେ ବୁହାଇ ଲୁହ
ଜୀବନର ଦାନେ, ଲାଜେ ବିଦ୍ରୋହେ ନଉଁଛି ମୁହଁ,
ମାଟି କୁଟା ପାଇଁ କି ଯେ ଟକରାଳ,
ତୁଚ୍ଛ ପାଇଁରେ କିବା ଜଞ୍ଜାଳ,
କଅଁଳ କାଳର ମରମ-ପିପାସା
ସଂସାରେ ଯେଣୁ ଅଚଳନୀୟ,
ହେ ନାଥ, ସେ ଦିନ ବସନ୍ତ ଦିନ
ଆଜି ନି-ସବୁଜ ରୁକ୍ଷ ଢ଼ିଅ ।

ପ୍ରାଣର ଦେବତା ନିଃଶେଷେ ସବୁ ନିଅ ହେ ନିଅ,
ଲୋକ-ଲୋଚନରେ ଯା କିଛି ଶ୍ରେଷ୍ଠ ଶଂସନୀୟ,
ଦିଅ ପୁଣି ଖାଲି ସେଇ କୈଶୋର
ନବ-ଜୀବନର-ସ୍ୱପ୍ନ-ବିଭୋର,

ରସ ଉଛଳ, ଲୁହ-ପିଚ୍ଛିଳ
ଅପାପବିଦ୍ଧ, ସ୍ୱଚ୍ଛ-ହିଅ,
ହେ ନାଥ, ହେ ସଖା,
ସେହି କାଳ ଥରେ ଫେରାଇଦିଅ ।

## ହାତୀବାଡ଼ି

ପାପୁଲିରେ ରଖି ମୋର ଅବସନ୍ନ ମଥା,
ଭାବେ ବସି ବିଧାତାର କ୍ରୂର ବର୍ବରତା,
ଦୁଃଖେ ହୁଏ ଚିତ୍ତ ମୁହ୍ୟମାନ,
ମୋର ଏହି ସାଥିଙ୍କର ଦୈବୀ ନିର୍ଯାତନ କରୁଁ ଅନୁଧ୍ୟାନ ।
ସୁନ୍ଦର ମାନବ ତନୁ ହୋଇଛି ବିକଳ,
ହସ୍ତ ବକ୍ର, ପଦ, ମୁଖ କ୍ଷତରେ ଜର୍ଜର;
ବୀଭତ୍ସ-ଦର୍ଶନ ସର୍ବେ, ବ୍ୟାଧି ତାଙ୍କୁ କରିଛି ଅସ୍ପୃଶ୍ୟ,
ମର୍ମନ୍ତୁଦ ଏ କରୁଣ ଦୃଶ୍ୟ ।

ଦୁଃଖେ ଅବସାଦେ ହୁଏ ଚିତ୍ତ ସ୍ତମ୍ଭୀଭୂତ,
ଭାବେ ବସି ଏ ଜୀବନ ସୃଷ୍ଟି କଲା ଯିଏ,
ସେ କି ସତେ ଦେବତା ନା ଭୂତ ?

ଦରିଦ୍ର, ନିରୀହ ସର୍ବେ, ଏଇ ସବୁ ରୋଗୀ-ସାଥିଗଣ,
କୃଷକ, କିରାଣି, ଚାଷୀ, ପ୍ରାଇମେରୀ ଶିକ୍ଷକ, ପିଅନ –
ନିମ୍ନ ଏହି ଜନ୍ମ ଓ ଜୀବନ,
ନ ଥିଲା କି ଯଥେଷ୍ଟ ଶାସନ,
ଅଜ୍ଞାତ କି ପାପ ପାଇଁ ଏହି ଦୁଃଖୀଙ୍କର ?
ହୀନ ଦୀନ ରଖିଥିଲ ଅଭାଗ୍ୟେ ଏମାନେ,
ଦୁଃଖେ କରି ଦୈନନ୍ଦିନ ଶ୍ରମ
କେଉଁମତେ ଚାଳୁଥିଲେ କୁଟୁମ୍ବ ଆଶ୍ରମ –
ତା'ମଧ୍ୟ ଅସହ୍ୟ ହେଲା ? ଦେଲ ଛାଟ କୁତ୍ସିତ ବ୍ୟାଧିର;
ଜିଅନ୍ତା ମରଣ ଦେଲ; ସବୁ ଥାଇ ମୂକ ଓ ବଧିର !

କିବା ପାପ କହ ଭଗବାନ,
କି କର୍ମରେ ହୋଇପାରେ ଏ ଦଣ୍ଡବିଧାନ ?
ଜଗତରେ କେଉଁ ଅପକର୍ମ

ନ କରନ୍ତି ଭାଗ୍ୟବନ୍ତେ ପ୍ରିୟଜନେ ଯେତେକ ତମର ।
ଅଥବା ସେ, ବହନ୍ତି ଯେ ତବ ନିଜ ବାଣୀ –
ପାଳନ୍ତି ବା ପ୍ରଚାରନ୍ତି ଧର୍ମ ?

ହେ ସ୍ରଷ୍ଟା, ହେ ବିଧାତା ବିଶ୍ୱର,
ତୁମରି ପ୍ରମାଦ କାହିଁ ରହିଅଛି ସ୍ଥିର,
ସୃଷ୍ଟି ତବ ତେଣୁ ଦୁଃଖେ ସତତ ଜର୍ଜର,
ଜୀବନ ତେଣୁ ତ ଦେଖେ ଫୁଟିଲା କଟାହ
କୋଟି ମୁଖେ ଶୁଭେ ହାୟ ହାୟ ।
କ୍ରୂର ବିଭୀଷିକା ପୁଣି ନ ମିଳାଅ ବୀଭତ୍ସ ସେ ଆପଣା ଭ୍ରମରେ,
ଚିକିତ୍ସାକୁ ନାହିଁ କର ବ୍ୟାଧିରୁ ଅଧିକ,
ପାପଠାରୁ ପ୍ରାୟଶ୍ଚିତ୍ତେ ବେଶୀ ମର୍ମାନ୍ତିକ,
ନିର୍ମମ ନ ହୁଅ ସ୍ରଷ୍ଟା, କାଟିବାକୁ ମନୁଷ୍ୟ ମର୍ମରେ ।
ମନୁଷ୍ୟର ମର୍ମ ଆହା, କି କୋମଳ, କି ବେଦନାଭରା,
କଥାକେ ତା' ହୁଏ ବିଦ୍ଧ; ଚାହାଣିକେ ଜିଇଁ ଉଠେ ହସି,
ହସିଦେଲେ ହୁଏ ଆତ୍ମହରା !

ତାକୁ ହିଁ ଈଶ୍ୱର କର ତବ ରୂଢ଼ ବକ୍ରର ଶରବ୍ୟ,
କାଢ଼ିନିଅ ମନୁଷ୍ୟଠୁ ଯେତେ ଛୋଟ ବାଞ୍ଛିତ ତା ଦ୍ରବ୍ୟ,
କାଢ଼ିନିଅ ପୁଣି ଶେଷେ ନିଗାଡ଼ି ତା' ଆଶା ଓ ସ୍ୱପନ,
ଆଖିଆଗ୍ରେ ଜୀବନକୁ ତା'ର
ଖେଳି ଖେଳି କାଠି ପରି ଟିକି ଟିକି କରୁଥାଅ ଭଗ୍ନ !
ହେ ଦୟାଆଧାର,
କି ସୁନ୍ଦର ସୃଷ୍ଟି ତବ ! ମର୍ମମୟ ନର ଜୀବ ପ୍ରତି,
କି ମାର୍ମିକ ମଧୁ ବ୍ୟବହାର !

ହେ ବାଳକ, ହେ ତରୁଣୀ, ହେ ପିତା, ହେ ସନ୍ତାନ-ଜନନୀ,
ହେ ଶିକ୍ଷକ, ହେ ପିଅନ, ଲଜ୍ଜାବତୀ ନବବଧୂ ଆଗୋ,
(ଆରମ୍ଭିଥିଲା ଯେ ମାତ୍ର ତା' ମଧୁଯାମିନୀ)
କି ଶୁଷ୍କ ବାକ୍ୟରେ ଦେବି ତୁମରେ ସାନ୍ତ୍ୱନା
କେମନ୍ତେ ମୁଁ, ସାମାନ୍ୟରେ କରିପାରେ ଲଘୁ,
ବନ୍ଧୁଗଣ, ତବ କଦର୍ଥନା !
ତୁମଠାରୁ ବେଶୀ ଅସହାୟ
ଅବସନ୍ନ ମୋର ଚିତ୍ତ, କାୟ,

କେବଳ ହେ ସାଥିଗଣ ପଠାଏ ମୋ ଅନ୍ତର-ପ୍ରାର୍ଥନା
ସେହି ସେ ସ୍ରଷ୍ଟାରେ, କହି "ଶୁଣ ଭଗବାନ,
ତୁମେଇ ତ ଏ ସୃଷ୍ଟିର ପିତା, ପରିତ୍ରାଣ,
ଦୟା କର ଦୁଃଖୀ ଏଇ ଜୀବ କେତୋଟିରେ,
ଶିଶୁରେ ଫେରାଇଦିଅ ନବମାତା ବ୍ୟଥାକୁଳ କ୍ଷୀରେ,
ପିତା ଯାଉ କୁଟୁମ୍ବରେ, ଚାଷୀ ଯାଉ ଛୋଟ ତା' ସଂସାରେ,
ପରିତ୍ୟକ୍ତ ଘୃଣିତ ଯେ, ଫେରନ୍ତୁ ସେ ଯେଝା କାରବାରେ !
ହେବ ନାହିଁ କିଛି ବିପର୍ଯ୍ୟୟ,
ଏ କେତୋଟିକି କଲେ ଦୟା
ଦେଖାଇଲେ ମମତା ବିପନ୍ନେ,
କେହି କହିବେନି ନିଶ୍ଚେ ବିଧାତାର ହେଲା ପରାଜୟ !"

ଏଇ ହତଭାଗ୍ୟ ଜନେ ସେବା କରିବାରେ
ଜୀବନ ଯେ ଉତ୍ସର୍ଗିଛ, ହେ ବନ୍ଧୁ ତୁମରେ
ବାରମ୍ବାର ମୁହିଁ ନମସ୍କାରେ !
ଦାରୁଣ ଏ ପରିସ୍ଥିତି, ବୀଭତ୍ସ ଏ ପୀଠ –
ତୁମରି ବ୍ୟକ୍ତିତ୍ୱ ଖାଲି ଘୂରିବୁଲେ ବରେଣ୍ୟ, ବଳିଷ୍ଠ,
ବ୍ୟାଧି ସଙ୍ଗେ ସଂଗ୍ରାମରେ ରତ ଅନୁକ୍ଷଣ
ଆଶାମୟ, ସେବା-ବିଚକ୍ଷଣ,
ହେ ଖାଣ୍ଟି ଖ୍ରୀଷ୍ଟାନ,
ତୁମେ ଇ ଏ ଅନ୍ଧକାରେ ନରତ୍ୱର ବର୍ତ୍ତିକା ମହାନ୍ !
ହେ ସୈନିକ ତୁମର ହିଁ ହେଉ ଜୟକାର,
ଦେଶରୁ ହେଉ ଏ ବ୍ୟାଧି ସମୂଳେ ବିଲୁପ୍ତ,
ଏ କବି-ବନ୍ଧୁର ନିଅ ପ୍ରାର୍ଥନା ଓ ମୁଗ୍ଧ ନମସ୍କାର ।

---

* ପ୍ରସିଦ୍ଧ କୁଷ୍ଠରୋଗ-ଚିକିତ୍ସା-ଧୁରନ୍ଧର ଡକ୍ଟର ଆଇଜାକ୍ ସାନ୍ତ୍ରାଙ୍କର ସମ୍ବଲପୁର ନିକଟସ୍ଥ ସ୍ୱାସ୍ଥ୍ୟ-ନିବାସ । ଏହା ମନୋରମ ଜାଙ୍ଗଳିକ ପରିସ୍ଥିତିରେ ଅବସ୍ଥିତ । ସୁଖର କଥା, ଡକ୍ଟର ସାନ୍ତ୍ରାଙ୍କର ଚିକିତ୍ସା-ନୈପୁଣ୍ୟରେ ଏଠାରେ ଅନେକ ରୋଗୀ ଅଳ୍ପକାଳ ଭିତରେ ଆରୋଗ୍ୟ ହୋଇ ଘରକୁ ଫେରିଯାଉଛନ୍ତି । ଏହି କବିତାର ପାଠକପାଠିକାମାନଙ୍କୁ କଥା-ପ୍ରସଙ୍ଗରେ କହିରଖେ ଯେ, ସେମାନେ ଜାଣନ୍ତୁ ଓ ବନ୍ଧୁମାନଙ୍କ ନିକଟରେ ବରାବର ପ୍ରଚାର କରନ୍ତୁ ଯେ, ଏଇ ରୋଗ ବର୍ତ୍ତମାନ ସୁଚିକିତ୍ସ୍ୟ । ରୋଗ ଲୁଚେଇଲେ ବଢ଼ିବ ଓ ଆକ୍ରାନ୍ତ କରିବ; ବରଂ ଆଦ୍ୟରୁ ଅଭିଜ୍ଞ ଚିକିତ୍ସକଙ୍କର ଆଶ୍ରୟ ନେଲେ ରୋଗ ଶୀଘ୍ର ସମୂଳେ ନଷ୍ଟ ହେବ । ନିରାମୟ ହୋଇଥିବା ଅନେକ ଲୋକଙ୍କୁ ମୁଁ ଭଲଭାବରେ ଜାଣେ ।

# କ୍ରୁଶ

## କାବ୍ୟ-ସୂଚନା

ପ୍ରାଣର କେତେକ ଗଭୀର ଅନୁଭୂତି ଓ ଜିଜ୍ଞାସା ଅନ୍ୟ ରୀତି ଅପେକ୍ଷା ସନେଟ୍‌ରେ ଅଧିକତର ପରିଚ୍ଛନ୍ନଭାବରେ ପ୍ରକାଶିତ ହୋଇପାରୁଛି ବୋଧକରି, କିଛିକାଳଧରି ମୁଁ ସନେଟ୍-ରଚନାର ଅଭ୍ୟାସ କରିଆସିଛି । କେତେକର ଏକତ୍ରୀ-କରଣ ଏହି ସନେଟ୍-ଶତକ । ପ୍ରତ୍ୟେକଟି ସନେଟ୍ ସ୍ୱୟଂସମ୍ପୂର୍ଣ୍ଣ ହେଲେହେଁ, ସବୁଗୁଡ଼ିକୁ ସମ୍ପର୍କିତ କରି ଏକ ଶୋକ-ବିକ୍ଷୁବ୍ଧ, ଅଶ୍ରୁ-ଦଗ୍ଧ ପ୍ରାଣର କାତର-ବାଣୀ ଓ ତତ୍ତ୍ୱ-ଜିଜ୍ଞାସା ଓତପ୍ରୋତଭାବରେ ସୂତ୍ରରୂପେ କାର୍ଯ୍ୟକରୁଥିବାର ସହୃଦୟ ପାଠକ ଅନୁଭବ କରିପାରିବେ ବୋଲି ମୋର ବିଶ୍ୱାସ । ହୁଏତ କେହି କେହି କ୍ଳାନ୍ତ, କ୍ଷତପଦ, ନିରାଶ ପଥିକ ଏଥିରୁ ସାମାନ୍ୟ ଆଶା ଓ ଆଶ୍ୱାସନା ବି ପାଇପାରନ୍ତି । ତାହାହିଁ କବିର ଶ୍ରେଷ୍ଠ ପୁରସ୍କାର ।

**ଲେଖକ**

## ଏକାନ୍ତ ଏକାକୀ

ନିଖିଳ ସଂସାର ମଧ୍ୟେ, କୁଟୁମ୍ବ ସଙ୍ଗତେ
ଏକାନ୍ତ ଏକାକୀ ମୁହିଁ, ସଙ୍ଗୀହୀନ ପ୍ରାଣୀ;
କାହାର ପରମ ସଖ୍ୟ ଖୋଜେ ଅନ୍ତର୍ଗତେ,
ଚିର ବିରହିତ ମୁହିଁ କେମନ୍ତେ କେଜାଣି ।

ମନେହୁଏ କାହାରେ ମୁଁ ଖୋଜୁଛି ଅନ୍ତରେ
ବହୁ ଜନ୍ମେ, ବହୁ ଲୋକେ ଅନାଦି କାଳରୁ,
ଉତ୍‌କଣ୍ଠେ ଧାଇଁଛି ତେଣୁ ସହସ୍ର ସଖ୍ୟରେ, —
କେ କିନ୍ତୁ ଶ୍ୟାମଳ ନାହିଁ କଲା ଚିତ୍ତ-ମରୁ ।

ହେ ଅଜ୍ଞାତ ସଖା ମମ, ଅଛ ତମେ କାହିଁ ?
ଦିଅ ମୋରେ ତବ ସ୍ପର୍ଶ, ପ୍ରଣୟ କୋମଳ,
କ୍ଳାନ୍ତ ମୁଁ, ସଂଧାନେ ମୋର ଆଉ ଶକ୍ତି ନାହିଁ —
ତୁମକୁ ନ ପାଇ କିନ୍ତୁ ଜୀବନ ବିଫଳ ।

ବେଣୁର ସଂକେତ ଦିଅ – ସକଳ ତିଆଗି
ଭ୍ରମିବି ପୁଣି ମୁଁ ବିଶ୍ୱ, ଶୁଭ-ଦୃଷ୍ଟି ଲାଗି ।

## ବିଶ୍ୱ-ଆକର୍ଷଣ

ରବିକର ବୃକ୍ଷଲତା ଖୋଜନ୍ତି ଆକୁଳେ,
ନଦନଦୀ ଧାଇଁଛନ୍ତି ସିନ୍ଧୁ ସ୍ପର୍ଶ ପାଇଁ,
ଗନ୍ଧବହ ଲାଗି ପୁଷ୍ପ ସଜ୍ଜିତ ଦୁକୂଳେ,
ମେଘ ସଦା ଧରିତ୍ରୀର ଆଶ୍ଳେଷ ଆଶାୟୀ ।

କାହା ଡାକେ ବୀଜ ଫାଡ଼ି ଉଠଇ ଅଂକୁର,
ଶୁଷ୍କ ବୃକ୍ଷ ଜିଇଉଠେ ମଳୟ ପରଶେ,
ବୃକ୍ଷ ନିଜ ଫଳେ ଖସେ ଧରିତ୍ରୀର ଉର,
ରବିପାଇଁ ଧରା ସାରା ନିଶା ଚାହିଁ ବସେ ?

ତୃଣରୁ ତାରକାଯାଏଁ ନିଖିଳ ସଂସାରେ
କେ କବି ବାନ୍ଧିଛ ସର୍ବେ ପ୍ରେମ ଆକର୍ଷଣେ,
ଅନ୍ୱେଷଣ, ସମର୍ପଣ ଭିତରେ, ବାହାରେ
ନିରନ୍ତର ଲାଗିଅଛି ଜଡ଼ ଓ ଚେତନେ ?

ସେ କବିର ସୃଷ୍ଟି ଛନ୍ଦେ ମୁଗ୍ଧ ଆତ୍ମା-ବଧୂ
ଉନ୍ମୁଖ ପାଇବା ଲାଗି ତା'ର ସ୍ପର୍ଶ-ମଧୁ ।

## ନୂତନ ପ୍ରଣୟ

ଜାଣିନି କି ତେଜିଛି କି କରୁଣ ଲୋତକ,
କେତେ ବଂଧୁ, ସଖା-ସଖୀ, ପରିଜନ ପାଇଁ ?
ନିଃସଙ୍ଗ ଜୀବନ, ମଣେ ଏକାନ୍ତ ଅରକ୍ଷ,
କେହି ହେଲେ ଜଣକର ପ୍ରଣୟ ନ ପାଇ ।

ଯାଇଛନ୍ତି ସେ ସମୟ, ସେ ବନ୍ଧୁ ବାନ୍ଧବୀ;
ପ୍ରଣୟର ଅର୍ଥ ଆଜି ଭିନ୍ନ ମୋ ନୟନେ,
ଭିନ୍ନ ଯଜ୍ଞେ ନିୟୋଜିତ ଆଜି ଅଶ୍ରୁ-ହବି,
ଜନ୍ମାନ୍ତର ଦେଲ ଯେହ୍ନେ ଏକଇ ଜୀବନେ ।

ଆଜି ଦେହ ଖୋଜେ ଏକ ଦୁର୍ଲଭ ବି-ଦେହୀ,
ଚିତ୍ତ ଖୋଜେ ଏକ ତେଜି, ବିରାଟ ନିଖିଳେ,

ଖୋଜେ ମୁଁ ଅରୂପେ ରୂପ-କ୍ଳାନ୍ତ ନେତ୍ର ଦେଇ
ସ୍ନାତ ହୋଇଉଠେ ଗଣ୍ଡ ଅନାସକ୍ତ ନୀରେ ।
ତୁମ ଲାଗି ବିରହୀ ମୁଁ ଦୁର୍ଲଭ-ବଲ୍ଲଭ,
ତୁମ ଲାଗି ବିରହାଶ୍ରୁ ଆଜି ଅଭିନବ ।

## ଏକ ଶାନ୍ତ-ବିନ୍ଦୁ

ସଂସାର ଗହଳ ମଧ୍ୟେ ନିତି ଜୀବନର
ସହସ୍ର ଚିରାୟମାନ ଅଚିର ଜଞ୍ଜାଳେ (୧)
ଦିଅ ମୋତେ ଏକ ବିନ୍ଦୁ ଶାନ୍ତ, ଅଚଞ୍ଚଳ
ଯହିଁ ମୁଁ ଭେଟିବି ସତ୍ୟ ଅନ୍ତରେ, ବାହାରେ ।

ଧାବମାନ ଘଟଣାର ଶର୍କରା-ପରଶେ
ବିଭ୍ରାନ୍ତ ଦୁର୍ବଳ ଚିତ୍ତ ପିପୀଲିକା ପରି
ଧାବିତ ମୁଁ ଦିଶେ ଦିଶେ ସହସ୍ର ଆକର୍ଷେ,
ନିଜ ସତ୍ୟ-ପରିଚୟେ ସଂକୋଚରେ ମରି ।

ଦର୍ଶନର ଦୋଷେ (୨) ହୁଏ କ୍ଷୁଦ୍ର ଗରୀୟାନ
ଶାଶ୍ୱତ, କ୍ଷଣିକ ତଳେ ରହେ ଲୁକ୍କାୟିତ,
'ମୁଁ' ହୁଏ ନିଖିଳଠାରୁ ସ୍ୱତନ୍ତ୍ର, ମହାନ୍
'ତୁମେ' (୩) 'ମୁହିଁ' ପରସ୍ପରେ ପୂର୍ଣ୍ଣ ବିପରୀତ ।

ଦିନର ସହସ୍ର କ୍ଷଣେ ମାତ୍ର ଏକ କ୍ଷଣ
ଦିଅ ଯହିଁ ପାଇବି ମୁଁ ତତ୍ତ୍ୱ-ଦରଶନ ।

## ଆକାଙ୍‌କ୍ଷିତ ଶୂନ୍ୟତା

ବାହାରର ତୂର୍ଣ୍ଣ-ପ୍ରାପ୍ତ (୪) ସହସ୍ର ସଂବନ୍ଧ
ଶତ ଏହି ପ୍ରାସଙ୍ଗିକ ''ଅଛନ୍ତି କିପରି'' ?

---

(୧) ଚିରାୟମାନ ଅଚିର ଜଂଜାଳେ – ଅଚିର ଅର୍ଥାତ୍ କ୍ଷଣସ୍ଥାୟୀ ଜଂଜାଳ ସବୁ ଯାହା ଅସରନ୍ତି (ଚିରାୟମାନ) ପରି ବୋଧହୋଇଥାନ୍ତି ।
(୨) ଦର୍ଶନର ଦୋଷେ – ଦୃଷ୍ଟିଶକ୍ତିର ଦୋଷରୁ ।
(୩) ତୁମେ – ଏଠାରେ ଈଶ୍ୱର ।
(୪) ତୂର୍ଣ୍ଣ-ପ୍ରାପ୍ତ – ସଂଗେ ସଂଗେ ଲବ୍ଧ ।

ଲୁକ୍କାୟିତ-ସ୍ୱାର୍ଥ ଯେତେ ଆତ୍ମୀୟତା-ବଂଧ
ପ୍ରାଣହୀନ ଏଇ ଯେତେ ଛଦ୍ମ ଜଡ଼ାଜଡ଼ି ।

ଜୀବନର ଏଇ ଯେତେ ବିଭିନ୍ନ ମିଶ୍ରଣ –
ଜାତି, ଗୋଷ୍ଠୀ, ପରିବାର, ସମାଜ, ସ୍ୱଦେଶ,
ଭେଟିବାର ପଥେ ନିତ୍ୟ ଅଗଣିତ ଜନ,
ଚାକ୍ଷୁଷ ସୃଷ୍ଟିର ଏହି ମହା ପରିବେଶ ।

ରହିବାକୁ ଚାହେଁ ମୁହିଁ ଏ ମହା ସଂଗମେ,
ହେ ପିତ, ଏକାନ୍ତ ଏକା, ନିଃସଂଗ ନିର୍ମମ,
ବିପୁଳ ଗହଳ ମଧ୍ୟେ ନିଭୃତ ମରମେ
ପାଏ ଯେହ୍ନେ ତବ-ଦତ୍ତ ସ୍ୱାତନ୍ତ୍ର୍ୟ ପରମ ।

ସଂଚ଼ିବାକୁ ଚାହେଁ ସେହି ସ୍ୱତନ୍ତ୍ର ଶୂନ୍ୟତା
ତବ ପୂର୍ଣ୍ଣତାରେ ଭରି ଉଠିବ ଯା ସତ୍ତା ।

## ବିଶ୍ୱପ୍ରାଣ

ସଂସାର ଗହଳ ମଧ୍ୟେ ନୀରବ ବିନ୍ଦୁରେ
ତମ ସହ ମୁଖାମୁଖୀ ହେଲେ ଏକା ଏକା
ଏକାକୀ ନ ଥାଏ କିନ୍ତୁ । ଜୀବନ-ସିନ୍ଧୁରେ
ଅବଗାହେ ସୁଖେ, ଆନେ ନ କରି ଅପେକ୍ଷା ।

ସେହି ସେ ଜୀବନ-ସିନ୍ଧୁ ଅନନ୍ତ, ଗଭୀର;
ଊର୍ମି ମାତ୍ର ଯା'ର ଏହି ପ୍ରତ୍ୟକ୍ଷ ସଂସାର –
(ବ୍ୟାପ୍ତ, ଓତପ୍ରୋତ, କ୍ଷୁବ୍ଧ) – ନାହିଁ ଯା'ର ତୀର,
ତାରକାରୁ ତୃଣ-ଭେଦୀ ଯାହାର ପ୍ରସାର ।

ସେହି ମୁଁ ନିଃସଙ୍ଗ ଯେବେ, ଜୀବନବେଳାରେ
ବିଷଣ୍ଣ ଏକାକୀ, ଥାଇ ନିଖିଳ ସଙ୍ଗତେ,
ତବ ସ୍ପର୍ଶେ ବିନ୍ଦୁ ମମ ଅନନ୍ତ ବିସ୍ତାରେ
ବ୍ୟାପିଯାଏ ଜୀବଗ୍ରାମେ, ଜଗତେ ଜଗତେ ।

ସବୁ ଦ୍ୱାର ରୋଧି, ଖାଲି ତବ ବାତାୟନ
ଖୋଲିଦେଲେ, ବିଶ୍ୱ ମତେ ଦିଏ ଆଲିଙ୍ଗନ ।

## ଉଦ୍‌ଗମନ

ନୀର-ପଙ୍କ ଭେଦି ଯେହ୍ନେ ଉଠେ ସରସିଜ
ରବିକର ସ୍ପର୍ଶ ପାଇଁ ମେଲାଏ ହୃଦୟ,
ଧରଣୀ ପରଶ ପାଇଁ ଯେସନେ ବାରିଦ
ଖସିଆସେ ତୁଙ୍ଗ ନଭୁ ଉନ୍ମାଦନାମୟ;

ଜନନୀ, ସେପରି ମୋର ଅନ୍ତର କମଳ
ଉଦ୍‌ଗତ, ଉନ୍ମୁଖ, ତବ କୃପାଲୋକ ପାଇଁ,
ଚିତ୍ତ ମୋର ସେହିପରି ଭାବ-ଛଳଛଳ
ମିଶିବାକୁ ତବ ମହା ଜୀବନରେ ଯାଇ ।

ଦିଅ ସ୍ପର୍ଶ, ଦିଅ ଆଶ୍ରା, ଦିଅ ଉଦ୍‌ବୋଧନ
ଶାନ୍ତ ସ୍ଥିର ହେଉ ମୋର ପ୍ରାଣ ବ୍ୟାକୁଳତା;
ମୁଁ ଚାହେଁ ପ୍ରଜ୍ଞାର ବୋଧ, ସତ୍ୟ ଦରଶନ
ବିନିମୟି ତବ ସ୍ନେହେ ମୋ କ୍ଷୁଦ୍ର ମମତା ।
ବ୍ୟାକୁଳ, ଆକୁଳ ଚିତ୍ତ ବିକ୍ଷୁବ୍ଧ, ବିକଳ
ଶାନ୍ତ, ପୂର୍ଣ୍ଣ, ସ୍ଥିର କର ପରଶରେ କର ।

## ବିରାଟର ଆକର୍ଷଣ

ପ୍ରଭଂଜନାକୁଳ ଘୋର ତିମିର ରାତ୍ରିରେ
ନିଃସଙ୍ଗ ବିହଙ୍ଗ ଧାଏଁ ବତିଗୃହ ଦେଖି,
ସୀମାହୀନ ବିହାୟସେ, ଜାଳି ତା ଛାତିରେ
ଆଶାର ବର୍ତ୍ତିକା, ଆଶ୍ରା, ଲଭିବ ବା ସେଠି ।

ଦୃଢ଼ କାଚ ବାତାୟନ ଭିତ୍ତିରେ କଚାଡ଼ି
କ୍ଷୁଦ୍ର ପକ୍ଷୀ ଟଳିପଡ଼େ ଅର୍ଣ୍ଣବ ଉର୍ମିରେ,
ମହା ମୃତ୍ୟୁ ଦିଏ ଆଶ୍ରା କରୁଣା ବିଚାରି
ଜୀବନ ଯା ନାହିଁ ଦେଇଥିଲା ଧରଣୀରେ ।

ଜନନୀ, ସେପରି ମଧ ପ୍ରାଣ ଚାହେ ମୋର,
ଅଶାନ୍ତ ଝଡ଼ରେ ଦେବି ଏକମୁଖୀ ଝାସ,

ମେଲି କ୍ଷୀଣ-ପକ୍ଷ, ବ୍ୟୋମେ ନିଃସଙ୍ଗ, ନିଡ଼ୋର (୧)
ଉଡ଼ି ଯାଇ ତବ ଦୀପ ତଳେ ହେବି ନାଶ ।

ବଂଚିବାରୁ ଅନ୍ଧକାରେ ଯୁଗଯୁଗାନ୍ତର,
ମୃତ୍ୟୁ ନିକି ଭଲ, ରୂପ ଦେଖି ଆଲୋକର ?

## ପୂର୍ଣ୍ଣତାପ୍ରାପ୍ତି

କାହିଁକି ତୁମରେ ଚାହେଁ ? କି ଲାଭ ଆଶାରେ
ମୋ ଚିତ୍ତ ବ୍ୟାକୁଳ ତବ ଦରଶନ ପାଇଁ ?
କି ସୁଖ, କି ଗଉରବ ଆଣିବ ମୋ ଦ୍ୱାରେ
କି ସଂପଦ ଦେବ, ଯାହା ଭାବନାରେ ନାହିଁ ? (୨)

କିଛି ତ ଯାଚ୍ନା ନାହିଁ, ଖୋଜେ ମୁଁ ତଥାପି –
ଖୋଜେ ନାହିଁ ମୁକ୍ତି ଅବା ଅମୃତ, ନିର୍ବାଣ,
କେବଳ ଆଗ୍ରହ ମୋର ସର୍ବ-ପ୍ରାଣ-ବ୍ୟାପୀ,
ତୁମଠି ପାଇବି ପ୍ରିୟତମର ସଂଧାନ ।

ଅନ୍ଧ ଯେହ୍ନେ ଖୋଜେ ଦୃଷ୍ଟି, ଅଜ୍ଞ ଯେହ୍ନେ ଜ୍ଞାନ,
ବିଭ୍ରାନ୍ତ ବିମୂଢ଼ ଯେହ୍ନେ ଖୋଜେ ସତ୍ୟ ପଥ,
କ୍ଷୁଦ୍ର ମୁଁ ହେବାକୁ ଚାହେଁ ବିରାଟ, ମହାନ,
ପିଂଜରାର ପକ୍ଷୀ ଖୋଜେ ମୁକ୍ତ ନୀଳ ପଥ ।

ଅପୂର୍ଣ୍ଣ ମୁଁ ଖୋଜେ ମୋର ମଧୁର ପୂର୍ଣ୍ଣତା
ତୁମ ପାଇଁ ତେଣୁ ପ୍ରାଣେ ତୀବ୍ର ଏ ମମତା ।

## ତତ୍ତ୍ୱାନୁସଂଧାନ

କାହିଁକି ତୁମରେ ଖୋଜେ, ଅଜ୍ଞାତ, ଅଜ୍ଞେୟ ?
ହେ ଅତି ଅପରିଚିତ, ଦୂରଠାରୁ ଦୂର ?

---

(୧) ନିଡ଼ୋର – ବଂଧନହୀନ ।
(୨) ଯାହା ଭାବନାରେ ନାହିଁ – ଏପରି କିଛି, ଯାହା କଳ୍ପନାତୀତ

ଧରିବାକୁ କିପାଁ ଧାଏଁ, ଚିରେ ଯା ଅଧେୟ ? (୧)
ପରମ ସୂକ୍ଷ୍ମରେ ଖୋଜେ ମୁହିଁ ଘୋର ସ୍ଥୂଳ ?

ଖୋଜୁଛି ମୁଁ ସନ୍ଧାନର ମଧୁ ସମ୍ମୋହନେ,
ମନଭୃଙ୍ଗ ଅନ୍ୱେଷଇ ସତ୍ୟ-କୁସୁମରେ
ଅଚଞ୍ଚଳେ ଖୋଜୁଛି ମୁଁ ଧାବନ-ଗହନେ, (୨)
ଜୀବନର ଅର୍ଥ ଖୋଜେ ମରଣ-ମର୍ମରେ । (୩)

ଖୋଜେ ମୁଁ ପିଣ୍ଡର ଆତ୍ମା, ନେତ୍ରର ନେତ୍ରିମା,
ମର୍ମତଳେ ଉତ୍ସ ମର୍ମାନ୍ତିକ ଆନନ୍ଦର,
ଅଶ୍ରୁତଳେ ବିଶ୍ୱବ୍ୟାପୀ, ଅଶ୍ରୁର ମହିମା,
ବିକଳ ପ୍ରପଞ୍ଚ ତଳେ କାବ୍ୟ ସୃଜନର ।

ସେଇ ସତ୍ୟ, ମୋ ଈଶ୍ୱର; ସେଇ ଅନ୍ୱେଷଣ,
ସେଇ ଜ୍ଞାନ, ଯା ପାଇଁ ମୋ ବିକଳ କ୍ରନ୍ଦନ ।

## ଜୀବନ-ତାରକା

ଖୋଜେ ମୁଁ ଚକ୍ଷୁର ଚକ୍ଷୁ, ଶ୍ରୁତି ଶ୍ରବଣର,
ଯା'ର ସ୍ପର୍ଶେ ମାଟି ଦେହ ହୋଇଛି ଜୀବନ୍ତ,
ରସନାର ସ୍ୱାଦ ଯେହୁ, ବାଣୀ ବଦନର,
(୪) ଅନ୍ତର୍ବାସୀ ପ୍ରୟୋଜକ, ସଖା ସ୍ନେହବନ୍ତ ।

ଆଜି ଅନୁଭବେଁ, ଯେତେ ଲୀଳା ଜୀବନର,
ଯେତେ ସିଦ୍ଧି, ଭୋଗ, ସ୍ୱପ୍ନ, ଆଶା, ଅହଂକାର
ଆତ୍ମକେନ୍ଦ୍ରୀ ଅଭିନୟ ଯେତେ ଦି'ଦିନର
ଏ ଧରଣୀ ପୃଷ୍ଠେ – ମାତ୍ର କାରଣ ସେ ତା'ର ।

---

(୧) ଅଧେୟ – ଯିଏ ଧ୍ୟାନାତୀତ ।
(୨) ଏ ସଂସାର ଦୌଡ଼ାଦୌଡ଼ିର ଏକ ଜଙ୍ଗଲ । ଆମେ ପ୍ରତ୍ୟେକେ ଧାଇଁଛୁ । ଏହି ଧାବନରେ ଗହନ ବା ଜଙ୍ଗଲରେ ଯିଏ ଅଚଞ୍ଚଳ ବା ସ୍ଥିର, ତାକୁଇ ମୁଁ ଦେଖୁଛି ।
(୩) ଏ ଜୀବନ ବା ସଂସାର କେବଳ ମୃତ୍ୟୁମୟ । ମୃତ୍ୟୁ ବା ବିନାଶରେ ସମସ୍ତ ଶେଷ । ସେହି ମୃତ୍ୟୁର ମର୍ମତଳେ ମୁଁ ଜୀବନର ସତ୍ୟ ଖୋଜୁଅଛି ।
(୪) ଅନ୍ତର୍ବାସୀ ପ୍ରୟୋଜକ – ଯିଏ ଆମ ଅନ୍ତରରେ ରହି ଆମକୁ ପରିଚାଳିତ କରାଏ ।

'ମୁଁ ଅଛି'ର ଏକମାତ୍ର ଅର୍ଥ 'ଅଛନ୍ତି ସେ'
ତାଙ୍କରି ବିଦାୟ ପରେ ସବୁ ଅବସାନ,
ତାଙ୍କରି ଖେଳାରେ ସବୁ 'ମୁହିଁ' 'ମୋର' ଦିଶେ –
ଲୀଳା ପାଇଁ ପଙ୍କେ ପୋତିଛନ୍ତି ଅହଂଜ୍ଞାନ ।

ମୁଁ ଛାୟା, ସେ ବସ୍ତୁ; ମୁହିଁ ବାଦ୍ୟ ସେ ବାଦକ,
ଖୋଜେଁ ସେହି ମୋ ଜୀବନ-ରଥର ବାହକ ।

## ଚିର-ଅନ୍ୱେଷଣ

ତମେ ରହ ଚିରକାଳ ରହସ୍ୟ, ଅଜ୍ଞାତ
ମୁଁ ହେବି ଆଶାୟୀ, ତବ ମୁଗ୍ଧ ଅନ୍ୱେଷକ;
(୧) ଯେଣୁ ଜାଣେ ଜ୍ଞାତ ହୁଏ କ୍ରମେ ଅବଜ୍ଞାତ,
ଏ ପ୍ରେମରେ ଥାଏଁ ଚିର ମୁଁ ଅଭିସାରକ ।

ଦୈନନ୍ଦିନ ଜୀବନର ସହସ୍ର ଜଞ୍ଜାଳେ
ଚାହେଁ ନା ମୁଁ ହେବ ଆଉ ଏକ ଉପାଦାନ,
ଖାଦ୍ୟ-ବସ୍ତ୍ର-ଚିନ୍ତାଯୁକ୍ତ ପ୍ରାଣୀ-ପରିବାରେ
ନେବ ତମେ ଏକ କୋଣେ ଦତ୍ତ ଏକ ସ୍ଥାନ ।

ହେ ନାଥ, ସମ୍ରାଟ୍ ଏଇ ନିଖିଳ ବିଶ୍ୱର,
ଚାହେଁନା ମୁଁ ହେବ ମମ-ସାଧନା-ସୀମିତ,
ତୁମ ଲାଗି ସୁଖେ ନେବି ଜନ୍ମଜନ୍ମାନ୍ତର
ଲୋକେ ଲୋକେ ଖୋଜୁଥିବି ତୁମର ଇଙ୍ଗିତ ।

ସତ୍ୟ ବୋଲି ଜାଣିଲେହେଁ ରହ ହେ ଅଜ୍ଞାତ,
ସନ୍ଧାନର ସୁଖ ପାଏଁ ଜନ୍ମେ ଜନ୍ମେ ନାଥ !

## ଜନ୍ମ-ଜନ୍ମାନ୍ତର

ଜନ୍ମେ ଜନ୍ମେ କରିଛି ଯା' ଯେତେ ଅନ୍ୱେଷଣ
ତୃପ୍ତି ଖୋଜି ଏଣେତେଣେ ଧାଇଁଥିବି, ଯାହା

(୧) ଏ ପଂକ୍ତିର ଭାବାର୍ଥ ଓଡ଼ିଆ ପ୍ରବାଦ – 'ଅତି ପରିଚୟେ ଗୌରବ ନଷ୍ଟ ।' ଇଂରାଜୀ ପ୍ରବଚନ – Familiarity breeds contempt; ତେଣୁ ଆତ୍ମା ଚିରକାଳ ଅନ୍ୱେଷକହିଁ ରହିବାକୁ ଚାହେଁ ।

ବାସନାର ଚରିତାର୍ଥେ ଯେତେକ ସାଧନ,
ସେସବୁ ହେ ନାଥ, ତୋତେ ଖୋଜିବାର ରାହା ।

ଧନେ, ମାନେ, ଯଶେ, କାନ୍ତ-କାମିନୀନୟନେ,
ହେ ପ୍ରିୟ, ତୁମରେ ସିନା ଖୋଜିଛି ମୁଁ ଚିର,
ଚୁମ୍ବିଛି ସୁନ୍ଦର ତତେ ଆନର ଆନନେ
ନାନା ଦୁଃଖେ ତୋ ଲାଗିହିଁ ଢାଳିଅଛି ନୀର ।

ରୁଦ୍ଧ ଜୀବ ନାନା ପଥେ ଖୋଜିଅଛି ବାଟ --
କାହିଁ ସେ ପାଇବ ତା'ର ତୃପ୍ତି ଅପହୃତ,
ଆଘାତିଛି ଖୋଲିବାକୁ ଅଗଣ କବାଟ,
କିଏ ତାକୁ ଦେବ ସେହି ବିସ୍ମୃତ ଅମୃତ ।

ନାନା-ଫୁଲ-ମାଳା ମୋର ଜନ୍ମ-ଜନ୍ମାନ୍ତର,
ଭେଟିବାକୁ ଶେଷ-ଦେଖା-ବେଳେ ମୋ' ପ୍ରିୟର ।

## କସ୍ତୁରୀ ମୃଗ

ଭ୍ରମି ଭ୍ରମି କ୍ଳାନ୍ତ ମୁହିଁ ଆନନ୍ଦ ସନ୍ଧାନେ
ଆଜି ଦେଖେ ହତଭାଗ୍ୟ, ଉତ୍ସ ଆନନ୍ଦର
ଆପଣା ଅନ୍ତରେ ସ୍ଥିତ, ଆବୃତ ଅଜ୍ଞାନେ
ସର୍ବ-ଅନୁଭୂତି-ମୂଳ, ପରମ ସୁନ୍ଦର ।

ଗନ୍ଧ ଲୋଭେ ଧାଇଁ ଧାଇଁ ବାଟେ ଅବାଟରେ
ଆଜି ଅନୁଭବେଁ, ଅଛି ମହାର୍ଘ କସ୍ତୁରୀ
ମୋର ନିଜ ଅନ୍ତସ୍ଥଳେ, ବୃତ ରହସ୍ୟରେ
ଜାଣି ମଧ୍ୟ ଭୁଲିଥିଲି ଯା ଗନ୍ଧ-ମାଧୁରୀ ।

ଆଜି ଯେ ପାଇଛି ଶେଷେ ତୁମର ସଂଧାନ
ଅନ୍ତସ୍ଥିତ ମୁକ୍ତାକଣ ସଚ୍ଚିଦାନନ୍ଦର –
ଦିଅ ପୂର୍ଣ୍ଣ ଅନୁଭବ, ନିଖିଳ ଆଘ୍ରାଣ
ଦେହେ ପ୍ରାଣେ କରୁ ତବ-ଆସ୍ୱାଦେ ଜର୍ଜର ।

ତୁମ ଜଳେ ଅବଗାହି ଆନନ୍ଦ-ଉତ୍ତମ, (୧)
ସକଳ-ଆନନ୍ଦ-ସ୍ୱାଦ ପାଉ ମୋ ମରମ ।

(୧) ଆନନ୍ଦ-ଉତ୍ତମ – ସର୍ବୋତ୍ତମ ଆନନ୍ଦ ବୋଲି ଈଶ୍ୱରଙ୍କୁ ସମ୍ବୋଧନ କରାଯାଇଛି ।

# ଅଧଃପତନ

ସୁପର୍ଣ୍ଣ ପରିରେ ମୁହିଁ ଉଠେ ବେଳେବେଳେ
ଧରା ତେଜି ଅନ୍ତରୀକ୍ଷେ ସୁଧା ଆହରଣେ
ଫିଙ୍ଗି ଏ ଧରାର ସବୁ ପ୍ରଲୋଭନ ହେଳେ,
ଅନୁଭବି ମୁକ୍ତି-ସୁଖ ସେ ଉଦାର କ୍ଷଣେ ।

ପଡ଼ିରହେ ପରିତ୍ୟକ୍ତ ବାସନା ଜଞ୍ଜାଳ,
ଆଘ୍ରାଣେ ମୁଁ ଦେବଲୋକ-ନିର୍ମଳ-ସମୀର
ଶିରାରେ ଶିରାରେ ହୁଏ ପୁଲକ ସଞ୍ଚାର,
ନେତ୍ରୁ ଝରେ ସିଦ୍ଧାର୍ଥର ବିଶୁଦ୍ଧ ସଲିଳ ।

ସହସା ମୁଁ ଅନୁଭବେ ଖସିବା ଭୂତଳେ,
ପୁଣି କ୍ଷଣିକର ଲାଗି ଧ୍ୟାନ, ଅଭିମାନ,
କାହାର ଅଦୃଶ୍ୟ ରଜ୍ଜୁ ଟାଣେ ମୋ ପୟରେ ?
କେ ସହି ନ ପାରେ ମୋର ସ୍ୱର୍ଗ ଅଭିଯାନ ?

ଦିଅ ବଳ ମୋର ପକ୍ଷେ, ଉଡ଼ି ବିହାୟସେ,
ଯୁଗ ଯୁଗ ଖୋଜୁଥିବି ତୁମରି ପରଶେ ।

# ଜୀବହଂସ

ଜୀବ-ହଂସ ଖାତେ ମଣି ସୁଧାର ସାଗର,
ମଳ-ଜଳେ ଉତ୍ସାହିତେ ମଜ୍ଜାଇଲୁ ମନ,
ସେହି କ୍ଷୁଦ୍ରେ ରହି ବୁଡ଼ି, କ୍ଷୀଣାୟିଲୁ ବଳ,
ପଙ୍କକୀଟ ହେଲା ତୋର ପରମ ଭୋଜନ ।

ସୁନ୍ଦର ଧବଳ କାନ୍ତି କଲୁ ରେ ମଳିନ,
ସଂଗ୍ରାମେ ମାତିଲୁ ସେହି ପଙ୍କ-କୀଟ ପାଇଁ,
ପଲ୍ୱଳ ଦାବିରେ ତୋର କଟିଗଲା ଦିନ,
ତା'ଠୁଁ ସ୍ୱାଦୁ କିଛି ନାହିଁ ବୋଲି ପରା ଧ୍ୟାୟି ।

ମାତିରହି ମୂଢ଼ତାର ସଦ୍ୟ ସମାଧାନେ,
ଭୁଲିଯାଇ ଚିରନ୍ତନ, ଭୁଲି ପୂର୍ବ, ପର;
ମିଥ୍ୟାକୁ ସଜାଇ ପୂଜା କଲୁ ସତ୍ୟ ସ୍ଥାନେ,
ଅପଦାର୍ଥେ ମନେକରି ଜୀବନ-ସମ୍ବଳ ।

ଉଠ ହଂସ, ଦିଅ ଝାଡ଼ି ମୂଢ଼-ବିସ୍ମରଣ,
ଉର୍ଦ୍ଧ୍ୱେ ଉଡ଼ି ବିରାଟର କର ଆସ୍ୱାଦନ ।

## ଜନ୍ମେ-ଜନ୍ମାନ୍ତର

ପ୍ରାଚୀନ ନିର୍ମୋକ ଯେହ୍ନେ ଛାଡ଼ଇ ଉରଗ,
ବନସ୍ପତି ଝାଡ଼େ ପତ୍ର ବସନ୍ତ ଆଗମେ,
ପକ୍ଷ ଝାଡ଼େ ଜଳଲେପ ସଲିଳ-ବିହଗ,
ବୀଜତ୍ୱକ୍ ନଷ୍ଟ ଯେହ୍ନେ ଉଦ୍ଭିଦ ଜନମେ;

ସେମିତି ଅତୀତ ମୋର କରିବି ନିକ୍ଷେପ,
ମସିମୟ ଜୀବନରେ ଦେବି ଜଳାଂଜଳି,
ଗତ ଜୀବନର ମିଥ୍ୟା-ଚିକ୍‌କଣ ପ୍ରଲେପ,
ନିନ୍ଦା, ସ୍ତୁତି, ଭୟ, ଆଶା, ସ୍ୱପ୍ନେ ଦେବି ବଳି ।

ନବାଂଗ ଉରଗ ହୁଏ ତେଜି ନିର୍ମୋକରେ
ପତ୍ର ଝାଡ଼ି ବୃକ୍ଷ ଧରେ ନବ ଯଉବନ
ଜନ୍ମାନ୍ତର ଗଢ଼ିଉଠୁ ଅତୀତ ଭସ୍ମରେ,
ଜନନୀ, ଦିଅ ଗୋ ମତେ ନବ ଦେହ, ମନ ।

ତବ ସ୍ପର୍ଶେ ଏକ ଜନ୍ମେ ବହୁ ଜନ୍ମାନ୍ତର
ହେବାର, ପ୍ରମାଣ ହେଉ ଏ ପ୍ରାଣ ଇତର ।

## ଦୁର୍ବଳର ଦଣ୍ଡ

ହୁଅନ୍ତି ଠିଆ ଯେ ଗିରି ପରିରେ ଅଟଳ
ତତ୍ତ୍ୱଜ୍ଞର ହସ ହସି ଧରା-ପ୍ରଲୋଭନେ,
ଗଢ଼ଇ କି ସେ ସଜନେ, ପ୍ରଭୁ ତୁମ୍ଭ କର,
ଗଢ଼ିଛି ଯା' ଏହି କ୍ଷୀଣ ଦୁର୍ବଳ ଜୀବନେ ?

ମେରୁଦଣ୍ଡହୀନ ଜୀବ, ଚିର ନମନୀୟ
ନଇଁଛି ମୁଁ ସବୁ ଦୁଃଖେ, ସବୁ ପ୍ରଲୋଭନେ,
କରିଛିଁ ତା, ଭାବିଛି ଯା' ସର୍ବ-ନିନ୍ଦନୀୟ,
କର୍ତ୍ତବ୍ୟରୁ ଦୂରେଇଛି ଉଚିତ ଲଗନେ ।

ଗଢ଼ିଲ ଈଶ୍ୱର, ଧରା ପ୍ରଲୋଭନେ ଭରି
ଜୀବେ ପୁଣି କରିଅଛ ଅଜ୍ଞାନ, ଦୁର୍ବଳ,
ଦଣ୍ଡ ପୁଣି ଦିଅ ତାରେ କେଉଁ ଦମ୍ଭ ଧରି ? –
ସଂଗ୍ରାମ ହିଁ ଯା' ଜୀବନେ ଏକାନ୍ତ ସମ୍ବଳ !

ଗାଭୀ ଚାଟି କରେ ଠିଆ ନବ ବତ୍ସତର,
ତେହ୍ନେ ପଙ୍ଗୁ ଦେହେ ବାଜୁ ତବ କୃପା-କର ।

## ମାତା ଓ ଶିଶୁ

ଜନନୀ ଅଦର୍ଶମାନେ ସ୍ତନଂଧୟ ଶିଶୁ
ନିଶୀଥେ ବିଳପେ ଯେହ୍ନେ ମାତା ସ୍ପର୍ଶ ପାଇଁ,
ହେ ମହାଜନନୀ, ସୃଷ୍ଟି-ସତ୍ୟ-ତତ୍ତ୍ୱ-ଭିକ୍ଷୁ
ତେସନେ ଏ ପ୍ରାଣେ ମୋର ଶାନ୍ତି ମାତ୍ର ନାହିଁ ।

ଜୀବନର ମହାବନେ ଭ୍ରାନ୍ତି-ଅନ୍ଧକାରେ
ଅଣ୍ଡାଳି ହେଉଛି ପ୍ରାଣ ପଥ, ଲକ୍ଷ୍ୟ ଲାଗି;
କାହିଁ ଅଛ ହେ ଜନନୀ, ପରାଣ ଚିତ୍କାରେ,
ଉଚ୍ଛନ୍ନ ଅନ୍ତର ମାତୃ-ସ୍ପର୍ଶ-ଅନୁରାଗୀ ।

ମାତା ଯେହ୍ନେ ଅସମ୍ଭାଳେ ଧାଏଁ ଯହିଁ ଥାଉ
ସନ୍ତାନର ଆର୍ତ୍ତବାଣୀ ପଶୁଁ ତା ଶ୍ରବଣେ,
ସ୍ତନ୍ୟ ଦେଇ ସ୍ନେହ ଢାଳେ ମୁଖେ ଚାହୁଁ ଚାହୁଁ,
ଦୁଇ ପ୍ରାଣ ଏକ ହୁଏ ପ୍ରୀତିର ବଂଧନେ ।

ନିଃସଙ୍ଗ, ଉଦ୍‌ଭ୍ରାନ୍ତ ପ୍ରାଣେ ହେ ମହାଜନନୀ,
ସେହି ସ୍ନେହ ଆଶା ଉଠେ ନିତ୍ୟ ପ୍ରତିଧ୍ୱନି ।

## ହୋମାଗ୍ନି

ଅଗ୍ନି ଜାଳି ରଖ ପ୍ରଭୁ, ପ୍ରାଣ ଅଭ୍ୟନ୍ତରେ
ବାହାରେ ଯା ଘଟୁ ପଛେ ଉତ୍‌ଥାନ ପତନ,
ରଖ ମୋ ଆସନ ପଛେ ସର୍ବର ପଛରେ,
ଭୁଲିବାକୁ ନ ଦିଅ ମୋ ଦୈବତ ଧରମ ।

ଯେ ଜ୍ୟୋତିରେ ଅଛ ଗଢ଼ି ଚନ୍ଦ୍ର, ସୂର୍ଯ୍ୟ, ତାରା
ତାହାରି କଣିକା ଥାପି ରଖିଛ ଅନ୍ତରେ,
ତାକୁ ଭୁଲି, ଭ୍ରମି ହେଲି ଏ ଜୀବନସାରା
ଆଲୋକ ଖୋଜିଲି ବୁଲି ସହସ୍ର ବର୍ମ୍ମରେ ।

ଚକ୍ଷୁ ମୋର ଦୃଷ୍ଟିବନ୍ତ ଘେନି ଯା'ର ଜ୍ୟୋତି,
ପାଣି, ପାଦ ଗତିବନ୍ତ, ବାଣୀବନ୍ତ ଜିହ୍ୱା,
ଅନୁଭବେଁ ସଦା ପ୍ରାଣେ ସେ ଆଲୋକ ଗୋଟି
ପ୍ରଜ୍ୱଳିତ ରଖ କ୍ଷୁଦ୍ର ବକ୍ଷେ ହୋମ-ନିଆଁ ।

ହେ ତେଜ, ହେ ମହାଜ୍ୟୋତି, ହେ ଅଗ୍ନି, ବିଦ୍ୟୁତ୍,
ତୁମର ଅଂଶ ଯେ ମୁହିଁ, ନ ହୁଏ ବିସ୍ମୃତ ।

## ତଳେ ତଳେ

ଜୀବନର ସୁଖ ଦୁଃଖ ଆଲୋକ ଅନ୍ଧାରେ
ମାନ ଅପମାନେ, ଚିର ଉତ୍ଥାନେ ପତନେ
ହେ ପିତ, ମୋ ଲକ୍ଷ୍ୟ ଥାଉ ଧ୍ରୁବ ତାରକାରେ
ପ୍ରାଣ-ଆକର୍ଷଣ, ଦୂର ପ୍ରଶାନ୍ତ ଗଗନେ ।

ବାହାରେ ଘଟୁ ଯା ପଛେ, ଗହନ ଅନ୍ତରେ
ହେ ପିତ, ରଖ ହେ ମତେ ଯାତ୍ରୀ ଚିରନ୍ତନ,
ଅଗ୍ରସର ଅହରହ ସେହି ସେ ପଥରେ
ଯା'ର ଶେଷେ ହେବ ସତ୍ୟ-ପୂର୍ଣ୍ଣ-ଦରଶନ (୧)

ଜଳପକ୍ଷୀ ତଡ଼ାଗରେ ଆହାର ବିହାର
କରି ଯେହ୍ନେ ଉଡ଼ିଯାଏ ଝାଡ଼ି ନୀର ପରୁଁ,
ହେ ପିତ, ସକଳ ଟାଣ (୨) କରି ପରିହାର
ଯାଉଥାଏଁ ଲୋକେ ଲୋକେ ନିତ୍ୟ ଲୋକାନ୍ତରୁ ।

ନାନା ଘାଟେ ଲାଗିଲେହେଁ ନୌକା ସାଧବର
ସମୁଦ୍ର-ବିହାର ଲକ୍ଷ୍ୟ ଥାଏ ତା ପ୍ରାଣର ।

---

(୧) ଯେଉଁ ଯାତ୍ରାର ଶେଷରେ ସତ୍ୟର ପୂର୍ଣ୍ଣ-ଦର୍ଶନ ଘଟିବ ।
(୨) ଟାଣ – ଯାହା ଟାଣିଧରେ ।

# ଦର୍ଶନ-ଗୌରବ

ତୁମର ଆସିବା-ଯିବା ବାଟେ ହେ ସମ୍ରାଟ୍
ତୁମ ଦୃଷ୍ଟିପାତ ପାଇଁ କରନ୍ତି କେ କେତେ
ଦେବାଳୟ, ମସଜିଦ୍, ପାନ୍ଥଶାଳା ଘାଟ,
ଦାନ, ଧର୍ମ, ତୀର୍ଥଯାତ୍ରା, ଯା'ର ଶକ୍ତି ଯେତେ ।

ଭିଖାରି ମୁଁ, ଏକମାତ୍ର ଲୋକ-ମୁଖୁଁ ଜାଣେ,
ଏଇ ପଥେ ସମ୍ରାଟ୍‌ଙ୍କ ଗମନାଗମନ,
ଭିକ୍ଷା ଭୁଲି ଠିଆହୁଏ ପଥେ ଏକ ସ୍ଥାନେ,
କିପରି ସମ୍ରାଟ୍, ଆହା, ହୁଅନ୍ତା ଦର୍ଶନ ।

ହେ କୋଟି-ଭୁବନପତି ନୁହେଁ ମୋ ବାସନା
ଅଟକିବ ରଥ ତବ ଅକିଞ୍ଚନ ପାଇଁ,
ତୁମେ ଯାଅ ତମ ପଥେ ମୋ ଆଡ଼େ ନ ଅନା,
ଭିଖାରି, କୁବେର ହେଉ ଅନାଇ ଅନାଇ ।

ପରମ ସୁଖଦ ଖାଲି ଚାହିଁବା ସୁନ୍ଦରେ,
ଚାହେଁନା, ଚାହୁଁ ସେ ମୋହପରି କୁତ୍ସିତରେ ।

# ତମ ଲାଗି

ମନହୁଏ ତମଲାଗି ଗତ ଜୀବନର
ନିର୍ମୋକ ଫିଙ୍ଗିଛି, ହେବି ନିର୍ମଳ, କୋମଳ,
ତମ ଲାଗି ଧୋଇଛି ମୋ କଳଙ୍କ ସକଳ
ଅନୁତପ୍ତ ନେତ୍ରଜଳେ, ମିଳନ-ଚଞ୍ଚଳ ।

ହେ ପ୍ରିୟ ଅନ୍ତରତମ, ହେ ଭୁବନେଶ୍ୱର,
ମୋର ମାଳା ଗୁନ୍ଥା ଯାହା ତବ ଭେଟି ପାଇଁ,
ପ୍ରତି ପୁଷ୍ପ ତହିଁ ଅଶ୍ରୁ-ଶିଶିର-ସଜଳ
ସୂତ୍ର, ନବ-ଜନ୍ମ, ମାଳାକାର ସୁଧାଶାୟୀ ।

ଅପେକ୍ଷିଛି ଖୋଲି ହୃଦ-ଦ୍ୱାର-ବାତାୟନ
କେବେ ଆସି ନେବ ମୋର ଜୀବନୋପହାର,
ମୁହୂର୍ତ୍ତେ ସାର୍ଥକ କରି ଯିବ ଏ ଜୀବନ,
ପରମ ପୂର୍ଣ୍ଣତା ନେବ କ୍ଷୁଦ୍ର ଅହଙ୍କାର ।

ଦ୍ୱିଧା, ଦୈନ୍ୟ ନାହିଁ ଆଉ, ଆଜି ମୋ ବିଶ୍ୱାସ
ତୁମରି ଲୀଳାହିଁ ମୋର ମିଳନ-ପ୍ରୟାସ ।

## ଭ୍ରାନ୍ତିମୟ ଜୀବନ

ବହୁ ବେଳେ ଭାବେ ନାଥ, ମୋର ଏ ଜୀବନ
ବିଅର୍ଥେ ବିତିଲା ଅବା । କି ଲକ୍ଷ୍ୟ ପୂରଣେ
ଜନ୍ମିଲି ଏ ଧରାଧାମେ ? କିବା ପ୍ରୟୋଜନ
ଅଲକ୍ଷ୍ୟେ ଭରିଲି ତବ ବିଶ୍ୱ ସଂଗଠନେ ?

ପଶ୍ଚାତେ ଅନାଇଁ ଦେଖେଁ ଆସିଥିବା ବାଟେ
ଖାଲି ଭ୍ରମପ୍ରମାଦର ଶତ ଖତଗଦା,
ନଉକା-ଭିଡ଼ିବା ଖାଲି ମାୟା ଘାଟେ ଘାଟେ,
ଫେରା-ପଥେ କାନ୍ଦେ କାନ୍ଦେ ଅନୁତାପ ନଦୀ ।

ଖୋଜୁଛି ମୁଁ କାହିଁ ମୋର ସାଫଲ୍ୟ-ସଂଚୟ
ପୌରୁଷର କୃତାର୍ଥତା ? ଅର୍ଥ ଜୀବନର ?
ଚେତନା କେବଳ ଶୂନ୍ୟ, ଅବା ହାହାମୟ
ମଳୟ-ମୌସୁମୀ-ହୀନ ମୋର ସମ୍ବତ୍ସର ।

ଅନ୍ତରେ କେ କହେ ଯେହ୍ନେ "ଶାନ୍ତି ଶାନ୍ତି ଶାନ୍ତି,
ଦିନ ପୂର୍ବେ ରାତ୍ରି ସମ, ଜ୍ଞାନ ପୂର୍ବେ ଭ୍ରାନ୍ତି ।"

## ଉଚ୍ଛୃଙ୍ଖଳ

ହେ ନାଥ, ଚଳାଅ ବିଶ୍ୱ ଅଲଘ୍ୟ ନିୟମେ
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ପାବକ, ପବନ,
କାହାରି ଉତ୍‌ପଥ ହେବା ଦେଖା ନାହିଁ କ୍ଷଣେ,
ସର୍ବ କରେ ତବ ବିଧି ଶ୍ରେଷ୍ଠ ଆଭରଣ ।

ମୁଁ କି ତବ ସୃଷ୍ଟି-ଛଡ଼ା ? ଏ ମୋର ଜୀବନ
କିପାଁ କଲ ଉଚ୍ଛୃଙ୍ଖଳ, ବିଚ୍ଛିନ୍ନ, ବିକଳ,
ନାହିଁ ଏଥି ନିୟମର ନିଖୁଣ ସୀବନ,
ଅବା ତପସ୍ୟାର ପୁଣ୍ୟ ସ୍ରୋତ ଶୁଭଙ୍କର ।

ନାନା ଲକ୍ଷ୍ୟେଁ ଲକ୍ଷ୍ୟଭ୍ରଷ୍ଟ, ଆଜି ଚାହେଁ ପ୍ରାଣ
ଶୁଦ୍ଧ, ସନାତନ ସୁଖ ଐକାନ୍ତିକତାର,
ଯୁଗ-ଯୁଗ ଧରି ଏକ-ମୁଖେଁ ସୁଧା-ପାନ
ଅବା ଯୋଗୀ, ଗାଇ ଗୁଣ ସେ ଏକତମାର ।

ସର୍ବଦ୍ୱାର ରୁଦ୍ଧି ମୋତେ ଏକମୁଖୀ କର
ଆଲୋକୁ ଏକଇ ତାରା ମୋ ସର୍ବ ଅମ୍ବର ।

## ମାତାର ଦୁଃଖ

ଜୀବନର ଆନନ୍ଦରେ ଉନ୍ମତ୍ତ ସର୍ବ ନାରୀନର,
ଆନନ୍ଦ ଯା' ଯାତନାର ମାତ୍ର ତ୍ୱକ୍-ମଧୁ ଆବରଣ –
ସ୍ୱପ୍ନର ପ୍ରତୀତି ପରି ଏ ଜୀବନ-ସମ୍ଭୋଗ ଚଞ୍ଚଳ
ପଳାୟିତ ଭୋଗ ପାଇଁ ରଣାକୀର୍ଣ୍ଣ ଧରାର ପ୍ରାଙ୍ଗଣ ।

ଧରାବାୟୁ ଧୂମାକୁଳ ଦ୍ୱେଷ, ଈର୍ଷା, ଦ୍ୱନ୍ଦ୍ୱ, ଛଳନାରେ
ସିନ୍ଧୁ-ମତ୍ସ୍ୟ ସମ ସର୍ବେ ଜୀବନର ଲବଣ-ସଲିଳେ,
ତୁଷ୍ଟ, ମୁଗ୍ଧ, ଈର୍ଷାନ୍ୱିତ, ଦ୍ୱନ୍ଦ୍ୱ-କ୍ଷିପ୍ତ ତାକୁ ଭୋଗିବାରେ,
ଜୀବନାଭିଭୂତ ସର୍ବେ, କେ ପଚାରେ ଜୀବ-ଜନନୀରେ ।

ଏ କାଳେ ଜନନୀ ଆସି କେଉଁ ଭାଗ୍ୟଧରର କୁଟୀରେ
ନେତ୍ରୁ ତା'ର ନୀର ପୋଛି ପଚାରନ୍ତି ପରମ କଲ୍ୟାଣେ,
"ହତଭାଗ୍ୟ, ଦିନେ ହେଲେ ସ୍ମରିଲୁନି ଏଇ ଦୁଃଖିନୀରେ
'ମାଆ' ଡାକ ଶୁଣିବାକୁ ଅଛି ପରା ଅତନ୍ଦ୍ରିତ ଧ୍ୟାନେ ?"

ରବିଜାତ ମେଘ ଯେହ୍ନେ ରବି-ବିମ୍ବ କରେ ଆଚ୍ଛାଦନ,
ଜୀବ, ଜୀବମାତା ମଧ୍ୟେ ବ୍ୟବଧାନ ବାଢ଼ିଛି ଜୀବନ ।

## କ୍ଷୁଦ୍ର ପ୍ରୀତି

ଜାଣେ ମୁଁ ଯେହେତୁ ତୁମ୍ଭେ ବିରାଟ ବିପୁଳ,
ବିପରୀତେ ଭଲପାଅ, କ୍ଷୁଦ୍ର ନଗଣ୍ୟରେ,
ଗଭୀର ଅରଣ୍ୟେ ଯହିଁ ଫୁଟୁ ଛୋଟ ଫୁଲ
ତୁମ୍ଭର ବିରାଟ ସୂର୍ଯ୍ୟ ସେବା ତା'ର କରେ ।

ବାଟେ ଯାଉଁ ଗୋଟାଇଲି କ୍ଷୁଦ୍ର ପକ୍ଷୀ-ପର –
କି ଚିକ୍କଣ ନାନା ବର୍ଣ୍ଣେ, କେମନ୍ତେ ଚିତ୍ରଣ !
କୋଟି କୋଟି ମହାବିଶ୍ୱ ରଚେ ଯେଉଁ କର
ସେ ପୁଣି କରଇ ଏହି ବାଳକ-କ୍ରୀଡ଼ନ ?

ସେଇ ତ ଭରସା ମମ । ରାଜରାଜେଶ୍ୱର,
ଅଟ ତୁମ୍ଭେ; ହୀନତମ, ମୁଁ ଅଜ୍ଞାନତମ,
ପଡ଼ିଛି ଅଜ୍ଞାତ କୋଣେ ବିରାଟ ବିଶ୍ୱର;
କିନ୍ତୁ ଆଶା, ପାଇବି ମୁଁ ପରଶ ପରମ ।

କେବେହେଲେ କରି ପୃଷ୍ଠେ ଅଙ୍ଗୁଳି ସଂଚାର
ହେ ବିରାଟ, ମାନ ରଖ ମୋର କ୍ଷୁଦ୍ରତାର ।

## ଈଶ୍ୱର ସାଧାରଣ

ହେ କୋଟି ଭୁବନେଶ୍ୱର, ଜ୍ଞାନୀ ଯୋଗୀ ଜନେ
ଜାଣେ ନା କି ରୂପ ତବ ଦେଖନ୍ତି ମନନେ,
ଜାଣୁଛି ଏତିକି ମାତ୍ର ହେ ବିରାଟତମ
କ୍ଷୁଦ୍ରେ, ସାଧାରଣେ ତବ ପ୍ରକାଶ ପରମ ।

ଅନନ୍ତ ସମୁଦ୍ର ଅବା ଉତ୍ତୁଙ୍ଗ ଭୂଧର –
ତହିଁ କି କେବଳ ତବ ପ୍ରିୟ ଅଧିଷ୍ଠାନ ?
ଖାଲି କି ତାରକାମୟ ମହା ନୀଳାମ୍ବର,
ତବ ମହା ବିଭୂତିର ପ୍ରତୀକ ମହାନ ?

କବି କିନ୍ତୁ ଦେଖେ ନିତ୍ୟ ହେ ମହାମହିମ
ତୁମରେ ଜନନୀ-ସ୍ନେହେ, ତନୟା-ତନୟେ,
ଛୋଟ ଫୁଲେ କି ପ୍ରକାଶ ତୁମର ଅସୀମ,
ଆମ ନିତ୍ୟ-ହାସ-ଅଶ୍ରୁ ତମ କଥା କହେ ।

ବିରାଟୁ ବିରାଟ ଯେହୁ କଳ୍ପନାର ପାରେ,
'ମୁହିଁ ତାଙ୍କୁ ଜାଣେ' ବୋଲି ଘାସ କହିପାରେ ।

## ପୁଣ୍ୟ ସ୍ପର୍ଶ

ଦୀର୍ଘ ଘନୀଭୂତ ହିମ ଚଣ୍ଡାଂଶୁ କିରଣେ
ସହସା ଦ୍ରବଇ ଯେହ୍ନେ, ଦୀର୍ଘ ଅନ୍ଧକାର

ଆଲୋକର ଆବିର୍ଭାବେ ମିଳାଏ ଆପଣେ,
ଗ୍ରୀଷ୍ମାର୍ତ୍ତ ହରଇ ଯେହ୍ନେ ପ୍ରଥମ ଆସାର ।

ଜନନୀ, ତୁମ୍ଭର ସ୍ପର୍ଶ ଏ ମୋର ଜୀବନେ
ସେହିପରି ଆଣୁ ତୂର୍ଣ୍ଣେ ନବ ଜନ୍ମାନ୍ତର,
ତୁମ୍ଭର ଚରଣପାତେ ମୋ ଦୀନ ପ୍ରାଙ୍ଗଣେ
ସହସ୍ର ମାଣିକ୍ୟ ଦୀପ ଜଳୁ ଆନନ୍ଦର ।

ପ୍ରଭୂତ ପ୍ରମାଦଭରା, ବହୁ ଭ୍ରାନ୍ତିମୟ,
ତୁଚ୍ଛ ନୀଚ-ଅଜ୍ଞତାର ଅନ୍ଧାରେ ଲଜ୍ଜିତ,
ସହସ୍ର ସ୍ଖଳନ ସାଥେ ହୀନ ପରାଜୟ —
ଏଇ ମୋର ଜୀବନର ସାମାନ୍ୟ ସଂଚିତ ।

ବୀଜପାତେ ଆବର୍ଜନା ସ୍ୱର୍ଣ୍ଣଶସ୍ୟ ଧରେ
ନିନ୍ଦିତ, କୃତାର୍ଥ ହେଉ ତବ ପରଶରେ ।

## ଅମୃତତ୍ୱ ଲୋଡ଼ା ନାହିଁ

ମାଗେ ନା ମୁଁ ଅନ୍ଧକାରୁ ଯିବାକୁ ଆଲୋକେ,
ମୃତ୍ୟୁ ତେଜି ଅମୃତର ଆଶାୟୀ ସନ୍ଧାନେ, (୧)
ଅସତ୍ୟ ଏ ଧରାମାଟି ତେଜି ସତ୍ୟଲୋକେ,
କ୍ଷଣିକର ମାୟା କାଟି, ଶାଶ୍ୱତ ବିଧାନେ ।

ହେ ପିତ, ପ୍ରଦୀପ୍ତ କର ଏଇ ଅନ୍ଧକାର,
ଏଇଠାରେ ଜାଳ ତବ ପ୍ରଜ୍ଞାର ବର୍ତ୍ତିକା,
ଏଇ କ୍ଷଣିକରେ କର ଶାଶ୍ୱତ ସଂଚାର,
ସୁନା ହେଉ ଧରଣୀର ଏ ତୁଚ୍ଛ ମୃତ୍ତିକା ।

ଅଜ୍ଞାତ-ଦୂରରେ ନାହିଁ କର ପ୍ରଲୋଭନ, (୨)
ଏଇ ତୁଚ୍ଛ ନିକଟରେ ହୁଅ ପ୍ରତିଭାତ,
ପତିତ, ଦୁଆରେ ଭେଟୁ ପତିତପାବନ,
ମାୟା ଦେଇ ସତ୍ୟ ତବ ହେଉ ଆତଯାତ ।

---

(୧) ଅମୃତର ଆଶାୟୀ ସନ୍ଧାନେ — ଅମୃତର ଆଶାକରି ଯେଉଁ ଅନ୍ୱେଷଣ କରାଯାଏ ।
(୨) ଅନେକ ସମୟରେ ଯାହା ଅଜ୍ଞାତ ଓ ଦୂର ତାହାହିଁ ଆମକୁ ଆକର୍ଷଣ କରେ । ଏଠାରେ ଆତ୍ମାକୁ ଅଜ୍ଞାତ-ଦୂର ଦ୍ୱାରା ନ ଭୁଲେଇବାକୁ କୁହାଯାଉଛି ।

ଅମୃତତ୍ୱ ଲୋଡ଼ା ନାହିଁ ପ୍ରତ୍ୟେକ ମୃତ୍ୟୁରେ
ଯଦି ଫୁଲ ହୋଇ ଫୁଟେ ଜୀବନର କୂଳେ ।

## ତୃତୀୟ-ନେତ୍ର

ଏ ଭରସା ନାହିଁ ମମ, କେବେ ତମେ ଆସି
ମୋ ପାଶେ, କୁଶଳ-ମନ୍ଦ ସସ୍ନେହେ ଜିଜ୍ଞାସି
ଶ୍ରୀହସ୍ତେ ପୋଛିବ ଅଶ୍ରୁ, ଭାଙ୍ଗି ଅଭିମାନ,
ଅବା ଯୁଦ୍ଧ-କ୍ଷତ ଧୋଇ, ଦେବ ମୋତେ ଟାଣ (୧)
ତା'ର ମୁଁ ଭାଜନ ନୁହେଁ । ମୁଁ ମାଗଇ ଖାଲି
ତୃତୀୟ-ନୟନ ଦିଅ ହେ ବିଶ୍ୱ-ନୟନ,
ନ ହେବି ଜୀବନ-ବନ-ଅନ୍ଧାରେ ଅଣ୍ଡାଳି,
କରିବି ସତ୍ୟର ମୁଖ ପ୍ରତ୍ୟକ୍ଷ ଦର୍ଶନ ।
ଆଲୋକେ ଘେନି ଯା' ମତେ, ନାଶି ଅନ୍ଧକାର
ଏ ମୋର ପ୍ରାର୍ଥନା ନୁହେଁ । ଏ ଭ୍ରାନ୍ତି-ତାମସ
କିପାଁ ଆସେ, ଏ ତତ୍ତ୍ୱ ମୋ ଚେତନେ, ସଂଚ୍ଚାର, (୨)
ଜୀବନେ ଦେଉଛ ଯାହା, ବୁଝାଅ ତା' ରସ ।
ମୋ ଭାର ମୋ ସ୍କନ୍ଧୁ ତମେ ନେବା ମୁଁ ନ ମାଗେ
ଭାରର ତାତ୍ପର୍ଯ୍ୟ-ବୋଧ ମାଗେ ତବ ଆଗେ ।

## ଗୁପ୍ତ ପ୍ରଣୟ

ଦିବାଲୋକେ, ଜନସଂଘେ, ସଂସାର ଗହଳେ
ତମେ ଆସି ମତେ କେବେ ନ ପକାଅ ଧରା,
କହିବେ ପାଗଳ ମତେ, ହସିବେ ସକଳେ,
ଗୋପନେ ଭେଟିବ ତେଣୁ ପ୍ରଣୟ-ପସରା ।
ମୁଁ ଚାହେଁ ଆସିବ ତମେ ଗଭୀର ନିଶୀଥେ
ଦ୍ୱିତୀୟ ନ ଥିବେ, କାଳେ ଶୁଣିବେ, ଦେଖିବେ,

(୧) ଟାଣ – ଏଠାରେ ସାମର୍ଥ୍ୟ, ଦମ୍ଭ ।
(୨) ସଂଚ୍ଚାର – ସଞ୍ଚାର କର ।

ହୃଦ-ବଧୂ ଥିବ ଚାହିଁ, ଆଶଙ୍କିତ ଚିତ୍ତେ
କେ ଜାଣେ ତା'ପ୍ରିୟ ଦ୍ୱାର ଆସି ଆଘାତିବେ ।

ଯଦି ଆସ, ଅନ୍ଧୀଭୂତ ଆନନ୍ଦ ସଲିଳେ
ନାହିଁ ସେ ପାରିବ ଦେଖି, ପରଶ ତମର
ଦିଅ ତାକୁ, କର ଚାଳି ମସ୍ତକେ ସଧୀରେ,
କହିବ "ଆସିବି ପୁଣି" ପ୍ରାନ୍ତେ ଶ୍ରବଣର ।

ତମ ସାଥେ ଚାହେଁ ଏହି ଗୋପନ ପ୍ରଣୟ,
ପ୍ରକାଶ୍ୟରେ ତମ ସଙ୍ଗ ବିଭୀଷିକାମୟ ।

## ଅନ୍ତର ଆରାଧନା

ବିଦ୍ୟୁତ୍‌ଗର୍ଭ ମେଘ ସମ, ବାସ-ଗର୍ଭ କଳି (୧)
ବୃକ୍ଷ-ଗର୍ଭ ବୀଜ ସମ ଶୂନ୍ୟାସ୍ପର୍ଦ୍ଧ, ସ୍ଥିର (୨)
ହେ ଜନନୀ, ଗର୍ଭେ ଭରି ତତେ ସେହିପରି
ବଞ୍ଚିବାକୁ ଚାହେଁ କାଳ, ପୃଷ୍ଠେ ଧରଣୀର ।

ମାନ, ପଦ, ଅଭିମାନ, ଗୌରବ ସମାଜେ
ଲୋଡ଼ା ନାହିଁ, ଅୟୁତର ସଙ୍ଗତେ ଏକକ
କର୍ମ ମୋର କରିଯାଏଁ ଅକୁଣ୍ଠେ, ଅଲାଜେ,
ଧୂଳିଖେଳେ ଗତ-ଚିତ୍ତ ଯେସନେ ବାଳକ ।

ସକଳ ସେ କର୍ମତଳେ, ସର୍ବ ଅନୁଭବେ,
ତମେ କିନ୍ତୁ ଜଳୁଥାଅ ହୃଦୟ-କନ୍ଦରେ,
ସକଳ କ୍ରୀଡ଼ାର ମଧ୍ୟେ, ସାଥୀ କଳରବେ,
ମାତାର ଆଶ୍ଳେଷ ସମ ଶିଶୁର ଅନ୍ତରେ ।

ବାହାରେ ସକଳ ନିନ୍ଦା, କଷ୍ଟ ଯାଏଁ ଭୁଲି
ଅନ୍ତରେ ପରଶି ତବ ସ୍ୱର୍ଣ୍ଣ ପଦଧୂଳି ।

---

(୧) କଳି – କୁସୁମ କଳିକା ।

(୨) ବୀଜ ନିଜ ଭିତରେ ଭବିଷ୍ୟତ୍‌ର ବିରାଟ ବୃକ୍ଷକୁ ଧାରଣ କରିଥିଲେହେଁ, ସେ ଥାଏ ନିରୀହ, ନିରହଂକାର । ଆତ୍ମା ନିଜ ଭିତରେ ମହା-ଜନନୀଙ୍କୁ ଧରି ମଧ୍ୟ ଆସ୍ପର୍ଦ୍ଧାହୀନ, ଅଚଞ୍ଚଳ ଭାବରେ ବଞ୍ଚିବାକୁ ଇଚ୍ଛାକରେ ।

# ଅନ୍ତରାଲୋକ

କେବଳ କେତୋଟି କ୍ଷଣେ ତବାନୁଭାବନା
ଜଞ୍ଜାଳ-ଜଡ଼ିତ ଦୀର୍ଘ-ଦିବସ-ରାତ୍ରିର,
କେବଳ କେତୋଟି ଦଣ୍ଡ ଗୁପ୍ତ ଚିହ୍ନା-ଜଣା
ଜନନେତ୍ର ଅନ୍ତରାଳେ – କରଇ ଅସ୍ଥିର ।

ହେ ପରମ, ହେ ନିକଟ, ହେ ଅନ୍ତରତମ,
ଖୋଜେ ଆତ୍ମା ତବ ସ୍ପର୍ଶ ଆଜି ଅହରହ,
ଅପେକ୍ଷିକା ସଦା, ନବ ପ୍ରଣୟିନୀ ସମ,
ଯେତେ ଲୋକ-କୋଳାହଳ, ସେତେ ତା' ବିରହ ।

ଶିଶୁ ଯେହ୍ନେ ନାହିଁ ଛାଡ଼େ ବକ୍ଷୁଁ ତା ପୁତଳି
ଭୋଜନେ, ଶୟନେ ଅବା ଗମନେ, କ୍ରୀଡ଼ନେ
ସେମିତି ତୁମରେ ମୁହିଁ ହୃଦୟରେ ଭରି
ଚାହେଁ ମୁଁ ଯାପିବି ଦିନ, ଏହି ଲୋକ-ବନେ ।

ଯାହା ମୁଁ କରଇ ପଛେ ଜନ-ନେତ୍ର ଆଗେ,
ଅନ୍ତର ଉଦ୍ଦୀପ୍ତ ରହୁ ତବ ସ୍ୱର୍ଣ୍ଣରାଗେ ।

# ଅଦାନ

ମନେ କି ରଖିଛ ନାଥ, କେତେ ଯେ ଭର୍ତ୍ସନା
କେତେ ନିନ୍ଦା, ଉପହାସ, ତାଚ୍ଛଲ୍ୟ, ବିରକ୍ତି
ଫିଙ୍ଗିଛି ମୁଁ ତବ ମାଥେ, ଦୂରେଇ ଅର୍ଚ୍ଚନା,
ବ୍ୟର୍ଥ ହେଉଁ ମମ ଛୋଟ ଛୋଟ ଅନୁରକ୍ତି ?
ଶିଶୁ ଯେହ୍ନେ ବିଳପନ୍ତି କାଠି କୁଟା ପାଇଁ,
କ୍ଷଣିକର ଲାଗି ତେହ୍ନେ ରୋଦିଛି ହେ ନାଥ;
ହସୁଥିବ ପରା ତୁମେ ଅନ୍ତରାଳେ ଥାଇ
ନୀରବରେ ସହି ମୋର ତିରସ୍କାର-ଘାତ !

ଆଜି କିନ୍ତୁ ଜାଣୁଛି ମୁଁ, ହେ କଲ୍ୟାଣମୟ
ରଖିଥାଅ ଶୁଭ-ବୀଜ ଘୋର ବିପତ୍ତିରେ,
ଜ୍ଞାନ ପାଇଁ ସୃଜିଅଛ ପ୍ରମାଦ, ସନ୍ଦେହ,
ମିଳନ ଆସ୍ୱାଦ ଥାଏ ବିରହର ନୀରେ ।

ଦାନ ପାଇଁ କରିଥାନ୍ତି ସ୍ତବନ ସମସ୍ତେ,
ନ ଦେଇଛ ଯାହା, ତାହା ପାଇଁ ମୁଁ ନମସ୍ତେ ।

## ସାମାନ୍ୟ ସଞ୍ଚୟ

ମୂର୍ଖ ନର ଅତି ଯତ୍ନେ ନିଜ ଇତିହାସ
କରେ ଲିପିବଦ୍ଧ; କ୍ଷୁଦ୍ର ତା'ର ଅହଂକାର
ଲଭେ ମୂଢ଼ ପରିତୋଷ, ଭାବି ଅବିନାଶ
ହେଲା ତା'ର ପଉରୁଷ । ହସେ ମହାକାଳ !

ହେ ଅନାଦି ମହାକାଳ, ଦନ୍ତେ ଦନ୍ତେ ତବ
କେତେ କୋଟି ସଭ୍ୟତାର ମରଣ ଆସ୍ୱାଦ,
ତବ ସ୍କନ୍ଧେ କେତେ ବ୍ରହ୍ମାଣ୍ଡର ଶୁଷ୍କ ଶବ,
ଅଦ୍ୟ-ମର ନର ନାହିଁ ରଖେ ସେ ସମ୍ବାଦ ।

ହେ ଶାଶ୍ୱତ, ତୁମ୍ଭର ଯେ ନାହିଁ ବର୍ତ୍ତମାନ,
ତୁମେ ଖାଲି ଭବିଷ୍ୟତ, ଅନାଦି, ଅତୀତ,
ତୁମେ ଖାଲି ଘଟଣାର ସ୍ରୋତ ବହମାନ,
କହ କାହିଁ ରଖିବି ମୋ ସାମାନ୍ୟ ସଞ୍ଚିତ ?

ତମେ ଜାଣ ନିଃସ୍ୱ ମୁହିଁ, କିଛି ମୋର ନାହିଁ,
ଖାଲି ଏକ ଅଶ୍ରୁବିନ୍ଦୁ, ଧରା-ଦୁଃଖ ପାଇଁ ।

## ଅଶ୍ରୁର ହିସାବ

ହେ ନାଥ, ଦେଇଛ ଯାହା ଏହି ଅକିଂଚନେ
ଶ୍ରେଷ୍ଠ ତହିଁ ଏ ଦୁଃଖୀର ତପ୍ତ ନେତ୍ର-ବାରି,
ସେଇ ମୋର ଉପହାର ତୁମ୍ଭ ଶ୍ରୀଚରଣେ —
ହୃଦୟ-ମନ୍ଥନ-ବ୍ୟଥା କରି ମୁକ୍ତା-ମାଳି ।

ଦରିଦ୍ର, ଅକ୍ଷମ, ପଙ୍ଗୁ, ମୂର୍ଖ, ଅଚତୁର,
କାହାର କି ଉପକାର କଲି ଏ ଧରାରେ ?
ସ୍ଥାଣୁ ସମ ବସିରହି ବିଶ୍ୱ-ବ୍ୟଥାତୁର,
ହେ ନାଥ ତେଜିଛି ମାତ୍ର ଅଶ୍ରୁ ହାହାକାରେ ।

ସେ ଉଷ୍ଣ ଲୋତକେ ନିଜ ମରମ ବେଦନା
ମିଶିଥାଏ ନାଥ, – ମୁଁ ଯେ ନିଜେ ଅଭିଶପ୍ତ,
ତବ ପଦତଳେ ମୋର ସେହି ଉପାସନା –
ତରଳ, ସ୍ୱଚ୍ଛନ୍ଦ ଅଶ୍ରୁ – ଅନାବିଳ, ତପ୍ତ ।
ସେ ଯେ ମୋର ମୁକ୍ତାୟିତ ବେଦନା ଅମାପ,
ପାଇବି କି କେବେ ତା'ର ହିସାବ-କିତାପ ?

## କେବଳ ପ୍ରଣତି

ତବ ଆଗେ ହୋଇ ଉଭା ବିଶ୍ୱେ କୋଟି ଜନ
ମାଗନ୍ତି ଏ ଜୀବନର ବିଭିନ୍ନ ଆସ୍ୱାଦ –
ପ୍ରତିପତ୍ତି, ବିତ୍ତ, ବନ୍ଧୁ, ଶାପ-ବିମୋଚନେ,
ସହସ୍ରରୁ-ଭିନ୍ନ ବୋଲି ଗଣାର ଆହ୍ଲାଦ ।
କିଏ ପାଏ, କାହାରେ ବା ଫେରାଅ ଲୋତକେ –
ନାହିଁ ଜାଣେ ମୁହିଁ ତବ ବିଚାରର ଧାରା,
ଅଜ୍ଞ, ମୂଢ଼, ଅଶ୍ରୁ ଖାଲି ଆର୍ଦ୍ର କରେ ବକ୍ଷେ
ତାଙ୍କ ପାଇଁ, ଯାଁକୁ ଦେଲ ବ୍ୟର୍ଥତାର ଭାରା ।
ଧରା-ମଗ୍ନ ପ୍ରାର୍ଥୀଗଣ ବିପୁଳ ସଙ୍ଗମେ
କୋଟି ମୁଖେ ଶୁଣି ଅହରହ ଭିକ୍ଷା-ଧ୍ୱନି,
ହେ ସ୍ୱାମି, ଭୁଲିଛି ମୋର ନିଜ ଭିକ୍ଷା ମନେ,
କାହିଁକି ଆସିଲି ଏଥି ବୋଲି ହୁଏ ଗୁଣି ।
କେବଳ ପ୍ରଣତି ମୋର ବିରାଟ ଛାମୁରେ
ଘେନାହେଉ – ଏଇ ଏକ ଭିକ୍ଷା ପ୍ରାଣେ ସ୍ଫୁରେ ।

## ନିର୍ବୋଧର ଅଧିକାର

ନାହିଁ ଜ୍ଞାନ, ନାହିଁ କର୍ମ, ଦୀନ ଅକିଞ୍ଚନ
କି ଘେନି ହୋଇବ ମୋର ଦେବ-ଦରଶନ ?
ଭାଗ୍ୟବାନ୍ କେତେ ସବୁ ଯା'ନ୍ତି ପଥେ ପଥେ
ଦେବତା ମନ୍ଦିରେ, ବାହି ନିଜ ନିଜ ରଥେ;

ସାଥେ ତାଙ୍କ ନାନା ବିତ୍ତ, ନାନା ଉପହାର,
ଶୂନ୍ୟହସ୍ତେ ଭାବେ – କାହିଁ ମୋର ଅଧିକାର ?
କିନ୍ତୁ ଯା' ଦର୍ଶନ ଲାଗି ପ୍ରେମିକ ଲାଳସୀ
ନାନା ଚାଟୁ ଅନୁନୟେ ତୋଷଇ ପ୍ରେୟସୀ,
ଅଙ୍କ-ଶିଶୁ ଖେଳେ ଘେନି ସେହି ପୟୋଧର –
ତେଣୁ ଭାବେଁ ଦାବି ଅଛି ଅଙ୍କ, ନିର୍ବୋଧର ।
ଶିଶୁ ଯେହ୍ନେ ଡାକେ ମୋତେ, ମୁହିଁ ସେହିପରି
ଡାକିଛି ତୁମରେ କେତେ ଏକାନ୍ତ ନିର୍ଭରି ।
ଶିଶୁର ଜନନୀ ବକ୍ଷେ ଯେଉଁ ଅଧିକାର
ତୋ ପଦେ ତାହା ହିଁ ମାଗେ ମୋର ଅଶ୍ରୁଧାର ।

## ଜନତା ବୈରାଗ୍ୟ

ଯେ ଦିନୁଁ ଖୋଜିଛି ନାଥ ତୁମ ପରିଚୟ,
ଭଲ ନାହିଁ ଲାଗେ ଆଉ ସଙ୍ଗ ଜନତାର;
ତୁମକୁ କହିବି ମୋର ସବୁ ଦୁଃଖ, ଭୟ,
ମନ ନାହିଁ ମାନେ ଯିବି ଆନ ପାଶେ କା'ର ।
ରକ୍ଷାକର ମୋତେ ପ୍ରିୟ, ଅନଭିଳକ୍ଷିତୁଁ, (୧)
ଲୀନ କର ଧୀରେ ଧୀରେ ତବ ବକ୍ଷ ତଳେ,
ପୋଛିନିଅ ସଂସାରର ଆକର୍ଷଣ ଚିତ୍ତୁ
ତବ ଆକର୍ଷଣ ଚିନ୍ତି ବୁଡ଼େଁ ଅଶ୍ରୁଜଳେ ।
ଦେଇନାହଁ ବୁଦ୍ଧି, ଧନ ହେବାକୁ ସଂସାରୀ,
ତେଣୁ ତ ପ୍ରମାଦ ଘଟେ ନିତି-କାରବାରେ,
ଜନତାକୁ ସମ୍ମୁଖିଲେ ଲଜ୍ଜା ହୁଏ ଭାରୀ,
ନିନ୍ଦନ୍ତି ଅଯୋଗ୍ୟ ବୋଲି ଘରେ ଓ ବାହାରେ ।
ବିଶ୍ୱର ମଧୁର, ତିକ୍ତ କିଛି ଲୋଡ଼ା ନାହିଁ,
ମୁହିଁ ତବ ଅବଚ୍ଛିନ୍ନ ସନ୍ନିଧି-ଆଶାୟୀ ।

(୧) ଅନଭିଳକ୍ଷିତୁଁ – ଯେଉଁମାନଙ୍କର ସଖ୍ୟ ବା ଅନୁଗ୍ରହ ଆମ୍ଭ ପାଇବାକୁ ଇଚ୍ଛାକରେ ନାହିଁ ।

# ସର୍ବ-ସମର୍ପଣ

ହୃଦୟର ସବୁ କଥା ତବ ପଦତଳେ
ନିଗାଡ଼ି ଥୋଇବି ଗୋଟି ଗୋଟି ବୋଲି ଭାବେ
ଯେତେ ରୁଦ୍ଧ ଅଭିମାନ ଗୁମରେ ଅନ୍ତରେ,
ଯେତେ କ୍ରୋଧ ଗରଜନ୍ତି ଚିତ୍ତେ ଠାବେ ଠାବେ ।

ତଥାପି ନିରୋଳେ ଧ୍ୟାନେ ହେଲେ ମୁଖାମୁଖି
କି ମନ୍ତ୍ରେ ଭୁଲାଅ ସବୁ ସେ କ୍ଷୁବ୍ଧ ଅତୀତ,
ହୁଏ ଖାଲି ଅଶ୍ରୁ ତେଜି ଅନ୍ତର ମୋ ସୁଖୀ,
ତୁମ୍ଭର ସନ୍ନିଧି ଲଭି ପ୍ରାଣ ହୁଏ ସ୍ଫୀତ ।

ଆଜି ମୋର ନାହିଁ କିଛି ପୂର୍ବ ଅହଙ୍କାର,
କିଛି ମାତ୍ର ନାହିଁ ମୋର ଦାବି ଅଭିଯୋଗ,
ଖାଲି ଭିକ୍ଷା, – ପାଏଁ ତବ ସନ୍ନିଧି-ସଂଚାର
ନିରନ୍ତର ଛିନ୍ନ ନୋହୁ ତବ-ମମ ଯୋଗ ।

ଜୀବନ ସକଳ କର୍ମେ, ନିଦ୍ରା, ଜାଗରଣେ
ରହୁ ତବ ଉପସ୍ଥିତି ଜାଗରୂକ ମନେ ।

# ତୁମରି ଅହଂକାର

ନେଲ ସବୁ ଅହଂକାର ଅଶ୍ରୁରେ ଭସାଇ
ବଁଚେ ମୁଁ କିପରି, ଅହଂମୟ ଏ ସଂସାରେ ?
ହେ ନାଥ ନେଉଛ ମୋ'ଠୁ ସମସ୍ତ ଛଡ଼ାଇ,
ନିଃସ୍ୱର କି ସ୍ଥାନ ଅଛି ମାଟିର ଧରାରେ ?

ଅନ୍ୟାୟ ତା' ଦିଅ ମତେ କିଛି ପ୍ରତିଦାନ,
ଛାଡ଼ିଯାଅ ଅବା ନାଥ, ଏକ ଅହଙ୍କାର –
ତୁମରି ସ୍ନେହର ଗର୍ବେ ବଁଚୁ ମୋର ପ୍ରାଣ,
ମୁକ୍ତ ହେଉ ତମ ଲାଗି ମୋର ଅଶ୍ରୁଧାର ।

ହେ ପରମ ପ୍ରିୟ ମମ, ତୁମରି ପ୍ରଣୟ
ଏକାନ୍ତ ଭରସା ଆଜି ଏକ ହିଁ ସଂପଦ,

ସର୍ବ-ରିକ୍ତ ମୁହିଁ ଆଜି, ସେ ଲାଗି ନିର୍ଭୟ (୧)
ନ ନିଅ ସେ ଗରବର ପବିତ୍ର ଆନନ୍ଦ ।

ବଢ଼ାଅ ଏ ଅହଂକାର ଅଧିକୁଁ ଅଧିକ
ଅଶ୍ରୁ-ହବି ଢାଳି ଢାଳି ହେବି ମୁଁ ଯାଜ୍ଞିକ ।

## ରୂପ-ଭିକ୍ଷା

ଶୀତାନ୍ତେ ଅତ୍ୟନ୍ତ ସ୍ନେହେ ବୃଦ୍ଧା ଧରଣୀରେ
କେ ପୁଣି ଯୌବନ-ବର୍ଣ୍ଣେ କରଇ ଚିତ୍ରିତ,
ଅଣୁଁ ଅନ୍ତରୀକ୍ଷ ଯାଏ ଅଦୃଶ୍ୟ ତୂଳିରେ
ହସାଏ ପ୍ରକୃତି କରି ବର୍ଣ୍ଣେ ଶବଳିତ ।

ଯୁଗ-ଯୁଗ ଧରି କେଉଁ ମହା ଚିତ୍ରକର
ମାଟିକି ଖଚ଼ଇ ଶ୍ୟାମ ଶସ୍ୟର ବସନେ ?
କୁସୁମେ କରାଏ ବର୍ଣ୍ଣ-ଗନ୍ଧ-ଜରଜର
ଆଲୋକ ଛାୟାର ଛବି ଚିତ୍ରଇ ଗଗନେ ?

ବିରାଟ ବିଶ୍ୱର କେଉଁ ଅବଜ୍ଞାତ କୋଣେ
ପଡ଼ିଛି ମୁଁ ଅନାଦୃତ ଝଡ଼ା-ପତ୍ର ପରି,
ଧ୍ୟାଉଛି ସେ ଚିତ୍ରକରେ ମଉନେ ସ୍ୱପନେ,
ରଞ୍ଜିବ ରୂପେ ମୋ ଦେହ, କାଳେ ଅବତରି ।

ନିଜ ସଭାଗୃହ ନିତ୍ୟ ନିଜେ ଯେ ସଜାଏ
ତହିଁ ଯିବା ଦୀନତାରେ, ସାହସ ନ ପାଏ ।

## ଐଶ୍ୱର୍ଯ୍ୟମୟ

ସହସ୍ର ଦୁଆର ମୋର ଖୋଲା ତମ ଲାଗି,
ଆସ ଆସ ପ୍ରିୟତମ ସହସ୍ର ରୂପରେ,
ଇଚ୍ଛ କି ହେ ତମ ପାଇଁ ହେବି ବଇରାଗୀ ?
ମୁଁ ଚାହେ ବନ୍ଦିବି ତୁମେ ଐଶ୍ୱର୍ଯ୍ୟ-ଧୂପରେ !

ଜୀବନର ଶ୍ରେଷ୍ଠ ଯାହା, ନୟନ-ଅଶ୍ରୁରେ
ଢାଳି ପଖାଳିବି ବର ଚରଣଯୁଗଳ,

(୧) ସର୍ବରିକ୍ତ ହେଲେହେଁ ନିର୍ଭୟ; କାରଣ ଆତ୍ମା ଈଶ୍ୱରଙ୍କର ପ୍ରଣୟ ଲାଭ କରିଛି ।

ପାଦ ଦେଇ ମୋ-କୋମଳ-ପ୍ରଣୟ-ଦୁକୂଳେ,
ମୋ କାନ୍ଧେ ଥାପିବ ପରା ସ୍ନିଗ୍ଧ-ସ୍ପର୍ଶ କର ।

ଦରିଦ୍ର ମୁଁ ତମ ଲାଗି ହେବି ସେଇ କ୍ଷଣେ
ଅଶେଷ ବିଭେଶ, ପ୍ରଭୁ, ତୁଚ୍ଛ ମୋର ପୁର,
ତମ ଲାଗି ଉଜ୍ଜ୍ୱଳିବ ହୀରକ କିରଣେ,
କରେ ମୋର ମୂଲ୍ୟବନ୍ତ ଉପହାର ଠୁଳ ।

ସହସ୍ର ହୃଦୟେ ସେହି ମହା ପ୍ରେମିକରେ
ସହସ୍ର ଐଶ୍ୱର୍ଯ୍ୟ ମୁଁ ଯେ ଭୋଗ ଇଚ୍ଛା କରେ ।

## ସୁଖ ଓ ସୌନ୍ଦର୍ଯ୍ୟ

ରଚିଲେ ବିଧାତା ଯେବେ ନିଖିଳ ଏ ବିଶ୍ୱ
ମହାବ୍ୟୋମ, ଗ୍ରହ, ତାରା, ପ୍ରାଣୀ ଓ ଉଭିଦ,
ସର୍ବେ ବୋଧ କରୁଥାନ୍ତି ଦୀନ ରୁଗ୍ଣ, ନିଃସ୍ୱ,
ନିରାନନ୍ଦ, ଉପାଦାନ ଥାଇ ସର୍ବବିଧ ।

ସୂର୍ଯ୍ୟରୁ ସୂର୍ଯ୍ୟରେ ଗଲା ଗୁପ୍ତ ଆବେଦନ
ଜୀବନର ମର୍ମେ ମର୍ମେ ଫୁଲେ ପତ୍ରେ ଘାସେ,
କିପାଇଁ ସ୍ରଷ୍ଟାର ଏହି ମହା ଆୟୋଜନ,
ନିଖିଳ ଭୁବନ ସୃଷ୍ଟି ହେଲା କେଉଁ ଆଶେ ?

ଏ ବାର୍ତ୍ତା ପଶିଲା ଯାଇ ସ୍ରଷ୍ଟାର ଶ୍ରବଣେ,
ଭାବିଲେ ସେ ପ୍ରତି ବିନ୍ଦୁ ମହା ସୃଜନର
ହେଉ ଆପେ ଏକ ସ୍ରଷ୍ଟା, ଆପଣା ମରମେ
ପାଉ ନିଜ କୃତାର୍ଥତା, ପ୍ରାଣ-ରସ-ଭର ।

ତେଣୁ ଜୀବ ପ୍ରତି କଣେ ଦେଲେକ ଛିଞ୍ଚାଡ଼ି,
ସୁଖ, ସୌନ୍ଦର୍ଯ୍ୟର ତୃଷ୍ଣା, — ଚିର ସୃଷ୍ଟି-କାରୀ ।

## ଅଭିମାନ

ହେ ପିତ, ହେ ବନ୍ଧୁ, ପ୍ରିୟ, ତମର ସନ୍ନିଧି
ଲଭଇ ମୁଁ ଯଦି କେବେ, ଧରା ଦୃଶ୍ୟମାନ

ଭୁଲିଯାଏ ସମ୍ପୂର୍ଣ୍ଣରେ । ଚିନ୍ତାର ପରିଧି
କଳ୍ପିତ ଆଶିଷେ ତବ ହୁଏ ସ୍ପନ୍ଦମାନ ।
ଅଜାଣତେ ସେ ମୁହୂର୍ତ୍ତ କାହିଁ ଯାଏ ଚାଲି;
ତା'ପରେ ଫେରାଏ ଚିତ୍ତ ଇନ୍ଦ୍ରିୟ ବିଷୟେ,
ଉଡ଼ିବୁଲେ ଅହଂକାର-ପକ୍ଷରେ ବିସ୍ତାରି
'ତମେ ନାହଁ' 'ତମେ ମିଥ୍ୟା' ଚିତ୍ତ ରଟି ରହେ ।

ଅଭିମାନ ସେ ଯେ ମୋର, ନାହିଁ କି ବୁଝିବ ?
କେମନ୍ତେ ଜାଣିବ ଏହି ଦିନ ଅକିଂଚନ
ସତେ ତମ ମନେଥାଏ ? ଥିଲେ କି ଏ ଜୀବ
ଅଣ୍ଡାଳି ହୁଅନ୍ତା, କରି ସ୍ନେହ ଅନ୍ୱେଷଣ ?
ଶୁକ୍ତି କିନ୍ତୁ ଖୋଲା ମୋର ହୃଦ-ସିନ୍ଧୁ ତଳେ –
ଅପେକ୍ଷି କରୁଣା-ମୁକ୍ତା ପଡ଼ିବ ଗର୍ଭରେ ।

# ବିଭୁ ଓ ପ୍ରକୃତି

## (୧)

ନିରୋଳ ପଉଷ ସନ୍ଧ୍ୟା, ଗହନ ବନାନୀ,
ପର୍ବତ ଉଢ଼ାଳେ ଖସେ ସାୟନ୍ତନ ରବି,
ଶୁଭେ ଖାଲି ଏଠିସେଠି ପତତ୍ରୀର ବାଣୀ,
ନିର୍ମେଘ ଗଗନ, – ଏକ ସ୍ୱର୍ଣ୍ଣ-ଦୀପ୍ତ ଛବି ।

ଆଗେ, ପଛେ, ଚାରିଆଡ଼େ ବନସ୍ତ କେବଳ,
ଅନାବୃତ ଖାଲି ଉର୍ଦ୍ଧ୍ୱେ ନଭ ସାୟନ୍ତନ;
ପ୍ରକୃତିର ଏ ସନ୍ନିଧି, ନିବିଡ଼ ନିଶ୍ଚଳ
ଅତୀନ୍ଦ୍ରିୟ ଭାବେ କରେ ମଗ୍ନ ମୋ ଚେତନ ।

ଏକ ହେଲେ କବି, ଆଉ ପ୍ରକୃତି, ଆକାଶ,
ମନେହେଲା ସ୍ଥିତି ମୋର ସେହି ସେ ଈଶ୍ୱର –
ବିରାଟ ବ୍ରହ୍ମାଣ୍ଡମାଳେ ଯାହାଁକ ପ୍ରକାଶ,
ଅଛନ୍ତି ଯେ ପୁଣି ମୋର ପଦ-ରେଣୁ ତଳେ ।

ଆନନ୍ଦ ଲୋତକେ ତାଙ୍କୁ କଲି ନମୋନମ
ଭାବିଲି ମୁଁ, ସେହି ମୋର ସୌଭାଗ୍ୟ ପରମ ।

(୨)

ଫାଲ୍‌ଗୁନର ସେ ପ୍ରଭାତ, ଶୀତ ଛାଡ଼ି, ଛାଡ଼ି ନାହିଁ ଧରା,
ବାଳରବି ସ୍ୱର୍ଣ୍ଣ-ବାଷ୍ପ ଧୀରେ ଉଠି ବିଛିଲେ ଆକାଶେ,
ଛୋଟ ସେ ଶିଶିର ବିନ୍ଦୁ, ଘାସେ ଘାସେ ଥରୁଥା'ନ୍ତି ପରା
ବିରାଟ ସୂର୍ଯ୍ୟରେ ଧରି ନିଜ ନିଜ ଛୋଟ ବକ୍ଷ-ପାଶେ ।

ବସନ୍ତରୁ ପୁଞ୍ଜୀଭୂତ କାମନାର ପ୍ରତୀକ ପରାୟେ,
ଲୋହିତ ପଳାଶ କରେ ଦିଶ ଦିଶ ବର୍ଣୈଶ୍ୱର୍ଯ୍ୟଭରା,
ନବବସ୍ତ୍ର ପିନ୍ଧି ଉଭା ବୃକ୍ଷଲତା ନବ-ବଧୂ ପ୍ରାୟେ,
ଦକ୍ଷିଣୁଁ ମଳୟ ଆସି ସ୍ନେହେ ତାଙ୍କୁ ବିଞ୍ଚିଦିଏ ପରା ।

ଶୀତର ଜଡ଼ତା ପରେ ଧରଣୀରେ ଉଚ୍ଛନ୍ନ ଜୀବନ
ଆକାଶରୁ ଘାସଯାଏଁ ସଂଚ୍ଚାରିତ ନବୀନ-ସଜ୍ଜତା,
ନୂତନ ମାଦକ ଆଣେ ଗନ୍ଧବହ ଦକ୍ଷିଣା-ପବନ,
କୋକିଳ ଉନ୍ମୁରେ ଡାକେ, ବନୁ ଆସେ କପୋତୀର ବ୍ୟଥା ।

ଭୁବନେଶ୍ୱର ହେ ପ୍ରଭୁ, ଯେ ମୋ-କ୍ଷୁଦ୍ର ଜୀବନ ଈଶ୍ୱର
ସେ ମୁହୂର୍ତ୍ତେ ତୁମକୁ ହିଁ ଭେଟି ହେଲି ମୋହିତ, ନିଶ୍ଚଳ ।

(୩)

ରୁଦ୍ର ବଇଶାଖ ଦିବା, ବହେ ତପ୍ତ ବାୟୁ,
ସ୍ୱେଦ-ସିକ୍ତ ଅପଘନ, ବାହାରେ ଉତ୍ତାପ,
ତୃଷାକୁଳ ସଦା ପ୍ରାଣ; ଯହିଁ ଅବା ଯାଉଁ
ସନ୍ତୁଳି ଦେଉଛି ଦେହ ଉଷ୍ଣତାର ଶାପ ।

ବୃକ୍ଷ-ବିଟପୀରେ ପକ୍ଷୀ ନୀରବେ ଆଶ୍ରିତ,
ବୃକ୍ଷମୂଳେ କ୍ଳାନ୍ତ ଶ୍ୱାନ ଭାନ-ନିଦ୍ରାଶାୟୀ,
ରସନାରୁ ଲାଳ ତା'ର ହୁଏ ବିଗଳିତ,
ପାଶେ ଗାଭୀ ରୋମନ୍ଥନ କରୁଛି ଢୁଳାଇ ।

ଚାରିଆଡ଼େ ହା-ହୁତାଶ, ଦହନ, ବିନାଶ,
ହତୋତ୍ସାହ ଜୀବଗ୍ରାମ, ଆକୁଳିତ ପ୍ରାଣ,
ଅଂଗନରେ କିନ୍ତୁ କ୍ଷୁଦ୍ର ମଲ୍ଲୀ-ଗୁଳ୍ମ ହାସ
ପ୍ରାଣେ ଭରେ ଆନନ୍ଦରେ, ସଂଭୋଗରେ ଘ୍ରାଣ (୧) ।

---

(୧) ଘ୍ରାଣ ଦେଇ ସଂଭୋଗର କାମନା ସଂଚ୍ଚାର କରେ ।

ପ୍ରଳୟେ ସୃଜନକାରୀ (୧) ବିଚିତ୍ର ବିଧାଣି
ସ୍ରଷ୍ଟାରେ, ନମିଲି ଦେଇ ଭକ୍ତିର ପ୍ରଣାମି ।

(୪)

ଗର୍ଜମାନ ମେଘ ଛାଡ଼େ କୋଟି ନୀର-ତୀର
ବିଦ୍ୟୁତ୍ ଖେଳଇ ନଭେ ଚମକି ଚମକି,
ପ୍ରଭଂଜନ ଦୋହଲାଏ ଉଚ୍ଚ ବୃକ୍ଷଶିର
ବଜ୍ର ଖସେ ମୁହୁର୍ମୁହୁଃ, ଶ୍ୱାସ ଯାଏ ଥକି ।

ନୀରବ ଗଭୀର ନିଶା, ବିଶ୍ୱଜୀବଗ୍ରାମ
ନିଦ୍ରିତ ବା ଜାଗରଣେ ଶଙ୍କିତ-ଜୀବନ,
ଆଦିମ ମାନବ ଯେହ୍ନେ ଅନିଶ୍ଚିତ-ପ୍ରାଣ
ଗୁହାରୁ ଦେଖଇ ସୃଷ୍ଟି-ସଂହାର-ନର୍ତ୍ତନ ।

ସୁପ୍ତ ସର୍ବ ପରିବାର, ନୀରବ କୁଟୀର,
ତନ୍ଦ୍ରାହୀନ ମୁଁ କେବଳ, ମର୍ମେ ପ୍ରକୃତିର
ପ୍ରଳୟ ଏ ଅଭିନୟ ବୁଝୁଛି ଗଭୀର,
ଝଡ଼େ ଶୁଣେ ନଟରାଜ ଚରଣ-ମଂଜୀର ।

ପ୍ରଳୟାନ୍ତ ସେ ନିଶୀଥେ, ଭୀମକାନ୍ତ କାଳେ
ଅନୁଭବୁ ଥାଏଁ ତୁମେ, ମୋ ଶାନ୍ତ-ଆତ୍ମାରେ ।

(୫)

ଶାରଦ-ପୂର୍ଣ୍ଣିମା-ଚନ୍ଦ୍ର ଇନ୍ଦ୍ରଜାଲ ରଚି
କରିଛି ସ୍ୱପନ-ପୁରୀ, ରୁକ୍ଷ ଧରଣୀରେ,
କୁମାରୀଏ କୃଷ୍ଣ-ବେଣୀ ପୁଷ୍ପଦଳେ ଖଚି
ଗାନେ, ନୃତ୍ୟେ, ମୁଖରିତ କରନ୍ତି ରାତ୍ରିରେ ।

ଜ୍ୟୋତ୍ସ୍ନା-ସ୍ପର୍ଶେ ଶାନ୍ତ ସିନ୍ଧୁ ହୁଏ ଉଦ୍‌ବେଳିତ,
ଜୀବ-ଧମନୀରେ ରକ୍ତେ ଉଠଇ ଜୁଆର,
ବଂଶୀନାଦେ ଗାଈଆଳ ବିନୋଦଇ ଚିତ୍ତ,
ଚାରିଆଡ଼େ ଆନନ୍ଦର ଗଭୀର ସଞ୍ଚାର ।

ଜୀବନ-ରଣଲୋହିତ ରୁକ୍ଷ ଏ ସଂସାରେ
କାହିଁକି ଏ କମନୀୟ ରୂପ ଆୟୋଜନ ?

(୧) ପ୍ରଳୟେ ସୃଜନକାରୀ — ପ୍ରଳୟ ବା ବିନାଶ ଭିତରେ ମଧ୍ୟ ଯିଏ ସୃଷ୍ଟି କରିଚାଲିଛନ୍ତି ।

କିଏ କରିଥିଲା ଭିକ୍ଷା କେବେ କାହାଠାରେ
କରିବାକୁ ପ୍ରକୃତିରେ ନୟନ-ମୋହନ ?
ପୌର୍ଣ୍ଣମାସୀ... ଜ୍ୟୋତ୍ସ୍ନାସ୍ନାତ ଶୁଭ୍ରାମ୍ବର ତଳେ
ହେ କବି, ହେ ରୂପକାର, ନମିଲି ତୁମ୍ଭରେ ।

## ପ୍ରଶ୍ନକାରୀ ପ୍ରାଣୀ

ହେ ମୂକ, ରହସ୍ୟମୟ, ସ୍ଥାଣୁ, ସନାତନ
ହେ ଚିର ଜାଗ୍ରତ, ସୃଷ୍ଟି-ଅନନ୍ତ-ଶୟନେ, (୧)
ଦେଖୁଛି, କରିଛ ଏଇ ନିଖିଳ ଭୁବନ
ଧ୍ୱନିତ ଅନନ୍ତ କାଳୁ ପ୍ରଶ୍ନ ଅଗଣନେ ।

ସୃଷ୍ଟିର ଆଦିମ କାଳୁ ନିଖିଳ ଅନ୍ତରେ –
କିଏସେ ସେ ? କିପରି ସେ ? ଅଛନ୍ତି ସେ କାହିଁ ?
ଏଇ ପ୍ରଶ୍ନ ଘନ ଘନ ଉଠେ ସ୍ତରେ ସ୍ତରେ,
ମହାବ୍ୟୋମ ସେହି ପ୍ରଶ୍ନେ ନିୟତ ଥରାଇ ।

ଅବୋଧ ଜିଜ୍ଞାସା ଭାଷେ ହାସେ କୁସୁମର,
ନବଜାତ ଶିଶୁମୁଖ-କରୁଣ-ବିଳାପେ,
ବାରିଧିର ମନ୍ଦ୍ରଘୋଷେ, ନେତ୍ରେ ବିଦ୍ୟୁତ୍‌ର,
ଅରଣ୍ୟ ମର୍ମରେ, ନଭେ ଜ୍ୟୋତିଷ୍କ କଳାପେ ।

ମହାନଟ, ମୂକ ରହି ବୋଧେ ଜାଣି ଜାଣି
କରିଛ ମନୁଷ୍ୟେ ଏକ ପ୍ରଶ୍ନକାରୀ ପ୍ରାଣୀ ।

## ଅକିଞ୍ଚନର ତିତିକ୍ଷା

ଦରିଦ୍ର ଦୁର୍ବଳ ମୁହିଁ, ଅତି ଅକିଞ୍ଚନ
ନପାରେ ତୁଳାଇ ମୋର ନିଜର ସଂସାର,

---

(୧) ହିନ୍ଦୁପୁରାଣ ଅନୁସାରେ ବିଷ୍ଣୁ (ଈଶ୍ୱର) ଅନନ୍ତ ନାମକ ସର୍ପର କୁଣ୍ଡଳୀ ଉପରେ ଯୋଗନିଦ୍ରାରେ ଶୟିତ । ଏଠାରେ 'ଅନନ୍ତ' ଶବ୍ଦକୁ ଅନ୍ତହୀନ ସୃଷ୍ଟି ପ୍ରକ୍ରିୟାରୂପେ ଧରାଯାଇଛି । ବିଧାତାପୁରୁଷ ସେହି 'ଅନନ୍ତ' ଉପରେ ଶୟାନ; କିନ୍ତୁ ସେ ନିଦ୍ରାଭିଭୂତ ନୁହନ୍ତି; ଶୋଇ ମଧ୍ୟ ସେ ଚିରଜାଗ୍ରତ । ଶେଷହୀନ ସୃଷ୍ଟି-ପ୍ରକ୍ରିୟାହିଁ ତାଙ୍କର ଜାଗରଣ ସୂଚିତ କରେ ।

ହେ ଈଶ୍ୱର, ଭର କିପାଁ ଅଭାଜନ-ମନ
ନାନା ସ୍ୱପ୍ନେ, କରିବାକୁ ଜଗତ ଉଦ୍ଧାର ?
ଦରିଦ୍ର, ଦଳିତ ପାଇଁ ନିଷ୍ଫଳ ରୋଦନ
ଉଠାଅ ତା' ବକ୍ଷେ କିପାଁ, ନିଜେ ଯେ ଦଳିତ;
ଭଗ୍ନଜାନୁ ସମ ପଡ଼ିରହି ଅନୁକ୍ଷଣ
ଦେଖୁଛି ଯେ ଖାଲି ଆନ ଗତି ମଦାନ୍ୱିତ ?
ମାଗେ କବି ଏଇ ଭିକ୍ଷା 'ଦିଅ ଶକ୍ତି ହାତେ
ଭାଙ୍ଗି ପୁଣି ଗଢ଼ିବ ସେ ମାନସ ସଂସାର;
ରୋଧ ବା ଇନ୍ଦ୍ରିୟେ ତା'ର, ଆସୁଛି ଯେ ବାଟେ
ମର୍ମେ ତା'ର ଜଗତର ଆର୍ତ୍ତ ହାହାକାର ।'
ବନ୍ଧ୍ୟ ଅଭିଳାଷଠାରୁ ଅକ୍ଷମର ପ୍ରାଣେ,
ଜଡ଼ତ୍ୱ ଅଧିକ ସୁଖକର ଅନୁମାନେ ।

## ନିର୍ବିକାର

ବିଶ୍ୱର ଅଗଣ୍ୟ ଦୁଃଖେ କବିର ଅନ୍ତର
ବେଳେବେଳେ ବେଦନାରେ ହୁଏ ପ୍ରମନ୍ଥିତ,
ବ୍ୟାକୁଳେ ଖୋଜେ ସେ ନାନା ପ୍ରଶ୍ନର ଉତ୍ତର;
ସୁଧାରିବ କିସ ? ସେ ତ ନିଜେ ନିର୍ଯାତିତ !
ପ୍ରଶାନ୍ତ ଗଗନ ତଳେ ନୀରବ ନିଶାରେ
ଊର୍ଦ୍ଧ୍ୱମୁଖେ ବେଳେବେଳେ କରେ ସେ ଜିଜ୍ଞାସା,
ବିଶ୍ୱମ୍ଭର, ଅଛ ପରା ତମେ ସବୁଠାରେ,
ନ ହେଉଛି କିପାଁ ବିଶ୍ୱ-ଦୁଃଖର ମୀମାଂସା ?
ଏକ ଏକ ଦୁର୍ବୃତ୍ତର ଅଙ୍ଗୁଳି ସଂକେତେ
ଦେଖି ଦେଖି କି ଯାତନା ଭୋଗେ ଜାତି ଜାତି,
ଓଦାଇ ଧରଣୀ ନର ଲୋତକେ, ରକତେ
ଶୁଣ ଶୁଣ ଦୃପ୍ତ ହାସ୍ୟ କେହ୍ନେ ପଡ଼େ ଫାଟି (୧) !

(୧) ଇତିହାସର ଚେଙ୍ଗିଜ୍ ଓ ତୈମୁର ଏବଂ ଏବର ହିଟଲର, ମୁସୋଲିନ୍ ଦଳ ଲକ୍ଷ ଲକ୍ଷ ମନୁଷ୍ୟଙ୍କୁ ହତ୍ୟା କରିବାରେ ବା ନିର୍ଯାତନା ଦେବାରେ ଆନନ୍ଦ ଅନୁଭବ କରୁଥିଲେ । ସେହିମାନଙ୍କୁ ଲକ୍ଷ୍ୟକରାଯାଇଛି । କିନ୍ତୁ ପରପୀଡ଼ନରେ ଆନନ୍ଦ ପାଇବାର କୋଟି କୋଟି ଚେଙ୍ଗିଜ୍ ଓ ତୈମୁର ସବୁକାଳେ, ସବୁ ସମାଜରେ ଦେଖାଯାନ୍ତି ।

କୋଟି କୋଟି ମରୁଛନ୍ତି ବର୍ବର ମରଣ
ତମେ କି ଦେଖୁନ ସର୍ବ-ଚକ୍ଷୁ ନାରାୟଣ ?

## ଅନ୍ୟୋଽନ୍ୟ ସଂହାର

ମନେହୁଏ ଏ ବିଶାଳ ଧରିତ୍ରୀ-ଗହ୍ୱର
ଧ୍ୱନିତ ସର୍ବଦା କୋଟି ଜୀବନ ଚିତ୍କାରେ,
ହିଂସାର-ଶୋଣିତ-ଲିପ୍ତ ଏହାର ଚତ୍ୱର
ଜୟ ଏଥି ଏକ ଆନେ ଗ୍ରାସ କରିବାରେ ।

ପ୍ରତି ଜୀବ ଉଦ୍‌ଗ୍ରୀବ ଅନ୍ୟର ପାତନେ,
ଏକର କୁଶଳ ଅର୍ଥ ବହୁର ଅଭାବ,
ଏକ ସ୍ୱାସ୍ଥ୍ୟ ଗଢ଼ାହୁଏ ବହୁ ବିନାଶନେ, (୧)
ଏକ ସୁଖୀ ପଛେ କୋଟି ଆର୍ତ୍ତିର ଆରାବ ।

ହିଂସା, ଈର୍ଷା, ଅହମିକା ଚକ୍ର ଜୀବନର,
ଚକ୍ର-ତୈଳ, ନିଜପାଇଁ ଅନ୍ୟ ବିଲୋପନ,
ଚକ୍ରୀ ଏଥି ବଞ୍ଚିବାର ବାସନା ପ୍ରବଳ —
ଜାଣି ମଧ ଠିଆ ସଦା ପଶ୍ଚାତେ ମରଣ (୨) ।

ଅନ୍ୟୋଽନ୍ୟସଂହାରଶୀଳ, କ୍ଷତାକ୍ତ ସକଳେ
ହିଂସା, ଅହମିକା ଜଳେ ପ୍ରତି ଅଶ୍ରୁତଳେ ।

## ମାୟାବାଦ

ସବୁ ମାୟା, ସବୁ ମିଥ୍ୟା, କ୍ଷୟଶୀଳ ସବୁ ଏ ଜଗତେ,
ଜୀବନ-ନାଟକ ପଛେ ଏକମାତ୍ର ସତ୍ୟହିଁ ଈଶ୍ୱର;

---

(୧) ଗୋଟିଏ ଆମିଷାଶୀ ସୁସ୍ଥ ମନୁଷ୍ୟର ସମଗ୍ର ଜୀବନକାଳର ହିସାବ ନେଲେ, ସେହି ଜଣେ ଲୋକକୁ ସୁସ୍ଥ ରଖିବାପାଇଁ କେତେ ମାଛ, କେତେ ଜୀବ, କେତେ ପକ୍ଷୀଙ୍କୁ ପ୍ରାଣ ଦେବାକୁ ପଡ଼ିଛି, ତାହା ବୋଧକରିପାରିବା ।

(୨) ଆମ ପ୍ରତ୍ୟେକର ପଛରେ ମୃତ୍ୟୁ ସର୍ବଦା ଦଣ୍ଡାୟମାନ । ତାହା ଜାଣି ମଧ ଆମର ଜୀବନ-ଚକ୍ର, ଯାହା ହିଂସା, ଈର୍ଷା, ଅହମିକା ଦେଇ ଗଢ଼ା, ଯାହାର ସୁଖ-ଚଳନ-କାରୀ ତେଲ ହେଉଛି ଅନ୍ୟକୁ ତଳେ ପକାଇବାର ତୀବ୍ର ଇଚ୍ଛା ଏବଂ ବଞ୍ଚିବାର ତୀବ୍ର ଇଚ୍ଛାହିଁ ଯା'ର ରଥୀ ହୋଇ ତାକୁ ଗଡ଼ାଉଛି, ତାହା ଚାଲିବାରେ ଲାଗିଛି ।

ଡାକେ ତେଣୁ ଦାର୍ଶନିକ, "ହେ ମାନବ, ଚିତ୍ତ ସ୍ଥିର କର,
ପଦ୍ମପତ୍ରେ ନୀର ହୁଅ, ସୁଖଦୁଃଖାକୀର୍ଣ୍ଣ ମର୍ତ୍ତ୍ୟ-ପଥେ।"
ବୁଝିବାରେ ନାହିଁ ହୁଏ କଷ୍ଟ ଏବେ ଏଇ ସୂକ୍ଷ୍ମ ତତ୍ତ୍ୱ –
କାମନାର ନୃତ୍ୟପୀଠ ଥିଲା ଦିନେ ଯେ ଗଣ୍ଡ-ଯୁଗଳ
ଆଜି ତା' ଦର୍ଶକହୀନ; ଥିଲା ଯାହା ଆହ୍ୱାନ-ଚଞ୍ଚଳ
ସେହି ନେତ୍ର ବିଁଚେ ଆଜି ଆନନ୍ଦର କେବଳ ପଞ୍ଚତ୍ୱ।

କ୍ଷୟ ହୁଏ ସୂର୍ଯ୍ୟ ଚନ୍ଦ୍ର, ଭାଗ୍ୟ ନିତ୍ୟ ପତିତ ଉତ୍ଥିତ,
ମୁହୂର୍ତ୍ତେ ମୁହୂର୍ତ୍ତେ ହୁଏ ସାମ୍ରାଜ୍ୟର ସୃଜନ-ବିଲୟ,
ସ୍ଥିର କିଛି ନାହିଁ ଏଥି, ଖାଲି କ୍ଷିପ୍ର-ଯାଆ-ଆସ-ମୟ।
ହେଜି ଦାର୍ଶନିକ ବାଣୀ, ମନେହୁଏ "ଠିକ୍ କହିଛି ତ!"
ମାନୁଛି ମୁଁ ସବୁ ମାୟା; କିନ୍ତୁ ଅଛି ଏକ ନିପାତନ,
ବିପନ୍ନ ନରର ଗଣ୍ଡେ ନିଃସହାୟ ଦୁଇ-ଅଶ୍ରୁ-କଣ!

## ଅନ୍ୟାୟ ସୃଷ୍ଟି

କେବଳ ସଂପ୍ରତି ନୁହେଁ, ଅନାଦି ଅତୀତ
ଅନ୍ତରେ ଧ୍ୱନିତ କରେ ଆର୍ତ୍ତ ହାହାକାର,
ନିଖିଳର ଯେତେ ଯହିଁ ଅନ୍ୟାୟ-ପୀଡ଼ିତ –
ମୋ ଚିତ୍ତ ଆର୍ଦ୍ରିତ କରେ ତାଙ୍କ ଅଶ୍ରୁଧାର।

ବଳୀ ଯହିଁ ଦୁର୍ବଳରେ କରିଛି କବଳ
ଶାସ୍ତ୍ରଜ୍ଞ ସାଜିଛି ବୈଶ୍ୟ-ଜନ ମୂର୍ଖତାରେ, (୧)
ମତାନ୍ଧ, ଦେବତା ନାମେ ଜାଳିଛି ଅନଳ,
ଜଳାଇଛି ସହସ୍ରରେ ବିଜ୍ଞ ନିର୍ବିକାରେ (୨)।

ଯହିଁ, କେବେ ଆର୍ତ୍ତନାଦ ଜୀବେ ବା ମାନବେ
ଉଠେ, ବାଜେ ସେ ସକଳ ଥରାଇ ଅନ୍ତର,

(୧) ଜନତାର ମୂର୍ଖତାର ସୁଯୋଗ ନେଇ ତଥାକଥିତ ଶାସ୍ତ୍ରଜ୍ଞ ଶାସ୍ତ୍ରକୁ ନିଜ ସ୍ୱାଚ୍ଛନ୍ଦ୍ୟର ପଣ୍ୟରୂପେ ବ୍ୟବହାର କରେ।

(୨) ବିଜ୍ଞ ନିର୍ବିକାରେ – ଶାସ୍ତ୍ର ଓ ଧର୍ମର ଦ୍ୱାହି ଦେଇ ମନୁଷ୍ୟର ଦୁଃଖ ପ୍ରତି ନିଷ୍ଠୁର ନିର୍ବିକାରିତା ଦେଖାଯାଏ। ଦିନେ ଲକ୍ଷ ଲକ୍ଷ ସଦ୍ୟ ବିଧବାଙ୍କୁ ଜିଅନ୍ତା ପୋଡ଼ି-ଦିଆଯାଉଥିଲା।

ଜୀବନର ଅଶ୍ରୁ-ରକ୍ତ-ସିକ୍ତ ଏ ଉତ୍ସବେ
ଜନନୀ, (୧) ଜିଜ୍ଞାସା ମୋର ନ ପାଏ ଉତ୍ତର ।
ନ୍ୟାୟହୀନ, ବଳଘିତ ଅଜ୍ଞତା-ଚାଳିତ
ଏ ସୃଷ୍ଟିରେ ଦୟା, ପ୍ରେମ ଯେହ୍ନେ ଅବାଞ୍ଛିତ ।

## ନିଖିଳର ଦୁଃଖ

ମନେହୁଏ ମୁହିଁ ଯେହ୍ନେ ଜାହ୍ନବୀର ମୁଖେ
ନିଜ ମାତୃକରୁ ବଳି ସାଗର-ମତ୍ସ୍ୟର
ହୋଇଥିଲି – ପୁରୋହିତ ଫେରିଥିଲା ସୁଖେ (୨)
ନରତ୍ୱରେ ଦଳି, ଧ୍ୱଜା ଉଡ଼ାଇ ଶାସ୍ତ୍ରର;
ମୁଁ ପୁଣି ହୋଇଛି ଅବା ଚିତା-ଦଗ୍ଧ ସତୀ,
କନ୍ଧର ହଳଦି-କ୍ଷେତ୍ରେ କ୍ରୂର ନରବଳି,
ଚାବୁକର ପୁରସ୍କାରେ କପାକ୍ଷେତ ଚଷି
ନିଗ୍ରୋ (୩) ମୁଁ ଅପୋଛା ଲୁହେ ଯାଇଅଛି ଜଳି ।
ମାଂସ-ଗ୍ରାସୀ ରସନାର ଅଗ୍ନି ନିର୍ବାପଣେ
ପ୍ରତ୍ୟହ ଯେ କୋଟି ଜୀବ ଦିଏ ରକ୍ତ,
ଅଛି ମୁଁ ବା ସମସ୍ତ ସେ ବିକଳ ଜୀବନେ,
ମର୍ମେ ଫୁଟେ ଧରଣୀର ଯେତେ ଯହିଁ କଷ୍ଟ ।
ମନେ ଉଠେ ଏକ ପ୍ରଶ୍ନ, ଜନନୀ-ସଂସାରେ
କ୍ରୂର, ଅଜ୍ଞ, ବର୍ବରତା ଅଛି କି ବିଚାରେ !

## ମୋ ପ୍ରାଣେ ଧ୍ୱନିତ

ବର୍ବର ବ୍ରାହ୍ମଣ ବାକ୍ୟେ ଯେ ଶିଶୁ ନିରୀହ
ହୋଇଥିଲା ବିସର୍ଜିତ ଜାହ୍ନବୀ-ସଙ୍ଗମେ,

---

(୧) ବିଶ୍ୱଜନନୀଙ୍କୁ ସମ୍ବୋଧନ କରାଯାଇଛି ।
(୨) ପୂର୍ବେ ପୁରୋହିତମାନଙ୍କ ନିର୍ଦ୍ଦେଶରେ ମା'ମାନେ ନିଜ ସନ୍ତାନଙ୍କୁ ଗଙ୍ଗାନଦୀର ମୁହାଣରେ ଦେବତାର ସନ୍ତୋଷ ପାଇଁ ଫିଙ୍ଗିଦେଉଥିଲେ ।
(୩) ଦିନେ ଆମେରିକାରେ ନିଗ୍ରୋ କ୍ରୀତଦାସମାନଙ୍କୁ କପା ଓ ଆଖୁ ଖେତରେ ଠିକ୍ ବଳଦପରି ବ୍ୟବହାର କରାଯାଉଥିଲା ଓ ସେମାନଙ୍କୁ ଚଞ୍ଚଳ କରିବାପାଇଁ ବଳଦ ପିଠିରେ ପାଞ୍ଚଣ ପରି, ସେମାନଙ୍କ ପିଠିରେ ଚାବୁକ ପଡୁଥିଲା ।

ମଜ୍ଜମାନ କଣ୍ଠୁ ତା'ର ଡାକ ମୁମୂର୍ଷାୟ
ମୋ ପ୍ରାଣେ ଧ୍ୱନିତ ହୁଏ ଥରାଇ ମରମେ ।

ବର୍ବର ସେ ଶାସ୍ତ୍ରାଜ୍ଞାରେ ଯେ ନାରୀ କୋମଳା
ହୋଇଥିଲା ଦଗ୍‌ଧୀଭୂତା ସ୍ୱାମୀ-ସୁଖ ପାଇଁ,
ବାଦ୍ୟ, ଜନ, କୋଳାହଳ ଭେଦି ବକ୍ଷ-ଗଳା
ତା ଚିତ୍କାର, ମୋ ଅନ୍ତରେ ଧ୍ୱନେ ଥାଇ ଥାଇ ।

ନିଜ ବାସୁ ଉତ୍‌ପାଟିତ, ନିରୀହ ନିର୍ଦ୍ଦୋଷ
ଶ୍ୱେତାଙ୍ଗ ଚାବୁକାହତ, ବିଳାପ ବିହ୍ୱଳ
ପ୍ରିୟଜନଠାରୁ ଛିନ୍ନ ଦୁର୍ବଳ, ଅରୋଷ,
ବୁକେ ଥରେ ଅଶ୍ରୁ ସେହି କୃଷ୍ଣ ଶ୍ରମିକର ।

ଇତିହାସେ ନରତ୍ୱର ଯେତେ ଅପମାନ
ସକଳ ସେ ବ୍ୟଥା ମୋର ପ୍ରାଣେ ଧ୍ୱନିବାନ ।

## ଉତ୍‌ପୀଡ଼ିତ ଈଶ୍ୱର

କବିର ଅନ୍ତର ତଳେ କେ ଯେହ୍ନେ ଉତ୍ତରେ –
''ହେ ଶିଶୁ-ସ୍ୱଭାବ-କବି, କିଛି ଯେ ବୁଝନା
ମୋହରି ଅଶ୍ରୁ ଯେ କୋଟି ନୟନରୁ ଝରେ,
ସ୍ଥାବରେ, ଜଙ୍ଗମେ ଭୋଗେ ମୁହିଁ ଯେ ଯାତନା !

ତମେ ତ ଜାଣନା କବି, କ୍ଷୁଦ୍ରତମ କୀଟେ
କେ କାହିଁ ଅଜ୍ଞାତେ ହେଳେ ଦେଲେହେଁ କଷଣ,
ତା ତହୁଁ ବେଦନା ଫୁଟି ମଞ୍ଚେ ମୋର ଚିତ୍ତେ,
କି ବୁଝିବ କି ମୋ ବ୍ୟଥା ନର-ନିର୍ଯାତନ ?

ବିଷେ, ବେୟୋନେଟେ, ଗୁଳି, ଛୁରିକା, ଉପାସେ
ଯେ ଜୀବ ଯେଉଁଠି ମରେ ଘୋର ନିର୍ଯାତନେ,
ଅନ୍ୟାୟ ଯେ ଯହିଁ ସହେ ଲୋତକିତ ଶ୍ୱାସେ,
ସବୁ ତା ଭୋଗେ ମୁଁ ମୋର ବିରାଟ ମରମେ ।

ସାର୍ବଭୌମ ମୋ ମରମ, ଜାଣ ତମେ କବି,
ରହିପାରେ ଧରା-ଦୁଃଖ ନାହିଁ ଅନୁଭବି ?''

# କାହା ଲାଗି

ନିଠୁର କ୍ରୁଶରୁ ଝୁଲେ ଯୀଶୁର ପୁଣ୍ୟାଙ୍ଗ,
ସୁତୀକ୍ଷ୍ଣ ଆୟସୀ କଣ୍ଟା ଭେଦି ଅସ୍ଥି-ମାଂସ
ପଶିଛି ପଶ୍ଚାତେ କାଷ୍ଠେ, ପୂତ ଉତ୍ତମାଙ୍ଗ
ନିଜ ଭାରେ ନଇଁ, ଭୋଗେ କରୁଣ ପିଆସ ।

ଗଭୀର ବୀଭତ୍ସ କ୍ଷତୁ ବହଇ ଶୋଣିତ,
ଦୁଇକର, ଦୁଇପଦ ବିଦ୍ଧ କଣ୍ଟକରେ,
ମସ୍ତକେ କଣ୍ଟକ ପାଗ ରହିଛ ପିହିତ,
ଦୁଇଟି ଦୁର୍ବୃତ୍ତ ସାଥୀ ଦୁଇ ପାରୁଶରେ (୧) ।

ମୈତ୍ରୀର ଦେବତା ପ୍ରଭୁ ହେ ମହାମାନବ,
ମନୁଷ୍ୟ ମଙ୍ଗଳ ପାଇଁ ଧରା ଅବତାର,
କା'ଲାଗି ଭୋଗୁଛ ଏହି କ୍ରୂର ପରାଭବ,
ଶୋଣିତାକ୍ତ ଏ ନିଷ୍ଠୁର କଣ୍ଟକ-ସଂହାର ?

ପ୍ରଶ୍ନକର (୨) ଆତ୍ମା ତଳୁ କା'ର ବାଣୀ ସ୍ଫୁରେ –
"ତୁମ ଲାଗି ! ତୁମ ଲାଗି ! ଯୀଶୁ କ୍ରୁଶେ ଝୁଲେ !"

# ମୋ କ୍ରୁଶ

କେ ରୋଧିଛି ମୋର ପୃଷ୍ଠେ କ୍ରୁଶ-ନିଷ୍ପୀଡ଼ନ (୩)
ବ୍ୟାଧି, ବିଫଳତା, ନିନ୍ଦା, ଶୋକ, ବ୍ୟର୍ଥାଶାର ?

---

(୧) ଅନ୍ୟ ଦୁଇଟି ଖଣ୍ଡ କଏଦୀଙ୍କ ସହିତ ଯୀଶୁ ଖ୍ରୀଷ୍ଟଙ୍କୁ କ୍ରୁଶରେ କଣ୍ଟକବିଦ୍ଧ କରି ମାରି ଦିଆଯାଇଥିଲା । ପାଲେଷ୍ଟାଇନ୍‌ର ସମସାମୟିକ ଶାସକ ଓ ମୂର୍ଖ ଜନତାର ଆଖିରେ ମହାମାନବ ଯୀଶୁ ଜଣେ ବଜ୍ଜାତ୍ ଅପରାଧୀଠାରୁ ଭିନ୍ନ ନଥିଲେ ।

(୨) ପ୍ରଶ୍ନକର – ପ୍ରଶ୍ନକାରୀର ।

(୩) ଖ୍ରୀଷ୍ଟୀୟ ମତାନୁଯାୟୀ ଯୀଶୁ ଖ୍ରୀଷ୍ଟ ଆଗାମୀ ମାନବଜାତିର କଷ୍ଟ ଓ ପାପଭାର ଦୂର ବା ଲାଘବ କରିବା ପାଇଁ କ୍ରୁଶ-ମୃତ୍ୟୁର ମହାନ୍ କଷ୍ଟ ବରଣ କଲେ । କିନ୍ତୁ ଏଠାରେ ବ୍ୟଥିତ ଆତ୍ମା ଯୀଶୁ ଖ୍ରୀଷ୍ଟଙ୍କର କ୍ରୁଶ-ମରଣ ସତ୍ତ୍ୱେ, ସେ ନିଜେ ବାରମ୍ବାର କିପରି କ୍ରୁଶ-ବିଦ୍ଧ ହେଉଛି, ତାହା ବିଚାରି ବିସ୍ମିତ ହେଉଛି ।

କିପାଁ ସହସ୍ରଧା କ୍ଷତ-ଜର୍ଜର ଜୀବନ ?
ମୋ ପିଠିରେ ଲାଂଛନାର କଣ୍ଟକ ପ୍ରହାର (୧) ?

ଅଜ୍ଞତାର କଣ୍ଟାପାଗ ବନ୍ଧା ମୋ ମସ୍ତକେ (୧)
ସହସ୍ର ବୀଭତ୍ସ ତୃଷ୍ଣା-ନାଗୁଣୀ ଦଂଶିତ,
ଅନ୍ଧ ମୁଁ ଧାଇଁଛି ଯେତେ ଜୀବନର ପଥେ
ପୃଷ୍ଠେ ସେତେ ହୋଇଅଛି ଚାବୁକ ପତିତ (୧) ।

ଶୋକ, ବ୍ୟର୍ଥତାର ଉଷ୍ଣ ଶୋଣିତେ ଆପ୍ଲୁତ
ପିପାସୀ ମୁଁ ଡାକେ ଉଚ୍ଚେ କୃପାନୀର ପାଇଁ,
''ଚ୍ୟୁତ ମୋତେ କର ନାହିଁ ହେ ପିତା ଅଚ୍ୟୁତ'' (୧)
କାହିଁ ତବ ଜ୍ଞାନ, ପନ୍ଥା, କରୁଣା ବା କାହିଁ ?

ହେ ଯୀଶୁ, ଆପଣା ଦୁଃଖ-କ୍ରୁଶ-ନିକ୍ଷେପିତ
ମୋଲାଗି, କେମନ୍ତେ ହେଲେ କ୍ରୁଶ-ସନ୍ନିବିଷ୍ଟ ?

## କ୍ରୁଶ କୋଟି କୋଟି

ଯେତେ ଯେତେ ଅବତାର ରାଜିଲେ ଧରାରେ,
ପ୍ରଚାରିଲେ ମାନବର ଯାତନା-ହରଣ
ତାଙ୍କ ଆସିବାର ଲକ୍ଷ୍ୟ – ତାଙ୍କୁ କରୁଣାରେ;
ବିଧାତା, ମାନବ ଲାଗି କରିଛି ପ୍ରେରଣ ।

ଜଣେ ଧରା-ଜାତ ନର କହୁ ସତ୍ୟ କଥା –
ପୃଷ୍ଠେ ତା ନାହିଁଛି ଭାର ଦୁଃଖ ଯାତନାର,
ନେଇଛି ଅଦୃଶ୍ୟ ଆଲ୍ଲା ତା' ଜଂଜାଳ-ବ୍ୟଥା,
ତା ଜୀବନ ଆଜି ତେଣୁ ଆନନ୍ଦ-ବିହାର !

ପ୍ରତିଟି ମନୁଷ୍ୟ, ପ୍ରାଣୀ, ପୃଷ୍ଠେ ଧରି ଚାଲେ
ଅଦୃଶ୍ୟରେ ଜୀବନର ସହସ୍ର ଯନ୍ତ୍ରଣା,
ନିଜେ ସେ ବୋହିବ ତାହା ସ୍ୱେଦସିକ୍ତଭାଳେ,
ନିରର୍ଥକ ଅନ୍ୟ ଜନ-ବୋଧ-ଆଶ୍ୱାସନା ।

---

(୧) ଯୀଶୁଙ୍କୁ ଶୂଳିକୁ ନେବା ବାଟରେ ତାଙ୍କ ପିଠିରେ କଣ୍ଟାର ଚାବୁକ ପଡ଼ିଥିଲା । ଥଟ୍ଟାରେ ତାଙ୍କ ମୁଣ୍ଡରେ କଣ୍ଟାର ମୁକୁଟ ପିନ୍ଧାଇ ଦିଆଯାଇଥିଲା । ଯୀଶୁ କ୍ରୁଶବିଦ୍ଧ ହେଲା ପରେ ଦାରୁଣ ତୃଷାରେ ପାଣି ପିଇବାକୁ ମାଗିଥିଲେ ଓ ଅଧିକ କାରୁଣ୍ୟରେ ଡାକିଥିଲେ ''ହେ ମୋର ସ୍ୱର୍ଗସ୍ଥ ପିତା, ମତେ କି ତମେ ପରିତ୍ୟାଗ କଲ ?''

ଜଣେ ନୁହେଁ, କୋଟି କୋଟି ଜନ ଏ ଧରାର
ଚାଲେ ବୋହି ଶୋଣିତାକ୍ତ ପୃଷ୍ଠେ କ୍ରୁଶ-ଭାର ।

## ବିକାଶର ଅଂଗ

ଗ୍ରହ, ଚନ୍ଦ୍ର, ସୂର୍ଯ୍ୟ, ତାରା ଅନନ୍ତ ଆକାଶେ
ଅଶାନ୍ତେ ଧାବିତ କେଉଁ ଅଜ୍ଞାତ ଲକ୍ଷ୍ୟରେ,
ଉଦ୍ଭିଦୁଁ ମନୁଷ୍ୟଯାଏଁ ଜୀବନ ପ୍ରକାଶେ (୧)
କୋଟି କୋଟି ବର୍ଷଧରି ଏହି ଧରାତଳେ ।

ଏ ବିରାଟ ସୃଷ୍ଟି ଏକ ପରୀକ୍ଷା-ଆଗାର
ବିରାଟ ସେ କେଉଁ କବି, ଶିଳ୍ପୀ, ବିଜ୍ଞାନୀର,
ଭାଙ୍ଗେ ଗଢ଼େ, କ୍ଷଣେ କ୍ଷଣେ ସଂସାର, ସଂସାର,
ଶୂନ୍ୟ-ପୂର୍ଣ୍ଣ, ସୃଷ୍ଟି-ଲୟ ତତ୍ତ୍ୱ ସୁଗଭୀର (୨) ।

ସେହି ତତ୍ତ୍ୱେ ମନୁଷ୍ୟର ସୁଖ-ଦୁଃଖମୟ
ଧରାପଦେ ଦି'ଦିନର କ୍ଷୁଦ୍ର ଏ ଜୀବନ,
ପ୍ରଚାଳିତ — ବିକାଶର ମହାଭାବମୟ,
ଅଂଶ ତା'ର ଦୁଃଖ-କ୍ରୁଶ ଆନନ୍ଦେ ବହନ (୩) ।

ଭଙ୍ଗା-ଗଢ଼ା ଦୁଃଖ-ସୁଖ ରୂପେ ବ୍ୟାପ୍ତ କ୍ରୁଶ (୪)
ସୃଷ୍ଟିରେ — ବହନେ କିପାଁ ହେବା ପରାଙ୍ମୁଖ ?

## ନିଜେଇ ବୋହିବ

ଏ ଧରାର ସହଯାତ୍ରୀ ଶୁଣ ନରନାରୀ,
ଶେଷ ସତ୍ୟ — ନିଜ କ୍ରୁଶ ନିଜେଇ ବୋହିବ,

---

(୧) ଉଦ୍ଭିଦରୁ ମନୁଷ୍ୟଯାଏ ଜୀବନର ବିକାଶ ଏହି ଧରା-ପୃଷ୍ଠରେ କୋଟି କୋଟି ବର୍ଷଧରି ଚାଲିଛି — କେଉଁ ଲକ୍ଷ୍ୟରେ, କିଏ କହିବ ?

(୨) ଶୂନ୍ୟ ପୂର୍ଣ୍ଣ ହେଉଛି, ପୂର୍ଣ୍ଣ ପୁଣି ଶୂନ୍ୟ ହେଉଛି । ସୃଷ୍ଟି ପରେ ଲୟ ଓ ଲୟ ପରେ ସୃଷ୍ଟି ହେଉଛି । କାହିଁକି ଏ ସବୁ ଚାଲିଛି, କିଏ ତା'ର ତତ୍ତ୍ୱ ଜାଣେ ?

(୩) ପୃଥିବୀର ମହାଭାବମୟ ବିବର୍ତ୍ତନରେ ମନୁଷ୍ୟର ଅଂଶ ବୋଧହୁଏ ଦୁଃଖ-କ୍ରୁଶକୁ ଆନନ୍ଦରେ ବୋହିବା ।

(୪) ଏ ସଂସାର ଭଙ୍ଗା-ଗଢ଼ା ଓ ଦୁଃଖ-ସୁଖର ଅଗଣ କ୍ରୁଶରେ ପରିବ୍ୟାପ୍ତ । ତାକୁ ଆମ ପ୍ରତ୍ୟେକର ପିଠିରେ ବହନ ନ କରି ଅନ୍ୟ ଗତି କାହିଁ ?

ତଳେ ବା ଉପରେ ନାହିଁ କେ ସାହାଯ୍ୟକାରୀ –
କ୍ରୁଶ ବହନର କ୍ଳେଶୁ ଆସି ଉଦ୍ଧରିବ ।

ଈଶ୍ୱର ସର୍ବତ୍ର ବ୍ୟାପ୍ତ, ବାହାରେ ଅନ୍ତରେ,
ନିଜେଇ ଈଶ୍ୱର ତୁମେ ପ୍ରତି ଧରାବାସୀ,
ଈଶ୍ୱର-ବିକାଶ ପାଇଁ ଜନ୍ମଜନ୍ମାନ୍ତରେ (୧)
ବୋହିବାକୁ ହେବ ଅନୁଭବ-କ୍ରୁଶରାଶି ।

ପାଦ୍ରୀ-ମୁଲ୍ଲା ଟାଉଟରୀ, ତୀର୍ଥଯାତ୍ରା ଅବା
ବ୍ୟର୍ଥ ସବୁ, – ଧର୍ମ ନାମେ ବ୍ୟବସାୟ ଖାଲି,
କେତେ ବିନ୍ଦୁ ଅଶ୍ରୁ ତମେ ତେଜିଛ ଏ ଧରା-
ମାଟିପରେ, ହେବ ମାତ୍ର ବିଚାର ତାହାରି ।

ତୁମ ହାସ୍ୟ-ଅଶ୍ରୁ, ସୁଖ-ଦୁଃଖହିଁ ଈଶ୍ୱର,
ସେହି କ୍ରୁଶ – ବୋହିବ କି ତାକୁ କେ ଅପର ?

## କ୍ରୁଶର ଆନନ୍ଦ

ତୁମେ ଯେ ସଂସାର-ଦୁଃଖେ ନିତ୍ୟ ଦଗ୍ଧୀଭୂତ,
ହେ ନାଥ, ଶମିବା ଲାଗି ତୁମର ଦାହନ,
କିଛି ନ ପାରିଲି କରି ଅଳ୍ପ ବା ବହୁତ,
ଦେଖି ହେଲି ତୁନି, ଅବା କରିଲି କ୍ରନ୍ଦନ ।

ଘାରି ହୋଇ ଆପଣାର ସ୍ୱାର୍ଥ ଅହଂକାରେ
ଶୁଣିନି ବୁଭୁକ୍ଷୁ, ବ୍ୟାଧିଗ୍ରସ୍ତର ବେଦନା,
ଭାବିଲି ସେ ସବୁ ମୋର କର୍ତ୍ତବ୍ୟ ବାହାରେ –
ଶମିଲା କି କେହି କେବେ ମୋର ନିର୍ଯାତନା ?

ତୁମରେ ଚିହ୍ନିଲାଯାଁକେ ବଦ୍ଧ ଚେତନାରେ
ନିଜ ଦୁଃଖ ଛୋଟ ଛୋଟ, ଦିଶୁଥିଲା ବଡ଼,

---

(୧) ଆମ ପ୍ରତ୍ୟେକର ଜୀବନ ଦେଇ ଈଶ୍ୱର ବିବର୍ତ୍ତିତ ବା ବିକଶିତ ହେଉଛନ୍ତି । ସେହି ବିକାଶ ପାଇଁ ନାନା ଅନୁଭବର କ୍ରୁଶ ଆମ ପ୍ରତ୍ୟେକକୁ ବହନ କରିବାକୁ ହେବ । ସକଳ ବାହ୍ୟ ଅନୁଷ୍ଠାନ ମୂଲ୍ୟହୀନ । ଗଭୀର ଅନୁଭବରେ ଯେଉଁ ଦୀର୍ଘନିଶ୍ୱାସ ତମେ ଛାଡ଼ିବ, ଯେଉଁ ଅଶ୍ରୁ ତମେ ତ୍ୟାଗ କରିଛ, ସେହି ହିଁ କ୍ରୁଶ କେବଳ ନୁହେଁ, ସେହି ହିଁ ଈଶ୍ୱର ।

ଆଜି ତ ସଁପିଛି ସୁଖ, ଦୁଃଖ ତୁମଠାରେ,
ଦିଅ କିଛି ସ୍କନ୍ଧେ ଦୁଃଖ-ବେଦନା ତୁମର ।

ଜନ୍ମେ ଜନ୍ମେ ତୁମ୍ଭ କ୍ରୁଶ ସାନନ୍ଦେ ବହିବି,
ଯଦି ଖାଲି ଆଗେ ତବ ପଦ ଦେଖୁଥିବି ।

## କର୍ମଚକ୍ର

କେ କରିବ ଅନୁଗ୍ରହ, ଅବା ଅଭିଶାପ ?
ବିଶ୍ୱର ବାହାରେ କାହିଁ ବିରାଜେ ସେ ଜନ ?
କିବା ତା ଦୟାର ଅର୍ଥ, କିସ ଅବା ପାପ ?
କେମନ୍ତେ ବା ମିଳେ କ୍ଷାନ୍ତି ନେଲେ ତା ଶରଣ ?

ଅଣୁରୁ ଆକାଶଯାଏଁ ଅସୀମ ଜଗତ
ଦୂର୍ବାଦଳୁଁ ସୂର୍ଯ୍ୟଯାଏଁ ସ୍ଥାବର, ଜଂଗମ
ଅଲଂଘ୍ୟ ନିୟମଜାଲେ ସର୍ବେ ଗତାଗତ,
କାହୁଁ ହୁଏ କରୁଣାର ଏଥିକି ଆଗମ ?

ବିଧାତା ଅଟଇ ନିଜ କୃତ କର୍ମ ମାତ୍ର,
ସେହି ହିଁ କରୁଣା, ଶାପ ଅଦୃଶ୍ୟ ହସ୍ତର,
ସେହି ହିଁ ଲକ୍ଷ୍ମୀର ମାଳା, ଦାରିଦ୍ର୍ୟର ଦାତ୍ର,
କର୍ମର ନିୟମେ ରାଜେ ଚତୁର ଈଶ୍ୱର ।

ଆପଣାର କର୍ମଚକ୍ର ସ୍ୱର୍ଗ ଓ ନରକ,
ସେହି ଆମ କ୍ରୁଶ, ସେହି ମୁକୁଟ କାନକ (୧) ।

## ଦ୍ୱୈତ ସମାହାର

ଦେଖୁଛି ମୁଁ ରୁଦ୍ର, ଶିବ ଏକଇ ଦେବତା,
ପ୍ରକୃତି ବୀଭତ୍ସ, ମନୋହର ଏକାଧାରେ,

(୧) ସମଗ୍ର ସୃଷ୍ଟି ଅଳଂଘ୍ୟ ନିୟମଜାଲରେ ପରିଚାଳିତ । ସେଥିରେ ଏକ ଅଦୃଶ୍ୟ ଈଶ୍ୱରର କରୁଣା ବା ଅନୁଗ୍ରହର କଳ୍ପନା ଏକ ଅବାନ୍ତର କଥା । ନିଜର ଚିନ୍ତା ଓ କର୍ମ ହିଁ ପ୍ରତ୍ୟେକର ଭାଗ୍ୟ ବା ବିଧାତା । ସେହି ହିଁ ଅଭିଶାପ ଓ ଅନୁଗ୍ରହ, ସ୍ୱର୍ଗ ଓ ନରକ, କ୍ରୁଶ ବା ସ୍ୱର୍ଣ୍ଣମୁକୁଟ । କାନକ=ସ୍ୱର୍ଣ୍ଣମୟ । ଦାତ୍ର=ଦାଆ । ଦାରିଦ୍ର୍ୟ ମନୁଷ୍ୟକୁ କାଟିକୁଟି ଦିଏ ବୋଲି ଏଠାରେ ଦାଆର କଳ୍ପନା କରାଯାଇଛି ।

ଦୁଇ ଅର୍ଥେ ପ୍ରଯୋଜିତ ଏକଇ ବାରତା,
ଶାନ୍ତି ଓ ସଂଗ୍ରାମ ଅଧିଷ୍ଠିତ ଏକାଠାରେ ।

ମୁକ୍ତା-ମନୋହର ବାରି ପ୍ରଭାତ ଶିଶିରେ,
ପ୍ଲାବନ ପ୍ରଳୟଂକରୀ ରୂପେ ଦିଏ ଦେଖା,
ଅନ୍ନବିଧାୟିନୀ ଅଗ୍ନି କୁଟୀରେ କୁଟୀରେ
ଧ୍ୱଂସେ ଛାଡ଼ିଯାଏ ତାର ବୁଭୁକ୍ଷାର ଲେଖା ।

କାନ୍ତ ପ୍ରଣୟିନୀ ହୁଏ କୃପଣା ଗୃହିଣୀ,
ଶରଶର-ନିକ୍ଷେପିଣୀ ସ୍ୱାର୍ଥର ସଂଗ୍ରାମେ,
ମନୁଷ୍ୟର ଏକ ବୁଦ୍ଧି ଉଚ୍ଚ ବିହାରିଣୀ,
ପୁଣି ନିମ୍ନ-ପ୍ରଧାବିନୀ, ତୁଚ୍ଛର ସନ୍ଧାନେ ।

ଜନନି, ବିଚିତ୍ର ଏହି ଦ୍ୱୈତ ସମାହାର –
ବୁଝିଲେ, ନ କରେ ଆଉ ବିଭ୍ରାନ୍ତ ବିଚାର ।

## ଆପେକ୍ଷିକ ଦୃଷ୍ଟି

କେ ଜାଣେ ଏ ଜୀବନର ଦୀର୍ଘ ଯାତ୍ରାପଥେ
ପାଛଶାଳୁ ପାଛଶାଳେ ଲୋକୁଁ ଅନ୍ୟ ଲୋକେ
ଲୋଡ଼ା ଜାଣିବାର ଉଭେ, (୧) କୁଶଳେ ସଙ୍କଟେ,
ବୋହିବାର କିଛି କ୍ରୁଶ, ଭୋଗିବାର ଶୋକେ ।

ବିବର୍ତ୍ତନ ଲାଗି ଲୋଡ଼ା ବହୁ ଅଭିଜ୍ଞତା
ଦୁଃଖ, ନିର୍ଯାତନା ଏକ ଅତ୍ୟାଜ୍ୟ ବିଧାନ,
ପ୍ରାବୃଟ ଆସାର ପାଇଁ ଗ୍ରୀଷ୍ମେ ଭୂମି-ଫଟା
ଲୋଡ଼ା ଯେହ୍ନେ, ଦୁଃଖ ହୁଏ ସୁଖର ସୋପାନ ।

କେ ଜାଣେ କେ ସୁଖୀ – ହତ ଅବା ହତ୍ୟାକାରୀ,
ଦୃଷ୍ଟ ଦୁଃଖ ପରେ ଥିବ ଅଦୃଷ୍ଟ ସମ୍ଭୋଗ,
ମୃତ୍ୟୁ ଜୀବନର ବୈରୀ, ଅବା ଶୁଭାଚାରୀ ?
ଯୋଗ ପରି ଲୋଡ଼ା ମଧ ଜୀବନେ ବିୟୋଗ ।

---

(୧) ଉଭେ – ଉଭୟକୁ । ଜୀବନରୁ ଜୀବନାନ୍ତରେ, ଲୋକରୁ ଲୋକାନ୍ତରେ ଯିବାପଥରେ ବୋଧହୁଏ ଆମର କୁଶଳ ଓ ସଂକଟ ଉଭୟ ଲୋଡ଼ା । ସେହି ଭାବରେ କ୍ରୁଶ ବହନ ଆମ୍ଭର ପ୍ରୟୋଜନ ।

ଆପାତ-ସୌଭାଗ୍ୟ-ଦୁଃଖ, ବଂଚ଼ା-ମରା ପରେ
ଅଦେଖା ବିଚ଼ାରପତି ନ୍ୟାଯ୍ୟ ଯାହା କରେ (୧) ।

## ରସାଳ ଦୁଃଖ

ସେ ମହା ଏକକ ଯେଣୁ ବିମୁଗ୍ଧ ବହୁରେ,
ଏକକୁ କରିଛି ତେଣୁ ଅଗଣେ ପ୍ରକାଶ,
ଭରିଛି ଅଗଣ ରସ ବିରାଟ ବୁକୁରେ
ଭୋଗୁଛି ପ୍ରତ୍ୟେକ ହୃଦେ ବସି ସେହି ରାସ ।

ସେ ବିରାଟ ଅନୁଭବୀ, ଅୟୁତ ନୟନେ
ଭରିଛି ବା ଅଶ୍ରୁ-ଧାର ନିଜ ମୋଦପାଇଁ,
ପ୍ରଣୟ, କଳହ, ହିଂସା, ଜିଗୀଷା ଜୀବନେ,
ଘଟେ ଘଟେ ପୂର୍ଣ୍ଣ, ସୃଷ୍ଟି-ଲକ୍ଷ୍ୟ ଅନୁଯାୟୀ ।

ବାତ୍ସଲ୍ୟ ଦେବାକୁ ଢାଳି ହୁଏ ସେ ଜନନୀ,
ହୁଏ ହିଂସ୍ର ରୋଧିବାକୁ ଅନ୍ୟୋନ୍ୟ ଅନ୍ୟାୟ;
ବ୍ୟାଧି ହୁଏ ସୁସ୍ଥତାର କ୍ରୂର ଚେତାବନୀ,
ଲୁଣ୍ଠନ, ସଂଗ୍ରାମ ଅବା ସାମ୍ୟର ଉପାୟ ।

ହେଲେହେଁ ଈପ୍‌ସିତ ସଦା ଦୁଃଖରେ ରଂଜିତ,
ନାନା ବର୍ଣ୍ଣେ କରିଛି ସେ ଜୀବନ ଭୂଷିତ (୨) ।

## କିଛି ପ୍ରଶ୍ନ ନାହିଁ

ସ୍ତବ୍ଧ ନିଶୀଥିନୀ, ଯେବେ ସୁପ୍ତ ଚରାଚର
ନଭ-ଗମ୍ବୁଜର ମଣିମୟ ଛାତ ତଳେ;

(୧) ଆମ ବିଚ଼ାରରେ ଯାହା ଦୁଃଖ ବା ସୌଭାଗ୍ୟ, ବଂଚ଼ିବା ବା ମରିବା, ତାହା କେବଳ ଆପାତ । ସତ୍ୟ କେବଳ ଜଣା ଅଦୃଶ୍ୟ ବିଚ଼ାରପତିକୁ । ସେ ସେହି ଅନୁସାରେ ବ୍ୟବସ୍ଥା କରିଥାଏ ।

(୨) ଆମ୍ଭମାନଙ୍କର ଈପ୍‌ସିତ ବରାବର ଦୁଃଖରେ ରଂଜିତ; କିନ୍ତୁ ତାହା ନଥିଲେ ସୃଷ୍ଟିରେ କେବଳ ଗୋଟିଏ ବର୍ଣ୍ଣ ଥା'ନ୍ତା — ଯାହା ଭୀଷଣ ଦୃଷ୍ଟିକଟୁ ହୋଇଉଠନ୍ତା । ଏ ସୃଷ୍ଟି ଦୁଃଖମୟ; କିନ୍ତୁ ଅଗଣିତ ବର୍ଣ୍ଣରେ ବର୍ଣ୍ଣାଢ୍ୟ ।

ଭାଳୁଥିଲି ଦିନେ ଭାଗ୍ୟ-ଜୀବନ-ହଂସର
ବସି ଏକା ଧରାମାଟି ଦୁଃଖାସନ ପରେ ।

ଭାଳୁ ଭାଳୁ ଜୀବହଂସ ଊର୍ଦ୍ଧ୍ୱେ ଗଲା ଉଡ଼ି
ଉଚ୍ଚେ ଉଚ୍ଚେ ଅନ୍ତରୀକ୍ଷେ ତେଜି ଧରା ସୀମା
ଯେତେ ଯାଏ ସେତେ ନିଜ ସତ୍ତା ଯାଏ ବୁଡ଼ି
ଓତପ୍ରୋତେ ଭରେ ପ୍ରାଣେ ଅନନ୍ତ ମହିମା ।

ଦେଖେ ସେ ପଶ୍ଚାତେ, ଅଗ୍ରେ, ଉପରେ, ନିମ୍ନରେ
କୋଟି କୋଟି ଜଗତର ଜ୍ୟୋତିଷ ନର୍ତ୍ତନ,
ସେ ନିଖିଳ ଲୋକୁଁ ଉଠେ କାନ୍ତ ସମସ୍ୱରେ
ଯେ ସଙ୍ଗୀତ ଶୁଣିନି ତା ଧରିତ୍ରୀ ଶ୍ରବଣ ।

କହିଉଠେ ଜୀବହଂସ ସେ ଗୀତେ ମିଶାଇ
"ନମସ୍କାର ମୋର ନିଅ, କିଛି ପ୍ରଶ୍ନ ନାହିଁ ।"

## ସର୍ବତ୍ର ବିରାଟ ଅଛି ଲୁଚି ସଂଗୋପନେ

ନିଶୀଥର ନିଶବଦ ବ୍ୟାପ୍ତ ଅନ୍ଧକାରେ
ଦେଖୁଥିଲି ଦିନେ କୋଟି ନକ୍ଷତ୍ର ରୂପସୀ,
କ୍ଷିପ୍ତ ଯିବି-ଯିବି ଭାବ ଯେହ୍ନେ ପ୍ରତିଠାରେ
ଥର-ଥର ଲାଜ-ଜ୍ୟୋତି ଗମନେ ବରଷି ।

ବିପୁଳ ସେ ରୂପଲୀଳା ବାହ୍ୟ ବ୍ୟୋମାଙ୍ଗନେ
ଦେଖି ଦେଖି ନେତ୍ର ମୋର ହେଲା ନିମୀଳିତ,
ଦେଲି ଦୃଷ୍ଟି ପ୍ରକୃତିର ଅନ୍ତର-ଗଗନେ
ଅସୀମ, (୧) ସୀମାରେ ଯହିଁ ହୋଇଛି ବିମ୍ବିତ ।

ଦେଖେ ଜୀବହଂସ ମହା ବିସ୍ମିତ-ବୁଦ୍ଧିରେ
ବିଶ୍ୱ ରେଣୁ ରେଣୁ ରାଜି ସେହି ସୌରଲୀଳା,
ସୃଜନର ସେ କୌଶଳ, କ୍ଷୟିଷ୍ଣୁ ଶରୀରେ
ଅକ୍ଷୟର ମହାସ୍ପର୍ଶ, ଚଳନ୍ତିରେ ଚିରା (୨) ।

---

(୧) ବାହାରେ ପ୍ରକୃତିର ବିରାଟ ବ୍ୟାପ୍ତି ଓ ବିପୁଳତା ଦେଖିସାରିଲା ପରେ ଆତ୍ମା ସୃଷ୍ଟିର ଅଭ୍ୟନ୍ତରକୁ ଚାହିଁଲା । ସେଠି ସେ ଦେଖିଲା ପ୍ରତି ପିଣ୍ଡରେ ବ୍ରହ୍ମାଣ୍ଡ; ପ୍ରତି ଅଣୁଭିତରେ ଏକ ସୌର-ଜଗତ ।

(୨) ଚିରା – ଯାହା ଚିର । ସୃଷ୍ଟିର ପ୍ରତ୍ୟେକ ଚଳମାନ ବସ୍ତୁ ଭିତରେ ଚିର ବର୍ତ୍ତମାନ ।

ଜୀବହଂସ ସ୍ତବ୍ଧ ହୋଇ ବୁଝେ ମନେ ମନେ
ସର୍ବତ୍ର ବିରାଟ ଅଛି ଲୁଚି ସଂଗୋପନେ ।

## ଜୀବହଂସ ଆତ୍ମ-ସରେ ଖେଳେ ସନ୍ତୋଷରେ

ବାହାରେ ଏ ବହୁରଙ୍ଗ ବିଶ୍ୱଦେବତାର,
କୋଟି ଦୃଶ୍ୟ, ଅଗଣିତ ଲକ୍ଷ, ପଥ, ତୃଷା –
ବାସନା-ଚାଳିତ ଚିତ୍ତ ଧାଏଁ ଶତ-ଧାର
ଭୁଲି ଆତ୍ମ-ଗନ୍ତାଘରେ ତୃପ୍ତିର ମଂଜୁଷା ।

ଜୀବହଂସ ଉଡ଼ି ଚାଲେ ଦିଗଦିଗନ୍ତରେ
କୋଟି ସୂର୍ଯ୍ୟ ତାରା ମେଳେ, ମହା-ବ୍ୟୋମାଙ୍ଗନେ,
ବିରାଟରେ ଦେଖିବ ସେ, ଅସ୍ଥିର ସେ ଘରେ,
ବାହାରକୁ ଭୋଗିବ ସେ ନିଃଶେଷିତ ମନେ ।

ଶେଷେ ଦିନେ ଦେଖେ ଶ୍ରାନ୍ତ ସ୍ତବ୍ଧ ଜୀବହଂସ
ବାହାରର ସବୁ କେନ୍ଦ୍ର ଅନ୍ତରେ ରାଜିତ,
ବାହାରେ ଯେ ଭୋଗ-ଊର୍ମି ଭାସେ ସହସ୍ରଶଃ
ଅନ୍ତରେ ସେ ସମସ୍ତର ଉତ୍ସ ଅବସ୍ଥିତ ।

ବିରାଟକୁ ଦେଖିପାରି ଆପଣା ଅନ୍ତରେ
ଜୀବହଂସ ଆତ୍ମ-ସରେ ଖେଳେ ସନ୍ତୋଷରେ ।

## ସ୍ରଷ୍ଟାର ଯାଦୁ

ଧ୍ୟାନେ ଦିନେ ଊର୍ଦ୍ଧ୍ୱେ ଉଠିଗଲି ମହାକାଶେ
ଅନ୍ତହୀନ ଅନ୍ତରୀକ୍ଷେ ଯହିଁ ଚାଲେ ଲୀଳା,
ନକ୍ଷତ୍ରେ ନକ୍ଷତ୍ରେ ପ୍ରୀତି ଅ-ବାଣୀ ସମ୍ଭାଷେ
କୋଟି କୋଟି ଗ୍ରହ ମେଳେ କୋଟି ରବି କ୍ରୀଡ଼ା ।

ନିମ୍ନେ ମୁଁ ଚାହିଁଲି ଥରେ ନିଜ ଜନ୍ମମାଟି
କାହିଁ ସେ ପୃଥିବୀ, ପୁଛି – କାହିଁ ସେ ବିଚାରୀ ?

ଚଉପାଶେ ଊର୍ଦ୍ଧ୍ୱେ ଅଧେଃ କୋଟି କୋଟି ଭାତି,
ଧରା-ବିନ୍ଦୁ କେଉଁ କୋଣେ ନ ପାରିଲି ବାରି (୧)।

ବିଚାରିଲି ହାୟ, ସେଇ ନଗଣ୍ୟ ବିନ୍ଦୁରେ
ଅହମିକା, କ୍ଷୁଦ୍ର ଏହି ନଗଣ୍ୟ ସତ୍ତାର
ଗ୍ରାସୁଥିଲା ଦିନେ ଯାହା ବିପୁଳ ତ୍ରିପୁରେ,
ସତ୍ତା ନାହିଁ ଧରାପଡ଼େ ସମଗ୍ର ଧରାରେ !

ବିରାଟ ଭୂମାରେ କରି ମୁଗ୍ଧ ନମସ୍କାର,
କହିଲି 'ମୋ ଅହମିକା ତବ ଇନ୍ଦ୍ରଜାଲ।'

# ଆନନ୍ଦମୟ ସୃଷ୍ଟି

ଭେଦି ଏ ଧରାର ସବୁ ନୈରାଶ୍ୟ, କ୍ରନ୍ଦନ
ଦେଖୁଛି ମୁଁ ବହେ ମହା ଆନନ୍ଦର ସ୍ରୋତ,
ଚାଲିଛି ଦୁର୍ବାର-ଗତି, ନ ମାନି ବନ୍ଧନ
ଜଡ଼ିତ ଧରାର ପ୍ରତି କଣେ ଓତପ୍ରୋତ।

ସେହି ସ୍ରୋତେ ଅବଗାହି ଦୀନତମ ଶିଶୁ
ଧରାର ଧୂଳିରୁ ପାଏ ଜୀବନ-ଆନନ୍ଦ,
ବଞ୍ଚିବାରେ ପା'ନ୍ତି ସୁଖ ଦେବଯାଏଁ କୀଟୁଁ,
ବକ୍ଷରେ ଭରଇ ଆଶା, ଅଶ୍ରୁ-ସିକ୍ତ ଗଣ୍ଡ (୨)।

ଜୀବନକୁ ମୃତ୍ୟୁଂଜୟ କରିଛି ସେ ଆଶା,
ଦୁଃଖକୁ କରଇ ସୁଖ-ସଂଗ୍ରହ-ସୋପାନ,
ଚାରିଆଡ଼େ ଆନନ୍ଦର, ବିଜୟର ଭାଷା
ଦୁଃଖ-ମୃତ୍ୟୁ ବକ୍ଷେ ଧରି ଜୀବନର ଧ୍ୟାନ।

ସୃଜନରେ ଦୁଃଖ ଜଡ଼ି ଚତୁର ବିନ୍ଧାଣି
କରିଛି ଜୀବନ-ସ୍ୱାଦ ତୀବ୍ର ଜାଣି ଜାଣି।

---

(୧) ସମଗ୍ର ଦୃଶ୍ୟମାନ ସୃଷ୍ଟି ତୁଳନାରେ ଆମ୍ଭମାନଙ୍କର ଏହି ଧରଣୀ ହିମାଳୟ ସମ୍ମୁଖରେ ଏକ ସୋରିଷ ପରି। କିନ୍ତୁ ପ୍ରତି ନଗଣ୍ୟ ମନୁଷ୍ୟର କ୍ଷୁଦ୍ର ସତ୍ତାର ଅହମିକା ନିକଟରେ ସମଗ୍ର ସୃଷ୍ଟି ସୋରିଷଟିଏ ମାତ୍ର। ଆମ୍ଭା ଭାବେ ଏହି ଅହମିକା ସ୍ରଷ୍ଟାର ଏକ ବିଚିତ୍ର ଇନ୍ଦ୍ରଜାଲ। ଭାତି=ଦୀପ୍ତି, ଅର୍ଥାତ୍ ଜ୍ୟୋତିଷ୍କରାଜି।

(୨) ଗଣ୍ଡ ଅଶ୍ରୁ-ସିକ୍ତ ହେଲେହେଁ ତେଣେ ବକ୍ଷରେ ଆଶା ପୂରିରହିଛି।

## ଦୁଃଖ-ଜୟ

ଜୀବନର ଦୁଃଖ ତେଣୁ ଆଜି ସଂକୁଚିତ
ମହାସୃଷ୍ଟି ମହାକାଳ ପରିକଳ୍ପନାରେ,
ଭିନେ ଦିଶୁଥିଲା ଯାହା, ଅତି ଅବାଂଛିତ
ଅତି ଆବଶ୍ୟକ ତାହା ସମଗ୍ର ବିଚାରେ ।

ଅଛି ଦୁଃଖ ଜୀବନରେ, ମୃତ୍ୟୁ ସୃଜନରେ
ଅଛି ଦୀନ ଦୁଃଖୀ ପ୍ରତି ବଳୀ ଅତ୍ୟାଚାର (୧) ।
ଅଛି କିନ୍ତୁ ପ୍ରତିକାର ମନୁଷ୍ୟ ଅନ୍ତରେ, –
ଜୀବନର ଜୟକାର ତା'ରି ଆବିଷ୍କାର ।

ମନୁଷ୍ୟର ଜୟ ଯାହା, ଜୟ ଈଶ୍ୱରର,
ଜୟର ଗୌରବ ପାଇଁ ଯୁଦ୍ଧ-ଆୟୋଜନ,
ସେ ଆହବେ ପ୍ରତି ନର ସସୀମ ଈଶ୍ୱର,
ପ୍ରତି ଜୟେ ଗୁପ୍ତ ଭୂମା ଲଭେ ଆବର୍ତ୍ତନ ।

ହେ ପିତ, ପତିତ ମୋର ଜାତିରେ ଶିଖାଅ,
ଜିଣିବାକୁ ଦୁଃଖେ, ନାହିଁ ଭାବି ଅସହାୟ ।

## ନାଶ ଓ ସୃଷ୍ଟି

ଜଳ ମରି ଜନ୍ମ ଲଭେ ସହସ୍ର ବିନ୍ଦୁରେ,
ବୀଜ ମରି ପୁଣି ହୁଏ ପୂର୍ଣ୍ଣ ବନସ୍ପତି,
ଅଗଣିତ ପୁଷ୍ପ ଝଡ଼େ କାଳର ବୁକୁରେ,
ଶୂନ୍ୟ ବୃନ୍ତେ ପୁଣି ଉଠେ ପୁଷ୍ପର ଆରତି ।

କାଳର ଅବୋଧ ଆଦ୍ୟ ମୃତ୍ୟୁ ଖାଏ ଜୀବ,
ପ୍ରତି କ୍ଷଣେ ଜୀବନର ଲିଭେ କୋଟି ଦୀପ,
ରୁଦ୍ର ଆରପାଖେ ଯେହ୍ନେ ଅପେକ୍ଷିଛି ଶିବ,
ଜୀବ ଫୁଟେ ପୁଣି ଯଥା ପ୍ରାବୃଟରେ ନୀପ (୨) ।

---

(୧) ଏ ସୃଷ୍ଟିରେ ଜୀବମାତ୍ରେ ନିଜ ବକ୍ଷର ଦୁଇପାଖେ ଦୁଇଟି ଶିଶୁପରି 'ଦୁଃଖ ଓ ମୃତ୍ୟୁକୁ ଧରିରହିଛନ୍ତି; କିନ୍ତୁ ତା ସତ୍ତ୍ୱେ ସେମାନେ ଜୀବନର ଧ୍ୟାନରେ ସର୍ବଦା ରତ । ଜଡ଼ି = ଜଡ଼ିତ କରି ।

(୨) ପ୍ରତି କ୍ଷଣରେ ଜୀବ ମୃତ୍ୟୁ-କବଳିତ ହେଉଛି; କିନ୍ତୁ ରୁଦ୍ର ଓ ଶିବ ଗୋଟିଏ ଦେବତାର ଏପାଖ ଓ ସେପାଖ ପରି । ବର୍ଷାକାଳରେ କଦମ୍ବକେଶର ପରି ସୃଷ୍ଟିରେ ଜୀବ ପୁଣି ଫୁଟିଉଠୁଛି ।

ବିନାଶର ସର୍ବ-ବ୍ୟାପୀ ଊର୍ମି ତଳେ ତଳେ,
ପ୍ରବାହିତ ସୃଜନର ଅସୀମ ପ୍ରବାହ;
ଅମୃତ ରହିଛି ଯେହ୍ନେ ମୃତ୍ୟୁର ଅନ୍ତରେ,
ରବିତାପେ ଲୁକ୍କାୟିତ ଯେହ୍ନେ ବାରିବାହ ।

ସେହି ଅମୃତତ୍ୱ ମାଗେ ହେ ମହା ଜନନୀ,
ମୃତ୍ୟୁ ଯହିଁ ଜୀବନର ଅଟେ ଆଗମନୀ ।

## କ୍ରୁଶ ପ୍ରତ୍ୟେକର

କୋଟି କୋଟି ନରନାରୀ ପୃଥିବୀ-ଗ୍ରହର,
ଆନନ୍ଦରେ ନିଅ ବରି କ୍ରୁଶ ନିଜ ନିଜ,
ପରମ ପ୍ରତୀକ କ୍ରୁଶ ଊର୍ଦ୍ଧ୍ୱ-ଗମନର,
ଜୀନ (୧), ପୁଣ୍ୟ, ସର୍ବଶାସୀ ନରତ୍ୱର ବୀଜ ।

ଆମେଇ ପ୍ରତ୍ୟେକେ ଏକ ଗୋପନ ଈଶ୍ୱର,
ଆମ କର୍ମେ ହେବ ଆମ୍ଭ ଈଶ୍ୱରୀଭବନ,
ପ୍ରତିଟି ସଂଗ୍ରାମେ ଆତ୍ମା ଉଠେ ଊର୍ଦ୍ଧ୍ୱତର,
ପ୍ରତିଟି ସଂଗ୍ରାମୀ-କର୍ମ (୨) ତପସ୍ୟା ପରମ ।

ଜୀବନ ସଂଗ୍ରାମଶୀଳ, ଗୌରବ ସଂଗ୍ରାମେ,
ଲୋକସଂଗ୍ରହରେ ଅବା ଆତ୍ମା-ଉନ୍ନୟନେ,
ବରି ନିଅ ସେ ସଂଗ୍ରାମ-କ୍ରୁଶ ସସମ୍ମାନେ
ଚରିତାର୍ଥ କର ତବ ମାନବ-ଜନନେ ।

ସୃଷ୍ଟିର ସମୂହ କ୍ରୁଶ ଭୂମା ପୃଷ୍ଠେ ବହେ,
ଆମେ ଯେ ବୋହିବା ଆମ କ୍ରୁଶ, ବୁଦ୍ଧି କହେ ।

---

(୧) ଜୀନ – ଜୟୀ ।

(୨) ସଂଗ୍ରାମୀ-କର୍ମ – ଯେଉଁ କର୍ମ ସଂଗ୍ରାମ ସୂଚନା କରେ, ଯାହା ବିରୁଦ୍ଧ ପରିବେଶ ସହିତ ସଂଘର୍ଷ ଓ ଜୟ ସୂଚନା କରେ । ନିଜର ଉନ୍ନତି ପାଇଁ ହେଉ ବା ଲୋକକଲ୍ୟାଣ ପାଇଁ ହେଉ, ଏ ପ୍ରକାର କର୍ମମାତ୍ରେ ଆତ୍ମାକୁ ଊର୍ଦ୍ଧ୍ୱକୁ ଉଠାଇନେବାର ଆଶା କରାଯାଏ ।

# ପରିବର୍ତ୍ତିତ

ଜାଣିଲି ଯା ତମ ସଙ୍ଗେ ମୋହର ମମତା –
ବାଧେ ନାହିଁ ଆଉ ବେଶି ଜୀବନର ଦାଉ,
ଲୋତକ ହରାଏ ତା'ର ପ୍ରାଚୀନ ତିକ୍ତତା
ଅପମାନେ ବିଦ୍ୱେଷର ନିଆଁ ନାହିଁ ଆଉ ।

ନାହିଁ କ୍ଷୁଦ୍ର ସଂକୀର୍ଣ୍ଣ ମୁଁ ରୁଗ୍ଣ, ଶଂକାକୁଳ,
ଅନୁଭବେ ମୁଁ ବିରାଟ; ସୋଽହଂ ସନାତନ,
ନିଜ ଦୁଃଖ ଭୁଲି ବିଶ୍ୱ-ଦୁଃଖରେ ବ୍ୟାକୁଳ
ନିୟତିର କଲ୍ୟାଣରେ ଆନନ୍ଦେ ମଗନ ।

ଆଜି ମୁଁ ସ୍ୱତନ୍ତ୍ର ନୁହେଁ, ଅଂଶ ହେ ତୁମରି
ତମ-ମୋର ସୁଖ ଦୁଃଖ ଗୁନ୍ଥା ଏକ
ଦୁଃଖ ଆଜି ସନ୍ତୋଷର ଆର-ପାଖ ପରି,
ସୁଖେ ଆଜି ଅହଂହୀନ କୃପା ତୋର ଫୁଟେ ।

ତମ ଦେଇ ବିଶ୍ୱସାଥେ ମିଳିତ-ଜୀବନ,
ଆନନ୍ଦେ ଆଜି ମୋ କ୍ରୁଶ କରେ ମୁଁ ବହନ ।

# ଜନନୀସଂଘ

ବିରାଟ ଏ ସ୍ୱାର୍ଥ-ଯଜ୍ଞେ ପରାର୍ଥ ଆତ୍ମାର
କୋମଳ ମଧୁର ଚିତ୍ର ମିଳେ କେଉଁ ଥାନେ –
ନିଜ ରକ୍ତେ ପରିଣତି ଅନ୍ୟର ଆହାର;
ବଁଚାଏ କେ ସହସ୍ରରେ ବିନା ଅଭିମାନେ ?

ବରେଣ୍ୟା ସେ ଜଗତର ଜନନୀର ଦଳ,
ଜନ୍ମ ଯା'ର ଖାଲି ଅନ୍ୟେ ବଞ୍ଚାଇବା ପାଇଁ,
ଆନନ୍ଦ, କଲ୍ୟାଣ ଉତ୍ସ କୋଟି ଜୀବନର,
ଦାନେ ଯାଁକ ବିନିମୟ ପ୍ରତିଆଶା ନାହିଁ ।

ହିଂସାରେ ବୀଭତ୍ସ ଏଇ କ୍ଷିପ୍ର ଗ୍ରହ ତଳେ
ମାତୃତ୍ୱର କୋଟି ନୀଡ଼ ଶାନ୍ତି, ପ୍ରଣୟର,
ଯେ ନୀଡ଼େ ତ୍ୟାଗର ଦୀପ ପୁଣ୍ୟାଲୋକେ ଜଳେ,
ଜୀବଦେହେ ହୋମ-ଶିଖାମଧ୍ୟ ଦେବତ୍ୱର ।

ଧରାର କଲ୍ୟାଣମୟୀ ମିଳିତ ମାତୃତ୍ୱ
କରି କି ପାରେନା ଦୁଃଖ, ହିଂସା ଦୂରୀଭୂତ ?

## ଅନୁତାପ କ୍ରୁଶ

ଧରିତ୍ରୀ, ମାନବ, ପ୍ରାଣୀ, ବନ୍ଧୁତ୍ୱ ସମାଜ
ପ୍ରତ୍ୟେକର ପ୍ରତି ଯାହା କରିଛି ଅନ୍ୟାୟ,
ଆଣିଛି ଯା ଅପକର୍ମେ ଆତ୍ମା ପ୍ରତି ଲାଜ,
ସ୍ୱାର୍ଥ ପାଇଁ ଧର୍ମକୁ ଯା ଦେଇଛି ବିଦାୟ;
କୁଟୁମ୍ବ, ଜନମ ଭୂଇଁ, ଭାଇ, ପ୍ରତିବେଶୀ,
ଯାହାକୁ ବରିଲି ଅବା ଜୀବନ ଦୋସର,
ଯୁଗ୍ମ-ରକ୍ତୁ ଜାତ ଜୀବ-ପୁଷ୍ପେ, ଅଳ୍ପ ବେଶି –
କା' ପ୍ରତି ନୋହିଛି ମୁହିଁ ନିଷ୍ଠୁର ପାମର ?

ନାହିଁ ଚାହେ ଅନୁକମ୍ପା କେଉଁ ଦେବତାର,
ନ ଚାହେ ଅନ୍ୟ କେ ନେବ କଳଂକ ଲିଭାଇ,
ଆପଣା ଅଂଗେ ମୋ ଅଂଗୁ ମୋର ଦୁଃଖଭାର
ନିଜେ ପୃଷ୍ଠେ ନେବ, ମୋତେ କରୁଣା ଦେଖାଇ ।

ବ୍ୟଥା ଦେଲି ଯାହା ଅନ୍ୟ ଅନ୍ୟର ମରମେ
ଅନୁତାପ-କ୍ରୁଶ ବୁହେଁ ଜନମେ ଜନମେ ।

## ଜଣକର ଉପହାର

ଆସିଥିଲି ଅଜ୍ଞାତରେ, ଯିବି ଚାଲି ଧରାରୁ ନିଃଶବ୍ଦେ,
ଅଧିକ ବାସନା ନାହିଁ, ବିଜ୍ଞପ୍ତିର ନାହିଁ ଦରକାର,
ଯିବାବେଳେ ବଂଧୁଜନେ ଦେଇଯିବି ସାନ୍ତ୍ୱନା ବା ପଦେ,
ଏ ଧରା ଜନନୀ ପଦେ ଦେଇଯିବି ନମ୍ର ନମସ୍କାର ।

ଏ ଧରାର ସ୍ୱର୍ଣ୍ଣଶସ୍ୟେ ପିଣ୍ଡ ମୋର ଗଠିତ, ଜୀବିତ
ଏ ଧରାର ଜଳ, ବାୟୁ ପ୍ରାଣେ ମୋର କରିଲେ ପୋଷଣ,
କିବା ଦେବି ପ୍ରତିଦାନ ? କେବଳ କି ଭସ୍ମ ଅବାଞ୍ଛିତ ?
ଆବର୍ଜନା ଯିବି ଛାଡ଼ି ତା'ଠି, ଯିଏ ପୋଷିଲା ଜୀବନ ?

ଭୁବନଜନନୀ, ଦିଅ ଏଇ କ୍ଷୁଦ୍ରତମ ସାର୍ଥକତା,
ଯିବା ଆଗୁଁ ଧରା ଅଙ୍ଗେ ଥାପି ଯାଏ କିଛି ଅଳଙ୍କାର,
ଅଧିକା ଶ୍ୟାମଳ ଖେତ, କିଅବା ବା ସୁନ୍ଦର ବାରତା,
କେତୋଟି ନୟନୁ ଅଶ୍ରୁ ପୋଛିବାର ପୁଣ୍ୟ ଅଧିକାର ।

ଜଣକର ହେଲେ ଯଦି କରିଯାଏ କିଛି ଉପକାର
ମଣିବି ଜୀବନ ଧନ୍ୟ, ସୁପୁତ୍ର ମୁଁ ଜନନୀ ଧରାର ।

## ପ୍ରତ୍ୟକ୍ଷ ଦେବତା

ବ୍ୟାଧି-ଜରାଶୀଳ ଏହି ଧରାର ଜୀବନ
ନୁହେଁ କି ତୁମର ସୃଷ୍ଟି ? ଘୃଣାରେ ତିଆଗି
ତୁମର ପ୍ରତ୍ୟକ୍ଷ ସୃଷ୍ଟି, କା' ଅନୁଧାବନ
କରିବି; କା' ଭକ୍ତ ହେବି ହୋଇ ବଇରାଗୀ ?

ଦୃଷ୍ଟାଦୃଷ୍ଟେ ତୁମେ ଏକ କାନ୍ତ ସନାତନ,
ଦୃଷ୍ଟେ ପ୍ରସାରିତ ତମେ ମହାମହିମାରେ,
ଦୁଃଖ, ସୁଖ, ହାସ୍ୟ, ଅଶ୍ରୁ, ବିରହ, ମିଳନ,
ହେ ନିର୍ଗୁଣ ନାନା ଗୁଣେ ତୁମରେ ପ୍ରଚାରେ ।

ଦୃଷ୍ଟର ପୂଜାରୀ ମୁହିଁ, ବିଚିତ୍ର ଭୂମାର,
ପ୍ରତ୍ୟକ୍ଷରେ ପଢ଼ିପାରେ ତୁମର ସ୍ୱାକ୍ଷର,
ମୁହିଁ ଅନୁରାଗୀ ତବ ଜୀବନ-ଲୀଳାର,
ଅଶ୍ରୁ-ଦଗ୍ଧ ଜୀବନ ହିଁ ଅଟେ ମୋ ଈଶ୍ୱର ।

ଅଶ୍ରୁ-ବ୍ୟଥାତୁରେ କିଛି ଶାନ୍ତି ଦାନିବାରେ (୧)
ହେଉ ମୋର ଶ୍ରେଷ୍ଠ-ପୂଜା ହେ ପିତ, ତୋଠାରେ ।

## ଉତ୍‌ଥାନ ପତନ

ଜଗତର ରଙ୍ଗମଞ୍ଚେ ମହା ଅଭିନୟ
ଦେଖିଲି ମୁଁ ଆଖି ଆଗେ ରକ୍ତାକ୍ତ ସମର,
ଅହଙ୍କାରେ ଅହଙ୍କାରେ ବିଂଛି ବିଶ୍ୱମୟ
ଦୁଃଖ, ରୋଗ, ଅନାହାର, ମୃତ୍ୟୁ କଷ୍ଟକର ।

(୧) ଦାନିବାରେ – ଦାନ କରିବାରେ ।

ଦେଖିଲି ମୁଁ ବିଶ୍ୱତ୍ରାସ ମତ୍ତ ରାଷ୍ଟ୍ରପତି
ମରିବାର ଶେଷେ ପଥେ-ବୁଲା ଶ୍ୱାନପରି,
କାଲିର ଦୁର୍ମଦ ସେନା କରିବାର ଗତି
ପରାଜୟ-ଲାଜେ ଆଜି ମୁଖ ନତ କରି (୧)।

ଦିବାରାତ୍ରି, ଶୀତଗ୍ରୀଷ୍ମ, ଗୌରବ ବିପତ୍ତି
ଏ ବିଚିତ୍ର ଅଭିନୟ ଉଠା-ପଡ଼ିବାର
ତୁମେଇ ନା ସୂତ୍ରଧର ? କାହିଁକି ଜଗତି (୨)
ଚାଢ଼ିଛ ବିଚିତ୍ର ଏଇ ଲୀଳା ଅନିବାର ?

କବି କିନ୍ତୁ ମାନ ବିତ୍ତ କିଛି ମାଗୁନାହିଁ
ଚାହେ ଫୁଲ ପ୍ରାୟ ଫୁଟୁଁ ତବ ମୁଖ ଚାହିଁ।

## ପ୍ରକୃତ ପୂଜା

ଅସୀମ ସେ ଯେଣୁ, ମଣେ ତାଙ୍କର ସନ୍ଧାନ –
ସେହି ଯା ସୀମାରେ କରେ ବ୍ୟାପକର ଦାନ,
ସୀମାନ୍ତରେ ଅସୀମର ଯା ଆଣେ ପରଶ,
ଈଶ୍ୱରପ୍ରାପ୍ତିର ସେହି ପରମ ତାପସ।

ଅଦୃଶ୍ୟ ସେ ଯେଣୁ ଭାବେ ଜୀବନ-ଧରମ
ଲୋକଚକ୍ଷୁ ଅନ୍ତରାଳେ ହେବାର ନିଷନ୍ନ,
ଦୃଶ୍ୟ ଯେଣୁ ପ୍ରତିବିମ୍ବ ସେହି ଅଦୃଶ୍ୟର (୩)
ବାହାର ପୂଜିତ ରଖୁ ଯଜ୍ଞ ଅନ୍ତରର।

ଗୁପ୍ତ, ପ୍ରକାଶିତ ହୋଇ ଖେଳେ ଲୁଚକାଳି,
ଚକ୍ଷୁ ହୋଇ ଦେଖେ ନିଜ ରୂପ ଚମତ୍କାରୀ।
ଖୋଜିବି ମୁଁ ତାଙ୍କୁ ତେଣୁ ବାହାରେ ଅନ୍ତରେ
ଏକ ଚକ୍ଷେ ଅନ୍ତର୍ଯ୍ୟାମୀ, ଅନ୍ୟେ ବିଶ୍ୱେଶ୍ୱରେ।

---

(୧) ଦ୍ୱିତୀୟ ବିଶ୍ୱଯୁଦ୍ଧରେ ହିଟଲର ଓ ମୁସୋଲିନିର ଲଜ୍ଜାକର ପରିଣତିକୁ ଲକ୍ଷ୍ୟ କରାଯାଇଛି।

(୨) ଜଗତି – ଜଗତରେ।

(୩) ଅଦୃଶ୍ୟ ଈଶ୍ୱର ଦୃଶ୍ୟରୂପେ ପ୍ରତିଭାତ। ତେଣୁ ମନୁଷ୍ୟ ତାଂକୁ ଆରାଧନା କରିବାର ଧାରା ହେବା ଉଚିତ, ତା'ର ଅନ୍ତଃସ୍ଥିତ, ଯଜ୍ଞ ବାହାରକୁ ପୂଜିତ ରଖୁ।

ନୁହେଁ ପୂଜା ତାହାଙ୍କର ବିଶେଷଣ-ଗାନ,
ସତ୍ୟ-ଜ୍ଞାନ-କର୍ମେ ଅନୁଭୂତ ଭଗବାନ ।

## ଗାଏ ସେହି ମହାଗାନ

ତବ ସ୍ତନ୍ୟେ ଉଜ୍ଜୀବିତ ସାମାନ୍ୟ ଏ ପ୍ରାଣ
ହେ ମହାଜନନୀ, ଗାଉ ସେ ମହାସଙ୍ଗୀତ;
ମହାବ୍ୟୋମେ ସୂର୍ଯ୍ୟ-ତାରା କଣ୍ଠେ ଯେଉଁ ଗାନ
ହୁଏ ଗୀତ, କରି ତ୍ରିଭୁବନ ରୋମାଞ୍ଚିତ;

ଯେ ଗାନେ ଜ୍ୟୋତିଷ୍କରାଜି ଉନ୍ମତ୍ତ ପରାୟେ
ନୃତ୍ୟନ୍ତି ଅଶ୍ରାନ୍ତ ରାସେ ମହା ବ୍ୟୋମାଂଗନେ;
ପ୍ରଥମ ପ୍ରଣୟ ଦୃଷ୍ଟି ଯେଉଁ ଗାନ ଗାଏ
ଏ ଧରାର ଯୁବ-ଯୁବା ପିପାସୀ ଜୀବନେ;

ଯେ ଗାନ ଉଦ୍ଭିଦ ଶୁଣେ ବସନ୍ତ ଆଗମେ,
ମଳୟର ଶାନ୍ତ, ଶୀତ, କୋମଳ ପରଶେ
ସାଜି ନବ ବଧୂ ସମ ସଲଜ୍ଜ ଆନନେ
ଠିଆ ହୁଏ ଧରାଂଗନେ ଯାଚି ପ୍ରାଣ-ରସେ;

ତବ ସ୍ତନ୍ୟେ ଉଜ୍ଜୀବିତ ସାମାନ୍ୟ ଏ ପ୍ରାଣ
ହେ ସଂଗୀତମୟି, ଗାଉ ସେହି ମହାଗାନ ।

## ଯିଏ କଲା ତୁମର ପ୍ରଚାର

ସ୍ୱାଧୀନ ଭାରତବର୍ଷ ! ଭାରତର ଜନ-ସାଧାରଣ
ଠିଆ ଆଜି ବିଶ୍ୱପୃଷ୍ଠେ ପରାଧୀନ-ଲାଂଛନା-ବିମୁକ୍ତ
ହେ ବିଶ୍ୱ-ଚାଳକ ପିତ, ଏ ଭାଗ୍ୟ କି ହେବ ଚିରନ୍ତନ ?
ଅଥବା ସ୍ୱାର୍ଥର ମଦେ ହେବ ପୁଣି ଦାସତ୍ୱରେ ଲୁପ୍ତ !

ହେ ପିତ, ଯେ ମାଟି କଲା ଯୁଗେ ଯୁଗେ ତୁମର ପ୍ରଚାର,
ଇତିହାସ ପ୍ରଥମରୁ ନରେ ଦେଲା ବିଧାତା ସଂଦେଶ –
ବ୍ୟକ୍ତ ତଳେ ଅବ୍ୟକ୍ତର, ସୀମା ତଳେ ଅସୀମ ସଂଚାର,
ଯା ଜ୍ଞାନ ନ ଥିଲା ଜାଣି ଦେଶ, କାଳ, ଜାତିର ବିଶେଷ ।

ସେହି ସେ ମାଟିରେ ହେଲା ଯୁଗେ ଯୁଗେ ବୀଭତ୍ସ ନାଟକ;
ଅନୈକ୍ୟ, ବିଦ୍ୱେଷ, ହିଂସା, ଅନାଚାର ମୂଢ଼ ମୂର୍ଖତାର,
ଯୁଗେ ଯୁଗେ ଭୋଗିଲା ସେ ବିଦେଶୀର ଚାବୁକ ଆତଂକ,
ତୁମରି ବାର୍ତ୍ତାହିଁ ହେଲା ହେତୁ ତା'ର ଅନୁର୍ବରତାର ।

ହେ ପିତ, ଭାରତେ ପୁଣି ମୁକ୍ତି ନୂଆ କରିଛ ଯା ଦାନ,
ସହସ୍ର କଲ୍ୟାଣ ବିଂଛି ହେବଟି ତା' ଚିର-ଅଧିଷ୍ଠାନ ?

## ଅଗ୍ରଣୀ ଭାରତ

ହେ ଭାରତ, ପୁଣି ତମେ ହେବ ମହୀୟାନ,
ବିଶ୍ୱର ଶିକ୍ଷକ, ପୁଣି ବରେଣ୍ୟ ଧରାର,
ସର୍ବ କର୍ମେ ଲକ୍ଷ୍ୟ ନିହି ମାନବକଲ୍ୟାଣ,
ସର୍ବ ଯୋଜନାର ତଳେ ଈଶ୍ୱର-ସଂଚାର ।

ତମେ ଆଦ୍ୟେ ମନୁଷ୍ୟଠି ଦେଖିଲ ଦେବତା
ପ୍ରଚାରିଲ ଆଦ୍ୟେ ବିଶ୍ୱେ ଭୂମାର ଦର୍ଶନ,
ଭୂମାର ପରଶ ଲାଗି କ୍ଷୁଦ୍ରର ମମତା
ତେଜି, ତମେ ହୋଇଅଛ, ସମାଧି-ମଗନ ।

ତତ୍ତ୍ୱର ପ୍ରଚାରପାଇଁ ଦେଶ-ଦେଶାନ୍ତରେ
ତମେ ଗଲ ଲଙ୍ଘି ଗିରି, ମରୁ, ମହୋଦଧି,
ତବ ଧର୍ମ ପ୍ରଚାରିତ ଦିଗ-ଦିଗନ୍ତରେ —
ଐଶ୍ୱର୍ଯ୍ୟ ଓ ସନ୍ନ୍ୟାସର ଦ୍ୱିବେଣୀକା ନଦୀ ।

ବୁଭୁକ୍ଷୁ ଓ ମୁମୁକ୍ଷାର ବିଚିତ୍ର ସାଧକ
ନମାମି ଭାରତବର୍ଷ, ଧରାର-ଶିକ୍ଷକ (୧) ।

(୧) ପ୍ରାଚୀନ ଭାରତବର୍ଷ ଜୀବନକୁ ଉଭୟ ଭୋଗ ଓ ତ୍ୟାଗ କରିବାକୁ ଶିଖାଇଥିଲା । ଭାରତୀୟ ଜୀବନଦର୍ଶନ ଜୀବନବିରାଗୀ ବୋଲି କହିବା ଏକ ଭ୍ରାନ୍ତ ପ୍ରଚାର । ଭାରତୀୟ ଚିତ୍ର, ଭାସ୍କର୍ଯ୍ୟ, ନୃତ୍ୟ ଓ ସଙ୍ଗୀତର ଧାରା ସମଗ୍ର ଏସିଆକୁ ଦିନେ ବରଣୈଶ୍ୱର୍ଯ୍ୟମୟ କରିରଖିଥିଲା । ଏବେ ବି ଜାଭା ଓ ବାଲି ଦ୍ୱୀପରେ କାଳିଦାସଙ୍କ ଭାରତବର୍ଷ ବଞ୍ଚିରହିଛି ।

# ଭବିଷ୍ୟତ୍ ଭାରତବର୍ଷ

ହେ ପିତ, ସତେ କି ମୋର ଅର୍ଦ୍ଧ-ନଗ୍ନ ଜାତି
ରୁଗ୍ଣ, ଅସମାୟ-ଜୀର୍ଣ୍ଣ, କ୍ଷୀଣାଶ, ଅଳ୍ପାୟୁ,
ସ୍ୱାଧୀନ ମାଟିରେ ପୁଣି ଉଠିବ ବିଭାତି,
ନିଶ୍ୱସିବ ଆଶା, ଭୋଗ, କଲ୍ୟାଣର ବାୟୁ ?

ହେ ପିତ, ମୋର ଏ ତ୍ରିଂଶ କୋଟି ଦେଶବାସୀ
ସତେ କି ଶରୀରେ ମନେ ପୂର୍ଣ୍ଣ ପରିପୁଷ୍ଟ
ହୋଇ ପୁଣି ହେବେ ଠିଆ ସଦମ୍ଭେ ବିକାଶି
ସ୍ୱାଧୀନ ଆତ୍ମାର ଜ୍ୟୋତି, ଆତ୍ମ-ପରିତୁଷ୍ଟ ?

ହେ ପିତ, ସତେ କି ମୋର ପ୍ରିୟ ଦେଶବାସୀ
ପୁରୋହିତ, ପ୍ରତିମାର, ଶାସ୍ତ୍ର, ପୁରାଣର
ମିଥ୍ୟା-ଜାଲୁ ଆପଣାରେ ଅକୁଣ୍ଠେ ଖଲାସି,
କରିବେ କେବଳ କର୍ମ, ବିଚାର-ତତ୍ପର ?

ସ୍ୱାଧୀନ ଭାରତେ କର ପୁନଶ୍ଚ ସ୍ଥାପିତ
ସତ୍ୟ-ଜ୍ଞାନେ, ଶିବ-କର୍ମେ, ଦୃଢ଼-ଦେହେ, ପିତ !

# ଗୃହ-ସଂସ୍କାର

କିନ୍ତୁ ହେ ଜନନୀ ତୋର ନିଜ ଗୃହସ୍ଥଳୀ
ଆକୀର୍ଣ୍ଣ ଯେ ପୁରାତନ ନାନା ଆବର୍ଜନେ —
ମନୁଷ୍ୟ ମନୁଷ୍ୟ ଭେଦେ, ଏକ ଆନୋପରି
ପାଦ ଦେଇ ଉଠିବାର ଘୃଣ୍ୟ ଆଚରଣେ ।

ଆଜି ମଧ୍ୟ ନିଷ୍ପେଷିତ ତୋ ଗଣ-ଦେବତା
ପୁରୋହିତ ଅତ୍ୟାଚାରେ, ଘୃଣାକ୍ତ କୌଶଳେ,
ନାନା ଧର୍ମେ, ନାନା ଗୋଷ୍ଠେ ଦୀର୍ଣ୍ଣ ତୋ ସଭ୍ୟତା,
କେ ଚିନ୍ତେ ଜନନୀ ତୋର ସମୂହ କୁଶଳେ ?

ଜନନୀ, ହେବ କି ପୁଣି ତୋର ପରିବାରେ
ଏକ ଜାତି, ଏକ ଭାଷା, ଏକ ଧର୍ମଚକ୍ର ?

ମାନବିକ ଦମ୍ଭ, ସ୍ୱପ୍ନ, ପ୍ରତିଟି ହିଆରେ ?
ତୋ-ଗୌରବ ପ୍ରତି-ପୁତ୍ର ମାଥେ ରାଜ-ଛତ୍ର (୧) ?
ପୁଣି ହୋଇ ତପଃଶୁଦ୍ଧ, ଭେଦଭାବ-ହୀନ
ନ ପାଇବୁ କି ମା' ! ବିଶ୍ୱେ ମାଆର ସମ୍ମାନ ?

## ମାତୃଦ୍ରୋହୀ

ଦୀର୍ଘ ତବ ଇତିହାସ କରି ଆଲୋଚନ
ଜନନୀ ଭାରତ, ଦେଖେଁ ସେହି ତୋ ସନ୍ତାନେ
ଯାହାକୁ ଦେଲୁ ତୁ ସମାଜରେ ଉଚ୍ଚାସନ –
ସେହିମାନେ ଦାୟୀ ତୋର ମାନ-ଅବସାନେ ।

ସେହି ସେ ବ୍ରାହ୍ମଣ, ରାଜା ତିଳ ତିଳ କରି
ତୋତେ କରିଛନ୍ତି ହତ୍ୟା, କର୍ମେ ଓ ନିଷ୍କର୍ମେ
ଦୀର୍ଘ ତୋର ଇତିହାସେ ଯୁଗ-ଯୁଗଧରି,
ସହସ୍ର ପାଶବ କାଣ୍ଡେ ବିନ୍ଧି ତୋର ମର୍ମେ ।

ରଖିଲେ ସେ ଜନତାରେ ଅଜ୍ଞାନ-ଅନ୍ଧାରେ,
ପରସ୍ପର ଦ୍ୱନ୍ଦ୍ୱେ ମାତି କଟାଇଲେ କାଳ,
ଜ୍ଞାନ-ବାତାୟନ ରୁନ୍ଧି ଅନ୍ୟର ଘୃଣାରେ
ଦେଶର ମସ୍ତିଷ୍କେ ଦେଲେ ଊର୍ଣ୍ଣାନାଭ ଜାଲ ।

ମୁକ୍ତ ଦେଶେ ହେ ଜନନୀ, ପୁଣି ସେହିପରି
ଉଚ୍ଚାସୀନେ, ମୋ ଆଶଙ୍କା, ହେବେ ତୋ ବଇରି ।

## ମାନବିକ ଇଂରେଜ

ଦୁର୍ଦ୍ଦାନ୍ତ, ନିର୍ଦ୍ଦୟ, ଭୀମ ଇଂରେଜ ହାକିମ
ଥରହର ନାମେ ଯା'ର ସମଗ୍ର ଅଞ୍ଚଳ
ବେଲ୍ ସାହେବର ଲାଠି, ଶାସ୍ତି ଅପ୍ରତିମ,
ଜିଲ୍ଲା ଶାସେ ବେଲ୍-ଲାଠି-ପାଦୁକା ଯୁଗଳ ।

---

(୧) ତୋର ପ୍ରତି ପୁତ୍ରର ମସ୍ତକ ଉପରେ ରାଜଛତ୍ରରୂପେ ବିରାଜିତ ହେବ ତୋରି (ଭାରତବର୍ଷର) ଗୌରବ-ଚିନ୍ତନ ।

ସେହି ବେଲ୍ ଦିନେ ଭ୍ରମୁ ଦେଖେ ପଥଧାରେ
ବିସୂଚିକାଗ୍ରସ୍ତ ଏକ ରୋଗୀ ନିରାଶ୍ରୟ,
ମଳବାନ୍ତି-ଲଟପଟ, ତୃଷାରେ ଚିତ୍‌କାରେ
ତୀବ୍ର-ଶୂଳ ସ୍ନାୟବିକ ବ୍ୟଥାରେ ଅଥୟ ।

କେତେ ଯାଇଥିଲେ ପଥେ ହିନ୍ଦୁ, ମୁସଲମାନ
ନିଜ ନିଜ ଧର୍ମ ନେଇ ଗର୍ବିତ ଯେ ଭାରୀ,
ପଚାରି ନ ଥିଲେ କେହି, – ବେଲ୍ ହୃଦବାନ୍
ରୋଗୀ ଉଠାଇଲା କାନ୍ଧେ କିଛି ନ ବିଚାରି ।

ରୋଗୀ କାନ୍ଧେ ଚାଲେ ବେଲ୍ – ଶାସେ ଯା'ର ଲାଠି,
କିମାଶ୍ଚର୍ଯ୍ୟ ଅର୍ଦ୍ଧଧରା ଭୋଗଇ ତା ଜାତି (୧) !

## ନିର୍ଦ୍ଦୟ ବ୍ରାହ୍ମଣ

ନିଜ ଛଡ଼ା ସକଳରେ ତୀକ୍ଷ୍ଣ ଘୃଣା ଯା'ର
କାରଣ ସେ ସ୍ୱୟଂ ବ୍ରହ୍ମା ମୁଖରୁ ହିଁ ଜାତ,
ପାଳିବାରୁ ଶାସ୍ତ୍ରମତେ ଆପଣା ଆଚାର
ମନୁଷ୍ୟ ଛୁଏଁନା ଯା'ଙ୍କ ପୁଣ୍ୟମୟ ହାତ ।

ଏପରି ପୁଣ୍ୟାତ୍ମା ଏକ ଭୂ-ଦେବ ଆପଣେ
ଶୌଚ ହେଉଥିଲେ ଦିନେ ଏକ ନଦୀଘାଟେ,
ଅସ୍ପୃଶ୍ୟ ବାଳକ ଯାଉଁ ନଦୀ ସନ୍ତରଣେ
ବୁଡ଼ିଗଲା ଅସହାୟ ସଲିଳେ ଅକାଟେ ।

ଦେଖିଲା ବ୍ରାହ୍ମଣ, – ଖାଇ ହାବୁଡୁବୁ ଜଳେ
ଜନନୀର ଏକପୁତ୍ର ମରେ ତା ସମ୍ମୁଖେ;
ନିର୍ବିକାର କିନ୍ତୁ ରହେ – ସ୍ପର୍ଶି ଅସ୍ପୃଶ୍ୟରେ
କାଳିମା ଲେପିବ ସେ କି ଶାସ୍ତ୍ର-ଧର୍ମ-ମୁଖେ ?

ଫେରେ ଦ୍ୱିଜ ଗ୍ରାମେ ଦେବ ସମ୍ବାଦ ମାତାରେ; –
ଯବନ-ଇଂଗ୍ରେଜ-ଜୋତା ସାଜେ କା ମଥାରେ ?

(୧) ଏଇ ଓ ଯା ପରର କାହାଣୀଟି ମୁଁ ଜନୈକ ବଙ୍ଗାଳୀ ଡେପୁଟି ମାଜିଷ୍ଟ୍ରେଟ୍‌ଙ୍କ ମୁଖରୁ ଶୁଣିଥିଲି । ବେଲ୍ ସାହେବ ବଙ୍ଗଳାରେ ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ ।

## ରହ ଭାରତୀୟ

ହେ ସ୍ୱାଧୀନ-ଭାରତର ତରୁଣ-ତରୁଣି,
ଜୀବନ କି ବିତାଇବ ପ୍ରାଣୀ ସମ ଖାଲି
ନିର୍ଭାବନେ କୋଟି-ବୁଭୁକ୍ଷିତ-ବୀଜ ବୁଣି (୧),
ମାତି ନାନା କ୍ଷୁଦ୍ର-ସୁଖେ, ଲକ୍ଷ୍ୟ ନ ବିଚାରି ?

ଏ ମାଟିରେ ହେଲା ଆଦ୍ୟେ ମାନବ ପ୍ରାଣର
ମହାଲକ୍ଷ୍ୟ ଆବିଷ୍କୃତ, ପୁନଶ୍ଚ ସାଧନା;
ସେ ଲକ୍ଷ୍ୟେ ପହଞ୍ଚିବାରେ – ଅଦ୍ୟ-ନୂତନର
ଆପାତ-ମୋହନକର ପ୍ରସ୍ତାବେ ଭୁଲନା (୨)।

ଅହରହ ରଖ ତବ ଚେତନା ଜାଗ୍ରତ,
ଦୃଢ଼ପଦେ ହୁଅ ଠିଆ ଆପଣା ମାଟିରେ,
ତା ପରେ ବଢ଼ାଇ ତବ ଜ୍ଞାନ-ହସ୍ତ ଶତ,
ଆହର୍ଯ୍ୟ ଯା ଘେନି ଆସ ଯହିଁ ପୃଥିବୀରେ।

ବାହାରେ ନିପୁଣତମ ହୋଇ ଆଧୁନିକ,
ରହ ବକ୍ଷେ ଭାରତୀୟ, ପ୍ରାଚୀନ ଯାଜ୍ଞିକ।

## ସଂଗ୍ରାମର କ୍ରୁଶ

ସୁଖ ଦୁଃଖ, ନ୍ୟାୟାନ୍ୟାୟ, ମିଥ୍ୟା ଓ ସତ୍ୟର
ସଂଗ୍ରାମ ହିଁ ଜୀବନର କ୍ରୁଶ-ଚିରନ୍ତନ,
ଈଶ୍ୱରର ଲୀଳା ସେହି, ସୁନ୍ଦର, ମଙ୍ଗଳ,
ସମାଜରେ ସଭ୍ୟତାର ମଧ୍ୟ ବିବର୍ତ୍ତନ।

ଦୈବତ ସଂଗ୍ରାମ ସେହି ଅନାଦି କାଳରୁ,
ଚାଲିଅଛି ଅବିରତ ବ୍ୟଷ୍ଟି ସମଷ୍ଟିରେ,
ଭୟେ ଯେ ଘୁଞ୍ଚଇ ସେହି କ୍ରୁଶ ବହନରୁ
ନିଶ୍ଚିହ୍ନ ସେ ଜାତି, ବ୍ୟକ୍ତି ହୁଅଇ ଅଚିରେ।

---

(୧) ଏଠାରେ ଭାରତବର୍ଷର ଚିରବର୍ଦ୍ଧମାନ ବିରାଟ ଜନତାକୁ ଲକ୍ଷ୍ୟ କରାଯାଇଛି।
(୨) ଅଦ୍ୟ ଓ ନୂତନର ଆପାତ-ମୋହକର ଆଦର୍ଶରେ ଭାରତ-ଆବିଷ୍କୃତ ଜୀବନର ମହାଲକ୍ଷ୍ୟରେ ପହଞ୍ଚିବାର ସାଧନାକୁ ଭୁଲିଯାଅ ନାହିଁ।

ଭୁଲି ଦିନେ ସେ ସଂଗ୍ରାମ ହେ ପ୍ରିୟ ଭାରତ,
ଭୋଗିଲୁ ଦାସତ୍ୱ ହୀନ ସହସ୍ର ବର୍ଷର;
ନାହିଁ ଧର ପୁଣି ସେଇ କାପୁରୁଷ ପଥ,
ଶାସ୍ତ୍ର ନାମେ କଷ୍ଟ ଦେଇ ପ୍ରାଣେ ମନୁଷ୍ୟର ।

ନ୍ୟାୟାନ୍ୟାୟ-ସତ୍ୟ-ମିଥ୍ୟା-ସଂଗ୍ରାମର କ୍ରୁଶ
ବହନ ହିଁ ମନୁଷ୍ୟର ପ୍ରକୃଷ୍ଟ ପୌରୁଷ ।

## ବରେଣ୍ୟ ସେ ସଂଗ୍ରାମୀ ଦଳ

ନମସ୍କାର କରେ ସେହି ସଂଗ୍ରାମୀର ଦଳେ
ସୁଧାସମ ଉତ୍ତୀର୍ଣ୍ଣ ଯେ ଜୀବନ-ମନ୍ଥନୁ,
ନାହିଁ ଚାହି ଯିବାକୁ ଯେ ଅନ୍ୟାୟ ପଥରେ
ବରିଲେ ସହସ୍ର ଦୁଃଖ, ନିର୍ଯାତିଲେ ତନୁ ।

ସହସ୍ର ବ୍ୟର୍ଥତା ମଧ୍ୟେ ଚାଳିଲେ ସଂଗ୍ରାମ
ମନୁଷ୍ୟର ଦେହ, ମନ, ଆତ୍ମାର କଲ୍ୟାଣେ,
ମାନ, ଅର୍ଥ, ପ୍ରଭାବରେ ନାହିଁ ଦେଇ ଧ୍ୟାନ
ଢାଳିଲେ ନିଜକୁ ଅନ୍ୟେ ଆଲୋକ ପ୍ରଦାନେ ।

ନମସ୍କାର କରେଁ ସେହି ବୋଧିସତ୍ତ୍ୱ ପୁଞ୍ଜେ,
ଜ୍ଞାନ-ଧର୍ମ-ଚିକିତ୍ସାର ପୂଜ୍ୟ ତପିଦଳେ,
ଯା'ଙ୍କ ଯଜ୍ଞ-ଚରୁ ଆଜି ସଭ୍ୟ ନର ଭୁଞ୍ଜେ
ଯଦି ବା ସେ ମହାରଣ ନାହିଁ କେହି ସ୍ମରେ !

ସେହି ଗଉରବ କିନ୍ତୁ ମାଗେ ବିଶ୍ୱପତି –
ଆନ ପାଇଁ ବଞ୍ଚିବାର ମୋହନ କୀରତି ।

## ଚଳାଅ ସଂଗ୍ରାମ

ଚଳାଅ ଅଜସ୍ର ଯୁଦ୍ଧ ଅମା-ଆଲୋକର
ଆପଣା ଅନ୍ତରେ, ପୁଣି ସମାଜେ ରାଷ୍ଟ୍ରରେ;
ଅନ୍ୟାୟ ଯା, ଅସତ୍ୟ ଯା, କ୍ରୂର, ଅମଙ୍ଗଳ,
କର ପ୍ରତିରୋଧ ତା'ର ବଚନେ, କର୍ମରେ ।

ଜୀବନର ସିଦ୍ଧି ନୁହେଁ ସଂପଦ, ପ୍ରଭାବ,
ଚମକାଏ ଆଜି ଯାହା କାଲି ତା ବିସ୍ମୃତ,
ନରତ୍ୱର ବିବର୍ତ୍ତନେ କାହିଁ ତବ ଠାବ –
ତା କେବଳ ମାନଦଣ୍ଡ, ବିଚାର-ପ୍ରଯୁକ୍ତ ।

ବିଜୟ ଆନନ୍ଦ କାହିଁ ସଂଗ୍ରାମ ବିହୁନେ ?
ପଥର କଷଣ ବିନା ଯାତ୍ରା-ଶେଷ ସୁଖ ?
ସଂଗ୍ରାମ ନିହିତ ତେଣୁ ତାରକାରୁ ତୃଣେ,
ସଂଗ୍ରାମକୁ ବର ତେଣୁ ନୋହି ପରାଙ୍‌ମୁଖ ।

ଯୁଦ୍ଧ କର, ଜୟୀ ହୁଅ, ଉଠ ସ୍ତରେ ସ୍ତରେ
ନିଜେ ଦିଅ କୃତାର୍ଥତା, ଗୌରବ ଦେଶରେ ।

## ଅଜନ୍ତା

ବୋଧିସତ୍ତ୍ୱ ପଦ୍ମପାଣି, ତବାବଲୋକନ (୧)
ଅଜନ୍ତା ଅନ୍ଧାରୁ ସଦା ଫୁଟି ଦିଶେ ମତେ,
ସକରୁଣ, ସୌମ୍ୟ, ଶାନ୍ତ, ମନୋଜ୍ଞ-ଦର୍ଶନ,
ଦୟାର୍ଦ୍ର କରଇ ମୋର ଆଲୋଡ଼ିତ ବକ୍ଷେ ।

ମନେପଡ଼େ ପିତୃ-ସେବୀ ତରୁଣ କରୀର (୨)
କରୁଣ-ମଧୁର ସେହି ପୁଣ୍ୟ ଆତ୍ମତ୍ୟାଗ,
ପ୍ରାଣୀ ଦେହେ ବୁଦ୍ଧ-ବାଣୀ କରୁଣା-ପିଚ୍ଛିଳ
ଆଁକି ଶିଳ୍ପୀ କାଟିଯାଏ ହୃଦେ ଚିର-ଦାଗ ।

ଅଜନ୍ତା, ସଂଗମସ୍ଥଳୀ ଧର୍ମ-ସୌନ୍ଦର୍ଯ୍ୟର,
ଥରେ ଦେଖି ତତେ କିଏ ଯିବ କି ପାସୋରି ?

(୧) ଅଜନ୍ତାର ଏକ ଗୁହାରେ ବୋଧିସତ୍ତ୍ୱ ପଦ୍ମପାଣି ଏପରି ଭାବରେ ଚିତ୍ରିତ ଯେ, ଦର୍ଶକ ଯେଉଁପଟୁ ତାଙ୍କୁ ଅନେଇବ, ମନେହେବ, ତାଙ୍କର ଦୃଷ୍ଟି ସେଇ ଆଡ଼କୁ ।

(୨) ପିତୃ-ପୋଷକ ଜାତକର ଚିତ୍ର । ବଣରେ ଥିବା ଏକ ଅନ୍ଧ ହସ୍ତୀର ପିତୃ-ଭକ୍ତ ତରୁଣ ପୁତ୍ର ଧରାହୋଇ ରାଜାଙ୍କ ହାତୀଶାଳକୁ ନିଆଯାଏ; କିନ୍ତୁ ସେ ସେଠାରେ ଦୁଃଖରେ ଅନଶନ କରେ । ରାଜା ଏହା ଜାଣିପାରି ତାକୁ ମୁକ୍ତି ଦିଅନ୍ତି । ପିତୃଭକ୍ତ-ପୁତ୍ର ଓ ଅନ୍ଧ ପିତାର ମଧୁର ପୁନର୍ମିଳନ ଘଟେ । ଜାତକ-ଗଳ୍ପର ଏଇ ସମସ୍ତ ଘଟଣା ଅଜନ୍ତାର ଏକ ଗୁହାରେ ଅସାଧାରଣ ଜୀବନ୍ତ ରୀତିରେ ଚିତ୍ରିତ ହୋଇଅଛି ।

ସହସ୍ର ସାଧନ ସ୍ୱପ୍ନେ ତୋ ଗୁପ୍ତ ଗହ୍ୱର
ଜ୍ୟୋତିର୍ମୟ, ତପସ୍ୟାରେ କାବ୍ୟ ଦେଇ ଯୋଡ଼ି ।

ଅଜନ୍ତାର ପରି ନବ-ଭାରତ-ସାଧନା
ହେଉ, କରି ଭୋଗ ସାଥେ ତପଃ ସଂଯୋଜନା ।

## ଏଲିଫାଣ୍ଟା

ବାରିଧି-ବେଷ୍ଟିତ ଦ୍ୱୀପେ, ନିର୍ଜନ ବିଳାସେ,
ଗିରି-ଗୁହା ଅନ୍ଧକାରେ ତ୍ରିମୂର୍ତ୍ତି ଆସୀନ,
ଦେବ-ଭାଲେ କି ଗମ୍ଭୀର ମହିମା ବିକାଶେ,
ଧ୍ୟାନୋଜ୍ଜ୍ୱଳ ଜ୍ୟୋତି କିବା କୋମଳ-କଠିନ ।

ଧ୍ୟାନମଗ୍ନ ସେ ଦେବତା, – ଯେଉଁ ଧ୍ୟାନୁ ଆସେ
ସୃଷ୍ଟି, ସ୍ଥିତି, ପ୍ରଳୟର ଶାଶ୍ୱତ ପ୍ରବାହ,
ଖୋଦିତ ସେ ଦେବତାର ଗଣ୍ଡେ ଗଣ୍ଡେ ଭାସେ
ପ୍ରଜ୍ଞା ଆଉ କରୁଣାର ଦୈବତ ବିବାହ ।

ଆଲୋଡ଼ିତ-ଜୀବନର କ୍ଷୁବ୍ଧ-ବାରିଧିରେ
ସ୍ମରେ ମୁହିଁ, ଏଲିଫାଣ୍ଟା ତୋର ସେ ଦେବତା,
ଊର୍ଦ୍ଧ୍ୱେ ସ୍ଥିତ ପ୍ରପଂଚର, ନିର୍ଲିପ୍ତ ଅସ୍ଥିରେ,
ମୃଦୁ ହସେ ପରାଜିତ ଜୀବନର ବ୍ୟଥା (୧) ।

ବିକଳ ନଗର ପାଶେ ଶାଶ୍ୱତ ସୁନ୍ଦର
ଏଲିଫାଣ୍ଟା, ଆଦର୍ଶ ତୁ ଇହ ଜୀବନର ।

---

(୧) ବମ୍ବେର ଅଦୂରରେ ଏଲିଫାଣ୍ଟା ଦ୍ୱୀପ । ସେଠାରେ ବୃହତ୍ତମ ଗୁହାମନ୍ଦିରରେ ବିରାଟ ତ୍ରିମୂର୍ତ୍ତି ଅବସ୍ଥାପିତ । ପୃଥିବୀର ଶ୍ରେଷ୍ଠ ଭାସ୍କର୍ଯ୍ୟମାନଙ୍କ ଭିତରେ ଏହା ପରିଗଣିତ ହୁଏ । ତ୍ରିମୂର୍ତ୍ତିର ମୁଖମଣ୍ଡଳରେ ବିକଶିତ ଦୈବତମହିମା ଅବିସ୍ମରଣୀୟ । ଅଧରର ମୃଦୁହାସ୍ୟ ଇହ-ଜୀବନର ତଥାକଥିତ ସକଳ ଜଂଜାଳକୁ ଯେପରି ଉଡ଼େଇଦେଉଛି । ନିର୍ଲିପ୍ତ ଅସ୍ଥିରେ = ସକଳ ଅସ୍ଥିରତା ମଧ୍ୟରେ ନିର୍ଲିପ୍ତ ।

# ସିନ୍ଧୁ ଓ ବିନ୍ଦୁ

## ନମସ୍କାର (୧)

ତୁମ୍ଭଙ୍କୁ କରୁନି ନମସ୍କାର,
ହେ ଈଶ୍ୱର ପାଦ୍ରୀ ଓ ପଣ୍ଡାର;
ହେ ଈଶ୍ୱର ଦେଉଳ, ଗୀର୍ଜାର,
ହେ ଈଶ୍ୱର ମୌଲବୀ, ମୁଲ୍ଲାର,
ତୁମ୍ଭଙ୍କୁ କରୁନି ନମସ୍କାର ।

ନମସ୍କାର କରେ ମୁହଁ ଅସହାୟ ସେହି ନରନାରୀ
ତୁମ୍ଭର ଦୈବତ ସତ୍ୟ ଏ ଧରାରେ ହେବାକୁ ସ୍ଥାପିତ,
ଇତିହାସ-ପତ୍ର ସବୁ ଆର୍ଦ୍ର କଲା ଯା'ଙ୍କ ଅଶ୍ରୁବାରି ।
ନିରୀହ, ନିର୍ଦ୍ଦୋଷ ଯା'ଙ୍କ ଅୟୁତ ମସ୍ତକ
ଛିଣ୍ଡାଇଛି ତବ ଦୂତବୃନ୍ଦ-ତରବାରି ।

ଅଗତିକ, ଯୋଡ଼ହସ୍ତ କାକୁତିରେ କରନ୍ତି ପ୍ରାର୍ଥନା,
ହେ ଚିର କରୁଣାମୟ ଈଶ୍ୱର ତୁମରେ,
ଏଇ ଚାହିଁ କି ସଙ୍କଟେ ପିତା, ପତି ଆକୁଳ କଣ୍ଠରେ
ପତ୍ନୀ, କନ୍ୟା ବିଧର୍ଷିତ ହୋଇବାର ପାଶବହସ୍ତରେ,
ଦେଖି ଦେଖି ନିଜ ସମକ୍ଷରେ ।
ତୁମର କେତନବାହୀ ସେହି ସେ ବର୍ବରେ
ତୁମ ନାମେ, ତବାଦେଶ କହି
ପାପ, ହତ୍ୟା ଗଲେ କରି କରି ଅକୁଣ୍ଠ ମର୍ମରେ ।

ଦେଖ ଦେଖ ସ୍ୱର୍ଗୁ ତବ ଦୀର୍ଘ ଏଇ ନର ଇତିହାସେ
କେତେ କୋଟି ନରନାରୀ ଭୀତ, ହତ, ପଳାୟିତ ତ୍ରାସେ,
କେତେ ଦେଶ ଉଜାଡ଼ିତ, କେତେ ଜାତି ଉଚ୍ଛନ୍ନ, ବିପନ୍ନ
ତବ ପ୍ରଚାରକଦଳ ଅତ୍ୟାଚାରୁଁ ମାନ ଓ ଜୀବନ
ରଖିବାକୁ ପଳାୟିତ ପଛେ ରଖି ଗ୍ରାମ, ଘର, ଧନ !
ତୁମ୍ଭ ଲାଗି ଗୃହ-ଚ୍ୟୁତ, ମୃତ, ଭଗ୍ନ, ନିରାଶ୍ରିତ ସେହି ଜନତାରେ
ତୁମରେ ନ ଦେଇ, ଦିଏ ମୂଢ଼ ମୋର କ୍ଷୁଦ୍ର ନମସ୍କାରେ,

ହେ ଈଶ୍ୱର, ଉଦାର ଘୃଣାରେ !

ଇତିହାସେ ଛୋଟବଡ଼ ଚେଙ୍ଗିସ୍-କଳାପ,
ନରମୁଣ୍ଡ, ନରଲୁହ, ମନୁଷ୍ୟର କରୁଣ ବିଳାପ
ଦୈନନ୍ଦିନ ଖାଦ୍ୟ ଯା'ଙ୍କ, ଗଢ଼ନ୍ତି ସେ ପ୍ରାର୍ଥନା-ଚତ୍ୱର
ତୁମ ଲାଗି ଚାଟୁ-ପ୍ରିୟ, ହେ ରାଜାଧିରାଜ;
ସେ ମଣ୍ଡପେ ସ୍ତୁତି-ରତ ଯେତେ ସବୁ ବିଶ୍ୱସ୍ତ ତୁମର ।
ତାଙ୍କ ଖଡ୍‌ଗେ ନିର୍ଯାତିତ, ଧ୍ୱସ୍ତ, ବିଲୁଣ୍ଠିତ
କୋଟିର କ୍ରନ୍ଦନ ପ୍ରତି ଅବିଚଳ ହେ ଶ୍ରେଷ୍ଠ-ବର୍ବର,
ଶୁଣିଛ କେବଳ ସ୍ତୁତି ତୁମେ ସେହି ଆତତାୟୀଙ୍କର !

ଶ୍ୱେତାଙ୍ଗର ତୂଳାକ୍ଷେତ୍ରେ ଦେଖିନା କି ଘୃଣ୍ୟ ବିଭୀଷିକା,
ମନୁଷ୍ୟ ହୋଇଲା ଯହିଁ ମାଛିପରି ବିକା ?
ମାତାଠାରୁ ଦୁଗ୍‌ଧପୋଷ୍ୟ ଶିଶୁ ହୁଏ ଛିନ୍ନ,
ସ୍ୱାମୀଠାରୁ ପତ୍ନୀ, ଆଉ ପୁତ୍ରଠାରୁ ପିତା ଜରାଜୀର୍ଣ୍ଣ;
ଚାବୁକର ଘାତେ ଘାତେ ଶୋଣିତ-ରଂଜିତ,
ବିଳପନ୍ତି ଦଳ ଦଳ ନାରନାରୀ ଅନିଚ୍ଛୁକ ଶ୍ରମେ; —
ତୁମେ କିନ୍ତୁ ବର୍ବରର କ୍ଷେତ୍ରେ କର ସମ୍ପଦେ ଭରିତ ।

କୋଟି କୋଟି ସେହି ଦୁଃସ୍ଥ ମାନବର କରୁଣ କ୍ରନ୍ଦନ
ସ୍ପର୍ଶି ନାହିଁ ପାରି କେବେ ତବ ଉଚ୍ଚ ସ୍ୱର୍ଣ୍ଣ ସିଂହାସନ,
କିନ୍ତୁ ପାଶେ ଅମାନୁଷ ଧର୍ମଧ୍ୱଜୀଙ୍କର
ଠିଆ ଏ ଯେ ଗିର୍ଜା ସାଡ଼ମ୍ବର,
ପାଦ୍ରୀ ତହିଁ ବ୍ୟାଖ୍ୟାନଇ ସ୍ୱର୍ଗସ୍ଥ ସେ ପିତାଙ୍କ କରୁଣା
ଏକଇ ନିଶ୍ୱାସେ ବୁଣି ହିଦେନ୍‌ରେ ସର୍ବମୟ ଘୃଣା ।
ତୁଳନା ଅଛି କି ନାହିଁ ଏ ଯେ ଭଣ୍ଡତାର ?
ତୁମରେ ନ ଦେଇ ତେଣୁ ମୋର ନମସ୍କାର,
ଦିଏ ମୁଁ ଅୟୁତ ସେହି ନିରାଶ୍ରୟ, ଦୁଃସ୍ଥ, ନିଷ୍ପେଷିତ
ଯେଉଁ ନରନାରୀ ହେଲେ ମାଟିରେ ମଛିତ,
ଢାଳି ଢାଳି ନୟନରୁ ଅସହାୟ, ଉଷ୍ଣ ଅଶ୍ରୁଧାର ।

ବାରମ୍ବାର ଅବତରି, ଏ ଭାରତେ କରିଅଛ ଧନ୍ୟ
ତେଣୁ ଏ ଜନତା ଏଥି ଯୁଗ-ଯୁଗଧରି
ରହିଛନ୍ତି ପରା ମୂର୍ଖ, ଦୀନ, ହୀନ, ବନ୍ୟ,
ବ୍ରହ୍ମାର ମୁଖରୁ ଜାତ ତବ ମୁଖପାତ୍ର

ସେ ବ୍ରାହ୍ମଣ ନିର୍ଦ୍ଦେଶରେ, ବିଳପନ୍ତି ବାଳିକାର ଗାତ୍ର
ଏଇ ଦେଖ ଜୀବନରେ ଦଗ୍‌ଧ ହୁଏ ଧର୍ମରକ୍ଷାପାଇଁ
ବିକଳ କ୍ରନ୍ଦନ ମଧ୍ୟେ ବ୍ରାହ୍ମଣ ସେ ଐଶ୍ୱରିକ ବେଦ
ନିର୍ବିକାରେ ଉଚ୍ଚେ ଉଚ୍ଚାରଇ !
ତବ ସେହି ଧ୍ୱଜୀଙ୍କର ଆଜ୍ଞା ଅନୁସରି
ବିରାଟ ଜନତା ଏଥି ଯୁଗ-ଯୁଗଧରି
ରହିଛନ୍ତି ଅଜ୍ଞ, ଅମନୁଷ୍ୟ
ପତିତ, ଅସ୍ପୃଶ୍ୟ !
ସବୁ ଘୋର ପ୍ରବଞ୍ଚନା, ବୀଭତ୍ସ ପ୍ରଚାର,
ତୁମେଇ ମାନବ ଚିତ୍ତେ ସବୁଠାରୁ ଘୋର କୁସଂସ୍କାର
ମିଥ୍ୟାରେ ମୁଁ ଦେବି କିପାଁ ଦେବତାରେ, ପାଦ୍ରି, ବ୍ରାହ୍ମଣରେ
ମୋ ପ୍ରାଣର ମୁଗ୍‌ଧ ନମସ୍କାର ?

ନମସ୍କାର କରେ ମୁହିଁ ଚିର ମାନବରେ,
ସହସ୍ର ବାଧାରେ ଠେଲି ଉଠିଛି ଯେ କ୍ରମେ ସ୍ତରେ ସ୍ତରେ;
ଅଜ୍ଞାତ ସେ ଯୋଦ୍ଧୃ-ନରନାରୀ
ଅଶ୍ରୁ, ରକ୍ତ, ଅସ୍ଥି ଦେଇ ପୁରୁଷେ ପୁରୁଷେ
ନେଲେ ଯେହୁ ଏକେ ଏକେ ଅଶ୍ରାନ୍ତ-ସଂଗ୍ରାମେ
ଏ ପାର୍ଥିବ ଜୀବନର ବିଷଦନ୍ତ କାଢ଼ି !
କରିଗଲେ ହେ ଈଶ୍ୱର, ତୁମର ଏ ବନ୍ୟ ପୃଥିବୀରେ
ସୁନ୍ଦର, ସୁସଭ୍ୟ, ସୁସ୍ଥ, ଅନାମୟ, ଭୋଗ୍ୟ ଧୀରେ ଧୀରେ
କରିବାରୁ ସୃଷ୍ଟି ଏହ୍ନେ ମଧୁର, ସୁନ୍ଦର
ଯେଉଁ ଦୀନ ମାନବରେ ପୁରସ୍କୃତ କର
ରୋଗ, ବ୍ୟାଧି ଜଞ୍ଜାଳର ଅସଂଖ୍ୟ କଷଣେ,
କୃପାମୟ ହେ ଜୀବନେଶ୍ୱର !

ପୁରୋହିତ, କ୍ଷତ୍ରିୟ, ବୈଶ୍ୟର
ପ୍ରୟୋଜନ-ଜନିତ ଈଶ୍ୱର,
ହେ ଈଶ୍ୱର ଗିର୍ଜା ଦେଉଳର,
ହେ ପ୍ରତୀକ ଅନ୍ଧ ଭଣ୍ଡତାର,
ଚିର ନିଷ୍ପେଷିତ, ଚିର ଦୁଃଖୀ, ଅଭିଶପ୍ତ
ମୁହିଁ ଜଣେ ଶୂଦ୍ର ଜନତାର,
ନାହିଁ କରେ ଦୁଃଖେ ନମସ୍କାର ।

# ନମସ୍କାର (୨)

(୧)

ତୁମ୍ଭଙ୍କୁ ତେଣୁ ମୁଁ କେବେ ଖୋଜିନାହିଁ ମସ୍‌ଜିଦେ, ଗିର୍ଜାରେ
ମନ୍ଦିରର ମଳିନ ଅନ୍ଧାରେ,
କତିପୟ-କ୍ଷୁଦ୍ର-ସ୍ୱାର୍ଥେ, ମୂଢ଼ ଅଜ୍ଞତାରେ
ତୁମେ ତ୍ରିଭୁବନ-ନାଥ କ୍ଷୁଦ୍ରୀଭୂତ ଯହିଁ,
ବିରାଟ ଈଶ୍ୱର ଯହିଁ ପାଣ୍ଡି ପୂଜାରୀର
ଛୋଟ ଛୋଟ ଗୁହାରି ଶୁଣଇ –
ବିଶ୍ୱାସୀ ଗମିବେ ସ୍ୱର୍ଗ
କାଫେର୍‌ର ନାହିଁ ତହିଁ ସ୍ଥାନ,
ମ୍ଳେଛ, ହୀନ, ଯେ ନକରେ ଆନୁଗତ୍ୟ ମୁଖେ ଉଚ୍ଚାରଣ,
ବିକଳାଙ୍ଗ, କ୍ଷୁଦ୍ର, ନୀଚ୍, ସୀମାବଦ୍ଧ ଏଇ ଈଶ୍ୱରରେ
ଦେଉଳ, ମସ୍‌ଜିଦ ଆଉ ଗିର୍ଜା ଅଭ୍ୟନ୍ତରେ
ସହ୍ୟ ନାହିଁ କରିପାରି ଖୋଜେ ମୁହିଁ ଉଦାର ସ୍ରଷ୍ଟାରେ
ଶାସ୍ତ୍ରେ ଓ ସଂସାରେ,
ମୋ ଧୂଳି-ଧୂସର ଏଇ ଜୀବନର କ୍ଷୁଦ୍ର ଚାରିଆଡ଼େ ।

(୨)

ଦେଶ-ଗଣ-ଉଦ୍ଧାରକ ବିକଟ ଚିତ୍କାରେ
ନେତାଙ୍କର ଆସ୍ଫାଳନେ, ଦୃପ୍ତ ବ୍ୟବହାରେ
(ତୁମେ ନୁହଁ, ଧରାଭାର ବହନ୍ତି ସେ ଯେହ୍ନେ ତାଙ୍କ ସ୍କନ୍ଧେ,
କ୍ଷମତାରେ ଅନ୍ଧୀଭୂତ, ସଦା କ୍ଷିପ୍ର ମର୍ଯ୍ୟାଦାର ଗନ୍ଧେ)
ପାର୍ଥିବ ତୃଷ୍ଣାରେ ବ୍ୟସ୍ତ ଧରାର ଏ ଜନତା-ପ୍ରବାହେ
ସହରେ ବା ଗାଏଁ
ପ୍ରତି ଛୋଟ ଲାଭ ପାଇଁ, ପ୍ରତି ଜୟ ପାଇଁ
ଜୀବନ-ସଂଗ୍ରାମେ,
ତୁମେ ଯହିଁ ହୁଅ ହଣା, ଅବା ହୁଏ ହତ୍ୟା ତୁମ ନାମେ,
ହେ ବିରାଟ, ତୁମକୁ ମୁଁ ଖୋଜୁଅଛି ବିକଳେ, ଅସ୍ଥିରେ,
ଛୋଟ ମୋର ଏ ଦୁଇ ଆଖିରେ;
ଫାଙ୍କିର୍ ଏ ମହା ଅଭିନୟେ

ହେ ସତ୍ୟ, ତୁମରେ ମୁହିଁ ନ ପାଇ କେଉଁଠି
ଉଭା ଏଇ, ସଭୟ-ବିନୟେ ।

(୩)

ରାଜା, ମନ୍ତ୍ରୀ, ଧନିକର ସାଡ଼ମ୍ବର ଅହମିକା ତଳେ,
ଜନତାର ଅଗୋଚରରେ ଦୂରେ କେଉଁ ଅବଜ୍ଞାତ ଘରେ,
ଦରିଦ୍ର କୁଟୀରାଙ୍ଗନେ ବଞ୍ଚେ ଯହିଁ ଶାନ୍ତ, ସାଧୁ ପ୍ରାଣ,
ନାହିଁ ମାଗେ ଲୋକମାନ୍ୟ, ପୁରସ୍କାର, କ୍ଷମତା, ସମ୍ମାନ,
ଆପଣାରେ ଆତ୍ମସ୍ଥିତ, ଶ୍ରମଲବ୍ଧ ଅନ୍ନରେ ସନ୍ତୁଷ୍ଟ,
ଧର୍ମ ତା'ର କୋଳାହଳେ, ଅନୁଷ୍ଠାନେ ନୋହି ପରିପୁଷ୍ଟ
ପରିତୃପ୍ତ ସତ୍ୟ ବାକ୍ୟେ, ପ୍ରତିବେଶୀ ଜନେ ସେବିପାରେ,
ଅଧୂମ ସେ କ୍ଷୁଦ୍ର-ଶିଖା, ଧୂମମୟ ଜଟିଳ ଧରାରେ –
ନରତ୍ୱର ସେ ମଧ ବିକାଶେ,
ଦେବତାର ସେହି ଏକ ଛୋଟ ଅବତାରେ,
ତୁମରେ ହେ ପ୍ରଭୁ ଜୀବନେଶ,
ବାରମ୍ବାର ମୁହିଁ ନମସ୍କାରେ,
ନ ଅନାଇ ମନ୍ତ୍ରୀ ବା ନେତାରେ
କୋଳାହଳେ ମନ୍ଦିରେ ଗିର୍ଜାରେ ।

(୪)

ତମେ ଯଦି ସତ୍ୟେ ଥାଅ ଦୀନର ଲୋତକେ,
ନିକ୍ଷେଷିତ, ଅବଜ୍ଞାତ ବକ୍ଷେ,
ନାହିଁ ଥାଇ ବର୍ବରର ଭ୍ରାନ୍ତ ଛୁରିକାରେ
ଥାଅ ଯଦି ତୁମେ ବନ୍ଧୁ, ହନ୍ୟମାନ-ବିକଳ-ଚିତ୍କାରେ,
ନ ଥାଇ ଦେବାୟତନେ ଭଣ୍ଡ ଧାର୍ମିକର,
ଥାଅ ଯଦି ଉପେକ୍ଷିତ ଦରିଦ୍ର ହୃଦୟେ,
(ନିଷ୍ଠାବନ୍ତ, ପାପଭୀତ, ଅଛନ୍ଦ୍ମ, ସରଳ)
ସେଇଠାରେ ଘେନାହେଉ ମୋର ନମସ୍କାର,
ସେହି ହେଉ ପୀଠ ମୋର କ୍ଷୁଦ୍ର ତପସ୍ୟାର ।

(୫)

ଅକରୁଣ ଅବା ଏ ସଂସାରେ
କାହୁଁ ଆସେ ଆତ୍ମତ୍ୟାଗୀ ସ୍ନେହ ଜନନୀର,

ଦୂରଗତ ଭାଇ ପାଇଁ ଭଗିନୀର ନେତ୍ରେ କିପାଁ ନୀର,
କ୍ରୀଡ଼ାରତ କିଶୋରୀରେ କିଏ କରେ ପୀରତି-ପାଗଳ,
ସର୍ବ ତେଜି ସନ୍ନ୍ୟାସିନୀ ଜାଳିବ ସେ ଜୀବନ-ଜାଗର,
ଶିଶୁ ମୁଖେ ଅକଳୁଷ ହସ,
କିଏ ଦେଇ କରେ ଏହି ରୁକ୍ଷ ଧରା ସୁନ୍ଦର ସରସ ?
ଜୀବନ-ସଂଗ୍ରାମ-ରୂଢ଼, ସ୍ୱାର୍ଥ-ଯୁଦ୍ଧ-ଶୋଣିତ-କୁତ୍ସିତ
ମାତ୍ସ୍ୟ-ନ୍ୟାୟ-ପ୍ରଚାଳିତ, ତୃଷ୍ଣା-ବିଜଡ଼ିତ,
ଏ ଜଗତେ ତୁମେ ଯଦି ସେଇ କ୍ଷୀଣ ଧାର
ସ୍ନେହ, ପ୍ରୀତି, ମାୟା, କରୁଣାର,
କୁତ୍ସିତ ଏ ଧରଣୀରେ ତୁମେ ଯଦି ସେଇ ସ୍ୱର୍ଣ୍ଣବେଣୀ,
ଦୈବ ସୁଷମାର,
ସେହି ହିଁ ଈଶ୍ୱର ମୋର, ସେହି ମୋର ଆଶ୍ୱାସ ଆତ୍ମାର,
ଦିଏ ତାକୁ ମୋ ହୃଦର ନିତ୍ୟ ନମସ୍କାର ।

## ପଳାତକ ହେ ମୋର ଯୌବନ

ଥରେ ଥରେ ଦେଖି ପଥ-ଶେଷ,
ଜମା-ଖର୍ଚ୍ଚ କରେ ମନେ ମନେ,
ଆତ୍ମା ଡାକେ ଚିତ୍କାରି ଅନ୍ତରୁ
କି କଲି ମୁଁ ଏ ଦୀର୍ଘ ଜୀବନେ ?
ଦେଖୁ ଦେଖୁ ଶୁକ୍ଳ ହୁଏ କେଶ,
କମିଆସେ ଜୀବନୁ ଉତ୍ସାହ,
ସିନ୍ଧୁ ସ୍ପର୍ଶେ ମନ୍ଦୀଭୂତ ଯେହ୍ନେ
ସ୍ରୋତସ୍ୱିନୀ ଉଚ୍ଛଳ ପ୍ରବାହ ।
ଏଣିକି କି ପ୍ରଥମ ମଳୟ
ମୋ ପାଇଁକି ନ ଆଣିବ ଚିଠି ?
ପରିଚିତ ବନ୍ଧୁ ସେ ପ୍ରାଚୀନ,
ଚାଲିଯିବ ମତେ କରି ପିଠି ?
ଉପବନେ ପ୍ରଥମ ମଲ୍ଲିକା
ହସି ପୁଣି ଚାହିଁବ ଆକାଶେ ?
ସେ କି ମତେ କହିବ ବିଦ୍ରୂପେ
"ମୁଁ କେବଳ ଯୌବନ ସକାଶେ ?"

କାହିଁ ଯାଅ, ଅଲକ୍ଷିତେ ମୋର,
ପଳାତକ ହେ ମୋର ଯୌବନ ?
ନେବ ସବୁ ? ଆପତ୍ତି ମୋ ନାହିଁ, –
ରଖିଯାଅ କେବଳ ସ୍ୱପନ ।
ଯେ ସ୍ୱପନ ଦେଇଥିଲା ଆଖେ
ଯାଦୁକରୀ କଳ୍ପନା-ଅଞ୍ଜନ,
ଲାଗୁଥିଲା କଳ୍ପଲୋକ ସମ
ମୃତ୍ତିକାର ରୂଢ଼ ଏ ଭୁବନ ।
କୃଷ୍ଣ କେଶ ଶୁକ୍ଳ ହେଉ ପଛେ
ଅଂଗ ହେଉ ବିଗତ-ଯୌବନ,
ଖେଳୁଥାଉ ସ୍ୱପ୍ନିଳ ଅନ୍ତରେ
ସେ ଦିନର ଗୀତିମୟ ମନ ।
ମୁଁ ଜାଣେ, ମୁଁ କିଛି ନାହିଁ କରି,
ନାହିଁ ଜମା, ଖର୍ଚ୍ଚ କିଛି ନାହିଁ,
କେବଳ ଯା' ବଞ୍ଚିଛି ଧରାରେ,
ବଞ୍ଚିବାର ଅର୍ଥ ଖୋଜି ନାହିଁ ।
ବୁହାଇଛି ନୟନରୁ ଲୁହ,
ଦୁଃଖ ଦେଖି ଜୀବ୍‌, ମାନ୍‌ବର,
ଗାଇଛି ବା ଉନ୍ମତ୍ତ ଆବେଗେ
ସ୍ୱାଦ ପାଇ ରୂପ, ପ୍ରଣୟର ।
କ୍ଷୀୟମାଣ ବିରାଟ ବିଶ୍ୱରେ
ସେଇ ମୋର ମାତ୍ର ସାର୍ଥକତା,
ପଥ-ଧାର ଫୁଲ-ଘାସ ପରି
କ୍ଷଣଲାଗି ବର୍ଣ୍ଣୋଜ୍ଜ୍ୱଳ ସତ୍ତା ।
ତଥ୍ୱ ମୋର ଲୋଡ଼ା ନାହିଁ କିଛି,
ଯେତେ ଦିନ ଅଛି ଏ ଧରାରେ,
ମାଟି, ଘାସେ ଭଲ ପାଉ ଥାଏଁ,
ମାୟା ଦେଉ ମାଧୁରୀ ଚିନ୍ତାରେ ।
ସବୁ ନିଅ, ଆପତ୍ତି ମୋ ନାହିଁ,
ପଳାତକ ହେ ମୋର ଯୌବନ,
କହୁଥାଏ ଯଦି ସେ ମଳୟ
''ଆସିଛି ମୁଁ, ଖୋଲ ବାତାୟନ୍‌ ।''

# ହେ ଅତୀତ ଧୀରେ ଚାଲିଯାଅ

ଛାଡ଼ିଯାଅ, ମତେ ଛାଡ଼ିଯାଅ,
ହେ ମୋର ଅତୀତ, ଦୈନ୍ୟ, ବିତ୍ତ
ସବୁ ଘେନି ତମେ ଫେରିଯାଅ,
ହେ ଅତୀତ, ମତେ ଛାଡ଼ିଯାଅ ।
ଘରମୁହାଁ ଆଜି ପ୍ରବାସୀ ପଥିକ,
ଦେଖାଯାଏ ତା'ର ତୋଟା ଗଛ ଶିଖ
ଉତ୍ସାହ ତା'ର ଅଧିକ ଅଧିକ;
ନିଭିଆସେ ତା'ର ହୃଦଦାହ,
ହେ ଅତୀତ, ତମେ ଦୟାକରି ମତେ,
ଧୀରେ ଦୂରେ ଅପସରି ଯାଅ ।

ଘରେ ସେ ଭେଟିବ ତା ମହା-ଜନନୀ,
ପଚାରିବେ ଯେବେ କି ତା'ର କରଣୀ,
ବକ୍ଷେ ଜଳାଇ ସରମ ବହ୍ନି,
ଜଣାଇବ କିସ, ହାୟ !
ହେ ଅତୀତ, ତମେ ଚିତ୍ତପଟରୁ
ଧୀରେ ତେଣୁ ପୋଛିହୋଇଯାଅ ।
ଅତୀତ ହେ, ତମେ ଛିନ୍ନ ଭିନ୍ନ,
ପଙ୍କିଳ, ମୂଢ଼, ସଂଗତିହୀନ,
ପ୍ରମାଦ-ବହୁଳ, ବାସନା-ଦୀର୍ଣ୍ଣ
ଅସତ୍ୟ-ଅବଗାହ,
ହେ ମୋର ଅତୀତ, ସକଳ ସେ ସ୍ମୃତି
ପୋଛି ନେଇ ଦ୍ରୁତେ ଚାଲିଯାଅ ।

ଆଜି ଏ ଜୀବନ ନୂତନ ମନ୍ତ୍ରେ,
ଚାଲିବାକୁ ଚାହେ ଚିତ୍ତ-ଯନ୍ତ୍ରେ,
ନୂତନ ଜନ୍ମେ, ନୂତନ ପନ୍ଥେ
ନବ ମନ, ନବ କାୟ,
ନୂତନ ଏ ପଥେ ହୁଅନା ମୋ ସାଥୀ
ଅତୀତ ରୁଗ୍‌ଣକାୟ,

ଶୁଦ୍ଧ, ଶୁଭ୍ର ରଖି ଏ ଜୀବନେ
ଆପେ ଧୀରେ ପୋଛିହୋଇଯାଅ ।

ଏକଇ ଜୀବନେ ଜନ୍ମାନ୍ତର
ନୂତନ ଚିତ୍ତ, ନବ କଳେବର
ନୂତନ ବନ୍ଧୁ, ନବ ପରିସର
ଅତୀତ ନିଅ ବିଦାୟ,
ନୂତନ ଏ ବେଶେ ଜନନୀର ପାଶେ
ନିର୍ଭୟେ ଯିବି, ଉତ୍ସାହ ଆସେ,
କହିବି ମାଆରେ ସନ୍ତାନ-ଭାଷେ
'ଫେରିଲି, ଆଉ କି ଚାହ ?'
ସେତିକି କହିବା ପାଇଁକି ମୋ ସ୍ମୃତି
ମୁକ୍ତ, ଅଭୀତ କରିଯାଅ ।

## ଜୀବନ-ପଥିକ

(୧)

ସେ ଦିନ ଥିଲା ସେ ନିର୍ମଳ ମନ; ସତ୍ୟକଥକ, ଉଚ୍ଚଶିର
ସରଳ, ନିରୀହ, ଉନ୍ନତକାମୀ, ଶୁଭ ଆଗ୍ରହୀ, ପୁଣ୍ୟେ ସ୍ଥିର ।
ଆଶାମୟ ସେହି ଜୀବନ-ପଥିକ, ଦେଖିଥିଲି ତା'ରେ ବାଲ୍ୟକାଳେ,
ଚିତ୍ତ ତାହାର ଜର୍ଜର ଥିଲା ଜନକଲ୍ୟାଣ ସ୍ୱପ୍ନଜାଳେ ।

(୨)

ପାପ ସେ କେବଳ ଶୁଣିଥିଲା କାନେ, ଜାଣିଥିଲା ମିଛ କହଁତି ସାଥୀ,
ବାଣୀ ଥିଲା ତା'ର କେବଳ ସତ୍ୟ, ଚୌର୍ଯ୍ୟ ନ ଥିଲା ବିବେକ ଘାଁଟି ।
ପୂତ, ଅକପଟ, ଅପାପବିଦ୍ଧ, ବିମଳ ହାସ୍ୟ ଲାଗିଥେ ଓଠେ
ଅକଳୁଷ ତା'ର ଚିତ୍ତେ ନଥିଲା 'କାଲି-କିସ-ହେବ' – ଝଞ୍ଜା ମୋଟେ ।

(୩)

ସେହି ସେ ପଥିକ କଇଶୋର ଡେଇଁ ଯଉବନେ ଯେବେ ଦେଇଛି ପାଦ,
ପଥ ଦୁଇପାଶେ ପ୍ରଲୋଭନ-ବନୁ କୋକି, କୁସୁମର ଡାକିଲା ସ୍ୱାଦ ।
ସରଳ ନିରୀହ ପଥିକ ସେ ଥିଲା, ନିଃସଙ୍ଗ ଥିଲା ଜୀବନ-ପଥେ,
ଦୁଇପାଶ ବନୁଁ ଦେଖାଦେଲେ ସାଥୀ, ମୋହିଲେ ତା ମନ ମଧୁର ବଚେ ।

(୪)

ବାଟଚଲା ଛାଡ଼ି, ଲକ୍ଷ୍ୟ ପାସୋରି, ପଥିକ ପଶିଲା ଲୋଭର ବନେ,
ବୁଡ଼ିଗଲା ଶତ କ୍ଷୁଦ୍ର ସୁଖରେ, ବାସନା ଜାଳର ସଂଘର୍ଷଣେ ।
ତୃପ୍ତି ପଛରେ ଧାଇଁଲା ବିଚାରା, ଆପାତରେ ଭାବି ସତ୍ୟ-ସୁଖ,
କ୍ଷଣିକରେ ଭାବି ଶାଶ୍ୱତ-ସୁଖ, ଆଶ୍ଳେଷ ଦେଲା ମୁଗ୍ଧ, ମୂକ ।

(୫)

ଆସିଲେ କ୍ଷଣିକ-ମଉଜ-ବିଳାସୀ ବନ୍ଧୁ ଯେତେକ ମମତାମୟ,
ନିରୀହ-ପଥିକ-ଚରଣ-ସୁଖରେ ନାହିଁ ରହେ ଧରାମାଟିରେ ଥୟ;
ସଖୀ ଆସି ଦେଖା ଦେଇଗଲେ କହି, ମୁହିଁ ଯେ ତମର ଅପେକ୍ଷିକା;
ସବୁ ସଁପି ଦେଲେ, ଅଶ୍ରୁ ଢାଳିଲେ, ପଥିକର ହେଲା ଚିତ୍ତ ବିକା ।

(୬)

ଜାଣିନି ପଥିକ ବାସନାର ବନେ କେତେ ସେ ବରଷ ଦେଇଛି କାଟି
ତାକୁ ଲାଗେ ଅବା ପହରେ ଯାଇଛି, ପଡ଼ିଛି ଅସର ଭୋଗର ରାତି ।
ସହସା ଦେଖିଲା ଦିବାଲୋକ ହେଲା, କାହାଁତି ସବୁ ସେ ଆପଣା ଜନ ?
କାହିଁ କାହାର ସେ ସ୍ନେହର ପରଶ, ମମତାମୟ ସେ ଅଶ୍ରୁକଣ ?

(୭)

କିଛି ନାହିଁ, ସବୁ ସ୍ୱପ୍ନ ସେ ଅବା, ପିଠିରେ ତାହାର କାଳର ଭାର,
ପୂର୍ବପରି ସେ ସଂଗ-ବିହୀନ, ବହୁଦୂର ପୁଣି ଲକ୍ଷ୍ୟ ତା'ର ।
ସଖ୍ୟ ଯା ଥିଲା, ମୈତ୍ରୀ ଯା ଥିଲା, ପ୍ରାଣ-ବିନିମୟ ଥିଲା ଯା କାଳେ
ସେ ଫୁଲ ସୁରଭି ଯାଇଅଛି ଚାଲି, କଣ୍ଟାର ଘାଆ ଶରୀରେ ଘାରେ ।

(୮)

ବହୁଦିନ ପରେ ଦେଖିଲି ତାହାରେ, ପଥଧାରେ ଉଭା ପଥିକ ଜନ,
କାହିଁ ସେ ତାହାର ଅଟ୍ଟହାସ୍ୟ ? ସୁଖ-ଚଞ୍ଚଳ ନେତ୍ର କ'ଣ ?
ସେହି କି ସେ ଲୋକ ? ପିଲାଦିନ ସାଥୀ ? ଚିହ୍ନି ପାରିଲି ନାହିଁ ମୁଁ ଆଗେ,
ପରିଚିତ ଜନ ନଭେଟିବାପାଇଁ ନେତ୍ର ବା ତା'ର ଭିକ୍ଷା ମାଗେ ।

(୯)

କେବଳ ରହିଛି ଶରୀର ତାହାର ଆଉ ସବୁ କିଛି ନେଇଛି ଶୋଷି,
ଲଜ୍ଜିତ, ଅନୁତପ୍ତ ପଥିକ, ନିଜରେ ଯେସନେ ମଣଇ ଦୋଷୀ ।

ପଚାରିଲି ପାଶେ ଯାଇ – ଭାଇ ତେବେ କାହିଁକି ଯିବାର ବାଞ୍ଛା ତବ ?
'ଲକ୍ଷ୍ୟସ୍ଥଳକୁ' କହି ସେ ନୀରବେ ତେଜିଲା ନେତ୍ରୁ ଅଶ୍ରୁ ଲବ ।

(୧୦)

କହିଲି ତାହାରେ 'ଭୟ ନାହିଁ ଭାଇ, ଶଂକା ସରମ ଛାଡ଼ ହେ ତ୍ୱରା,
ପ୍ରମାଦ ଯା ହେଲା ସ୍ୱପ୍ନ ସେ ଭାବ, ସତ୍ୟ ଜୀବନ ଆଗରେ ପରା ।
ଜୀବନର ପଥ ଏକାଇ ଚାଲିବ, ସଖ୍ୟ ତ ଏଥି ଅଦରକାର,
ସଂସାରେ ଯାହା ମମତା ସେ ସବୁ ସ୍ୱାର୍ଥର ମଧୁ ସୂକ୍ଷ୍ମସାର ।

(୧୧)

ତରୁ ଦେଇଯାଏ ଅୟୁତ ପତ୍ର ଜନନୀ ମାଟିର ଖାଦ୍ୟ ଲାଗି,
ଆକାଶ ଫେରାଏ ସହସ୍ରଗୁଣେ ଧରାରୁ ଯେ ଜଳ ନେଇଥେ ମାଗି ।
ଏ ଧରା-ପଥରେ ପ୍ରତିଟି ବାଟୋଇ ନେବେ ଯଦି, କିଛି ଦେଇ ଇ ଯିବେ,
ନଷ୍ଟି ନିଜର ନ ଶୋଚି କେବଳ, କି ଦେଇଛ ଭାବ ଅନ୍ୟ ଶିବେ (୧) ।

(୧୨)

ଅତୀତ ଫୁଲର କଣ୍ଟା, ସୁରଭି ଉଭୟରେ ଭାଇ, ପକାଅ ଝାଡ଼ି,
କ୍ଷଣିକର ମାୟା ମନୁ ଦେଲେ ପୋଛି, ଶାଶ୍ୱତ-ସୁଖ ଆସିବ ମାଡ଼ି ।
ତୁମେ ନୁହଁ ଏଇ ଶରୀର ବା ମନ-କ୍ଷୟିଷ୍ଣୁ ଯାହା ଖୋଜିଲ ବୋଲି,
ଅବିନାଶୀ ତମେ, ଉଭା ସିନା ଆଜି ମୁଖେ ଅନୁତାପ-କାଳିମା ବୋଳି ?

(୧୩)

ବସନ୍ତ ଏଇ ବନସ୍ପତିର ବଂଧୁ କେବଳ ନୁହେଁ ହେ ଜାଣ,
ଗ୍ରୀଷ୍ମ ଶୀତର କଷାଘାତ ଲୋଡ଼ା, କରିବାକୁ ତରୁ ବର୍ଦ୍ଧମାନ ।
ମୂଢ଼ ଚେତନାର ବିକାଶପାଇଁକି ଲୋଡ଼େ ନର ବହୁ ଅଭିଜ୍ଞତା,
ପ୍ରମାଦରୁ ସବୁ ଶିକ୍ଷା ଆସଇ, ମିଥ୍ୟା ଶିଖାଏ ସତ୍ୟ କଥା ।

(୧୪)

ସେ ଦିନ ସରଳ ନିରୀହ ପଥିକ ପ୍ରାଣରେ ଉଠିଲା ଆଶାର ଉଷା,
ଶୁଷ୍କ ଅଧରେ ଦେଖାଦେଲା ପୁଣି ସେହି ଭୁଲାଣିଆ ହାସ୍ୟ-ଭୂଷା ।
ମୋ ସାଥେ, ଆଶାୟୀ-ଚରଣ ଚାଳଇ, ପଚାରଇ ତମେ ମିତ୍ର କିଏ ?
''ମୁଁ ତମ ପ୍ରାଣର ଗହନ ନିବାସୀ'' – ବେଳରେ ମୁଁ ଖାଲି ଚେତାଇଦିଏ ।

(୧) ଅନ୍ୟ ଶିବେ – ଅନ୍ୟର ମଙ୍ଗଳରେ ।

## ନରତତ୍ତ୍ୱ

ରୋପିଲି ଲତା, ଦିଏ କୁସୁମ-ଗଂଧ,
ମୋ କୁଟୀ-ବାତାୟନେ ରଚିଛି ଛନ୍ଦ ।
ରୋପିଲି ବୃକ୍ଷ, ଦିଏ ଛାୟା ଶୀତଳ
ଋତୁରେ ଅଣ୍ଟି ଭରି ଢାଳଇ ଫଳ ।

ପାଳିଲି ଶ୍ୱାନ ଏକ, ସେ ମୂକ ପ୍ରାଣୀ
କରଇ ସେବା ମୋର ହୃଦୟ ଜାଣି ।
ପାଳିଲି ନର ଏକ ପରମ ସ୍ନେହେ,
ଗଲା ସେ ପଦାଘାତ ମାରି ଏ ଦେହେ ।

## ଅସାର ନିର୍ବାଣ

ଆତ୍ମସ୍ଥ ମୁଁ ହେ ଜନନୀ, ହୃଦ-ଗଂଭୀରାରେ —
ତବ ପଦକମଳରେ ରଖି ସାଶ୍ରୁଧ୍ୟାନ,
ବିଚାରୁଛି ଡେଇଁଲି ବା ଶରୀର-କାରାରେ,
ସଂସାର-ନିର୍ଲିପ୍ତ, ଅବା ଲଭିଲି ନିର୍ବାଣ ।

ଏକାଳେ ସେ ଧ୍ୟାନସ୍ତରେ ନିସ୍ତବ୍ଧ ଆକାଶ
ମୁହୁର୍ମୁହୁଃ ହେଲା କା'ର ବିଳାପେ କମ୍ପିତ,
ତପ୍ତ, ବ୍ୟସ୍ତ କରେ କା'ର କରୁଣ ନିଶ୍ୱାସ
କାହାର ଯାତନା କରେ ଦେହ କଣ୍ଟକିତ ?

କର୍ଣ୍ଣେ ପଶେ କାହୁଁ ଭିକ୍ଷା ବୁଭୁକ୍ଷୁ ଶିଶୁର,
ଗୋପନ କ୍ରନ୍ଦନ କେଉଁ ଭଗ୍ନ-ହୃଦୟର,
ବାଣାହତ ଶୋଣିତାକ୍ତ ବ୍ୟଥା କେ ପଶୁର,
ଉତ୍ପାଟିତ, ବେକାରର ମୂଢ଼ ଅଶ୍ରୁଧାର ।

କି ଅଳି କରିବି ଆଉ ? କି ନିମନ୍ତେ ଧ୍ୟାନ ?
ଯାତନାକ୍ତ ଜୀବପାଶେ କି ଅର୍ଥ ନିର୍ବାଣ ?

# ସମର୍ପଣ

ଅହମିକା-ଜାଲୁଁ ମୁକ୍ତି ଲଭିବାପାଇଁ,
ଅଜାଡ଼ି ନିଜରେ କାହା ପଦ ତଳେ
ଦେବି, ମୋ ଚିତ୍ତ ବାଛ ।
ଜଗଜ୍ଜନନୀ ଚରଣରେ ତେଣୁ
କରଇ ନମସ୍କାର,
ଦେଇ ଉପହାର ଜଂଜାଳ ଜାଳ,
ରୁଗ୍ଣ ଅହଂକାର ।
ଅଛି ଆଉ କିବା ଚରଣେ ବାଢ଼ିବା
ପାଇଁ ପୂଜା-ଅରପଣେ ?
ଅଂଜଳି ଭରି ଖାଲି ଅଛି ତୋଳି
ଫୁଲ, ଅହମିକା-ବନେ ।
ତୋଷି ଆପଣାର ଶତ ତୃଷାର
ପିପାସୀ ବହ୍ନି ଶିଖା,
କରିଛି ନିଜରେ ଅଜ୍ଞତାଭରେ
ମର୍ମ-ଦହନ ଚିତା ।
ଦଗ୍ଧ, ମଳିନ ଏ ହୃଦୟ, ମନ
ଢାଳିଦେଲେ ପଦତଳେ,
ନବ ଜୀବନର କଅଁଳ ପତର
ଜାଗିବ ବା ପରଶରେ ।
ସବୁ ନିଃଶେଷ, ଅଛି ଖାଲି ଲେଶ
ଦିବ୍ୟ-ଜୀବନ-କଣା,
ସେହି ଆଜି ଖୋଜେ ଜନନୀରେ ତା'ର
ହୋଇ ବହୁ ବାଟ ବଣା ।

# ଅପେକ୍ଷମାଣ

(୧)

ଜାଣେ କି ବୀଜ ଆପଣା ସମ୍ଭାବନା ?
ତା' ସିନା ଜଣା ଦୂରସ୍ଥ ରବିରେ,

ସାଉଁଳି ତାକୁ ଆପଣା ଉଷ୍ମ କରେ
ଫୁଟାଏ ତାକୁ ସୁନ୍ଦର ଛବିରେ ।

(୨)

ପଉଷ ଶୀତେ ଜଡ଼ ସେ ବୃକ୍ଷଲତା,
ମାଟିରେ ଉଭା ନିସ୍ତେଜ ମଉନ,
ବସନ୍ତ ତା' ପରଶ ଦେଇ ଗଲେ
ପୁଷ୍ପ ଫଳ ବିକଶିଉଠେ ପୁନଃ ।

(୩)

ମାଟି ସେ ଥିଲା ଶୂନ୍ୟ, ରୁକ୍ଷ, ହେୟ,
ଆକାଶ ଦେଲା କରୁଣା-ରୂପ ବାରି,
ସେହି ସେ ମାଟି ଶ୍ୟାମଳ, ଚିକ୍‌କଣ
ଶସ୍ୟେ, ଫୁଲେ ହୁଅଇ ମନୋହାରୀ ।

(୪)

ମତେ କି ଜଣା ଆପଣା ସମ୍ଭାବନା ?
ସେ-ଜଣା ତବ କରୁଣାମୟ ମନେ,
ଅପେକ୍ଷିଛି ପ୍ରଭୁ ହେ, ତେଣୁ, ବୀଜ
ଯେହ୍ନେ ଥାଏ ଅପେକ୍ଷି ତପନେ ।

## ଅନ୍ୱେଷୀ

କାମ୍ୟ ଯାହା ଏ ଭୁବନେ
ବାସନା ଯା ଚାହେଁ,
ସବୁ ଥିଲା ସେଠି,
ବର୍ଣ୍ଣ, ରସ, ରୂପ, ଗନ୍ଧ,
ନୃତ୍ୟ ସଙ୍ଗୀତର
ଚାଲିଥିଲା ଭେଟି ।
ଥିଲେ ମାନ୍ୟଗଣ୍ୟ ଯେତେ,
ବସନ-ଭୂଷାର
ଚାରୁ ଅଭିନୟ,

ଭୋଜ୍ୟ, ପେୟ, ଉପାହର,
ମାଦକ ପ୍ରକାଶ
ନିଃଶଙ୍କ, ନିର୍ଭୟ ।
ସେ ସଭାରେ ଥିଲେ ସବୁ
ବାନ୍ଧବ ବାନ୍ଧବୀ
ସ୍ମିତବନ୍ତ ସର୍ବେ,
ଶ୍ରବଣେ ଶୁଣିଲି ସ୍ତୁତି;
ଭୋଗିଲି ମଉଜ
ସଖ୍ୟ-ମୁଗ୍ଧ ଗର୍ବେ ।
ସହସା ବୋଧିଲି କିନ୍ତୁ
ବିକଳ-ଶୂନ୍ୟତା
ମିଥ୍ୟା ଦିଶେ ସଭା,
ସ୍ୱାମୀ-ଗରବିଣୀ-ନାରୀ
ହେଲା ବା ଦୁର୍ଭାଗ୍ୟେ
ସହସା ବିଧବା ।
ବୁଝି ହେଲାନାହିଁ କିଛି,
କାହା ଯୋଗୁ ପ୍ରାଣ
ଶୂନ୍ୟ ବୋଧ କରେ,
ଆଲୋକିତ, ଭୋଗ୍ୟୋଜ୍ଜ୍ୱଳ
ସେ କ୍ଷୁଦ୍ର ସଂସାରେ
ଚିତ୍ତ ନାହିଁ ଧରେ ।
ହଠାତ୍ ବୁଝିଲି ଚିତ୍ତେ
ତୁମେ ନାହଁ ସେଠି
ହେ ଅତି ନିଜର,
ଧାଇଁଲି ସେ ସଭା ତେଜି
ବାହାର ଭୁବନେ
ଖୋଜି ତରତର ।
ସଭାଜନେ ଦେଲେ ତାଳି
'ପାଗଳ ଏ' 'ବୋକା',
'ପାନୀୟର ଫଳ',
ମୁଁ କିନ୍ତୁ ଧାଇଁଛି ସେଠୁ
ନ ଶୁଣି କା' କଥା
ଖୋଜି ମୋ ଦୋସର !

ସେ କାଳୁ ଖୋଜୁଛି ବଂଧୁ
ଅଂଧାରେ ଆଲୋକେ,
ଘରେ ଓ ବାହାରେ,
ହେ ବଂଶୀ-ବାଦକ କୃଷ୍ଣ
ଅଛ ଯେ ଗୋପନେ
ବ୍ୟାପ୍ତ ମହିମାରେ ।
ହେ ଅଲଭ୍ୟ, ହେ ଅଦୃଶ୍ୟ
ପରମ ଚୁମ୍ବକ
ମାନବ ହିଆର,
ଖାଲି ଟାଣ, ନାହିଁ ମିଳ —
ଏଇ ତବ ପରା
କୂଟ କାରବାର !
ପଥଚାରୀ ମୁହିଁ ତେଣୁ
ଖୋଜଇ ତୁମରେ
ଅନ୍ତରେ ଅନ୍ତରେ,
ଖୋଜିବି ବା ଲୋକେ ଲୋକେ
ତାରାରେ, ତାରାରେ
ଜନ୍ମ ଜନ୍ମାନ୍ତରେ ।

## ରାଜ-ଦର୍ଶନ

(୧)

କେଉଁ ଲୋକୁ ଆସି ଏଥି ପରବାସୀ
କାଟିଲି ଦୀର୍ଘ କାଳ,
ଦେଖିଲି ଭୂଧର ଶ୍ୟାମପ୍ରାନ୍ତର
କ୍ରୀଡ଼ା ରବି, ତାରକାର ।
ରାଜ୍ୟ ଦେଖିଲି ସିନା, ରାଜା କାହିଁ ?
ଅନ୍ତର ଉଠେ ଥରି,
ଗୋପନ ପ୍ରାସାଦ — ରୁଦ୍ଧ ଦୁଆରେ
ଯିବି କେଉଁ ପଥ ଧରି ?
ଜୀବନେଶ୍ୱରେ ଭୁବନେଶ୍ୱରେ
ଭେଟ ହେବି କେଉଁପରି ?

(୨)

ତିକ୍ତ ମଧୁର ଦେଇଛ ପ୍ରଚୁର
ବିଚିତ୍ର ଅନୁଭବ,
ଦେଇଛି ନେଇଛି ଆଖିପତା ପୋଛି
ପ୍ରେମେ ଜୟ – ପରାଭବ,
ତୁମର ପ୍ରଣୟେ ଏବେ ପ୍ରାଣ କହେ
ଝାସିବ ଅଶ୍ରୁ ଭରି
ଅଭିଜ୍ଞତାର ମହାସିନ୍ଧୁରେ
ଆନନ୍ଦମୟ ଚିନ୍ମୟ ବୁଡ଼େ
ସହସ୍ର ମୋର ଛୋଟ ଅହମିକା
ଯେପରି ପଡ଼ିବ ଝରି ।
ଜୀବନେଶ୍ୱର, ହେ ଭୁବନେଶ୍ୱର,
ଭେଟ ମାଗେ ସେଇପରି ।

(୩)

କେତେ ସାଥୀ ଆସି ଜୀବନ-ପତ୍ରେ
ଲେଖିଗଲେ କେତେ ବାଣୀ,
ବନ୍ଧୁ ବଇରି ଏ ଜୀବନ ଭରି
କେତେ ମିଳାଇଲ ଆଣି ।
ଆଜି ମୋର ଖାତା ତୁମରି ବାରତା
ଧରିବ ସ୍ପଷ୍ଟ କରି,
ତୁମରି ବୀଣାର ମୃଦୁ ଝଙ୍କାରେ
ମୋ ନୟନ ଯିବ ଭରି ।
ଜୀବନେଶ୍ୱର, ହେ ଭୁବନେଶ୍ୱର,
ଭେଟ ହେଉ ସେହିପରି ।

## ଅତି ଆପଣାର

ବହୁବାର ଅତି ସନ୍ତର୍ପଣେ,
କରିଅଛ ଆଘାତ ଦୁଆରେ,
କାଳେ ଅବା ଖୋଲିବି କପାଟ,
ଅପେକ୍ଷିଛ ଅନ୍ଧାରେ ବାହାରେ ।

ଶୁଣି ଅବା ଶୁଣିନି ଶବଦ,
ପଚ଼ାରିନି କିଏ ସେ ଡାକୁଛ,
ଅବଜ୍ଞାତ, ଅଜ୍ଞାତ ପରିରେ,
ତୁମରେ ମୁଁ ଫେରାଇଛି, ତୁଛ।
ଯଦି କହେ ବ୍ୟସ୍ତ ଥିଲି ବୋଲି,
ସେ କେବଳ ଆତ୍ମ-ପ୍ରତାରଣା,
ଅହମିକା ଖାଲେ ମୁଁ ପହଁରି
କରୁଥିଲି ସାଗର ଧାରଣା।
ଆପଣାକୁ ଘେରାଇ ପ୍ରାଚ଼ୀରେ
ସ୍ତରେ ସ୍ତରେ କ୍ଷୁଦ୍ର, କ୍ଷଣିକର,
ଆପଣାର ଭ୍ରାନ୍ତିରେ ମୁଁ ମତ୍ତ
ତୁମରେ ମୁଁ ଚିହ୍ନିନି, ଈଶ୍ୱର !
ଏତେ ଥର ଆସିଛ ଦୁଆରେ
'ଚିହ୍ନୁଛ ତ ?' – ବୋଲି ହୃଦେ ବାଣୀ
କହିବାକୁ ଦେଇନି ସେ ବାଣୀ
ନୀରବେ ଫେରିଛ ଅଭିମାନୀ।
ଆସିଅଛ, ଅପେକ୍ଷି ଫେରିଛ,
ପ୍ରମତ୍ତ ମୁଁ ଚିହ୍ନିନି ତୁମରେ,
ସେ ବେଳର ବନ୍ଧୁ କେହି ନାହିଁ,
ନିଃସଙ୍ଗ ମୁଁ ଜୀବନ-ପଥରେ।
ଆସିଥିଲ, ଦେଖିଥିଲ ପରା,
ତମପାଇଁ ରୁଦ୍ଧ ମୋ ଦୁଆର,
ଆଜି କିନ୍ତୁ ତମଲାଗି ଖୋଲା,
ସବୁ ମୋର ଅନ୍ତର, ବାହାର।
ସେବେ କେବେ ଲୁଚ଼ି ଆସୁଥିଲ,
ଆଜି ଆସ ପ୍ରକାଶ୍ୟ ଆଲୋକେ,
ତମେ ମୋର ପରମ ନିଜର
ପ୍ରଚ଼ାରିତ ହେଉ ଏହା ଲୋକେ।
ଆସ ବନ୍ଧୁ, ଆସ ପ୍ରିୟ ଆଜି
ପିତା, ମାତା, ପରମ-ସ୍ୱଜନ,
ତମପାଇଁ ଖୋଲା ମୋ ଦୁଆର,
ଅହର୍ନିଶ ପୂଜା-ଆୟୋଜନ।

# ଦୁଃଖୀ

ବିଟପୀର ଶାଖା ହଲେ ମନ୍ଦ ସମୀରଣେ,
ଆନନ୍ଦ ଖେଳୁଛି ଅବା ଉଭୟ ଜୀବନେ।
ସେହି ବୃକ୍ଷଶାଖେ ବସି ଛୋଟ ଏକ ପକ୍ଷୀ,
ପ୍ରାଣ ଖୋଲି ଗାଏ ଗୀତ ଦୂରେ ଦୃଷ୍ଟି ରଖି।
କେବେ କେବେ ଉଡ଼ିଯାଏ ଚକ୍ର ଦେଇ ନଭେ,
ପୁଣି ଫେରି ବସି ଗାଏ ଆନନ୍ଦ-ବିଭବେ।
ବୃକ୍ଷ ନିମ୍ନେ ବୁଦା-ମଡ଼ା ଲତାଟିର ଅଙ୍ଗେ
ପ୍ରସ୍ଫୁଟିତ ପୁଷ୍ପ ଦୋଳେ ବର୍ଣ୍ଣର ତରଙ୍ଗେ।
କୋଟି କ୍ରୋଶ ଦୂରେ ଥାଇ ବରେଣ୍ୟ ତପନ
ନଗଣ୍ୟାରେ କରୁଛନ୍ତି ସ୍ନେହ ସମ୍ଭାଷଣ।
ଛୋଟ ଏ ଅଜ୍ଞାତ ପୁଷ୍ପ ଭାବେ ଅବା ମନେ,
ରବି ଖାଲି ତା'ରି ପାଇଁ ଉଠିଲେ ଗଗନେ।
ବୃକ୍ଷ ତଳେ ସୁକୋମଳ ଶ୍ୟାମ ଦୂର୍ବାଦଳ
ରବିକରେ ଯେହ୍ନେ ସୁଖେ ମଉନ-ବିହ୍ୱଳ।
ଘାସ ତଳେ ତଳେ ଚାଲେ ପିପିଲିକା ଧାଡ଼ି,
ବଞ୍ଚିବାହିଁ କି ଆନନ୍ଦ! – ନିର୍ବାକେ ପ୍ରଚାରି।
ସମଗ୍ର ପ୍ରକୃତି ଯେହ୍ନେ ନଭୁଁ ରେଣୁ ଯାଏ
ଜୀବନୁଁ ଅଜ୍ଞାତ ସ୍ୱାଦ ମର୍ମେ ମର୍ମେ ପାଏ।
ତେଣୁ ବୃକ୍ଷ, ପକ୍ଷୀ, ପୁଷ୍ପ, କୀଟ, ରବିକର
ସକଳେ ଦିଶନ୍ତି ଯେହ୍ନେ ଆନନ୍ଦ-ଜର୍ଜର।
କିନ୍ତୁ ସେହି ବୃକ୍ଷତଳେ ବୁଦ୍ଧିମନ୍ତ ନର
ବସିଛି ଶିରାଳ ଭାଲେ ଥାପି ଦୁଇ କର।
ବିଧାତାର ଏ ବିରାଟ ଆନନ୍ଦବଜାରେ
ଜୀବନେ ଉତ୍ସାହ ନାହିଁ କେବଳ ତା'ଠାରେ।
ପ୍ରକୃତି ଦେଇଛି ତା'ରେ ଚାତୁରୀ କିଂଚିତ,
ଅମଳ ଏ ଆନନ୍ଦରୁ ତେଣୁ ବା ବଞ୍ଚିତ।
ବିଧାତାର ବୃକ୍ଷଛାୟେ ବୁଦ୍ଧିମନ୍ତ ନର
ହୋଇପାରେ ବିଚାରକ ସୃଷ୍ଟି ଈଶ୍ୱରର;
କିନ୍ତୁ ଯେ ଆନନ୍ଦ ଭୋଗେ ଫୁଲ, ରବିକରେ
ସେ ବିମଳ ଭୋଗ ନାହିଁ ମାନବ ଭାଗ୍ୟରେ।

# ଆଶୀର୍ବାଦ

(୧)

ନିକଟେ ଦୂରେ ଯେ ଥାଅ ଭାଇ,
କଷ୍ଟ ଯଦି ଥାଅ ହେ ପାଇ
ମୋଠାରୁ କେବେ, ଜ୍ଞାତେ ବା ଅଜ୍ଞାତେ,
ଚରଣେ ତବ ନମସ୍କାର,
କ୍ଷମା ମୁଁ ମାଗେ ବାରମ୍ବାର
ପୋଛିବି ଦିଅ, ରୂକ୍ଷ ସେ ଆଘାତେ ।

(୨)

ପରିଚ଼ିତ ବା ଅପରିଚ଼ିତ
କରଁତୁ ଯଥାରୁଚି ଅହିତ,
ଆଶୀର୍ବାଦ, ଦେବି ମୁଁ ପ୍ରତିଦାନେ,
ଆନନ୍ଦର ବାର୍ତ୍ତାବହ
ହେବି ମୁଁ ବାକୀ ଜୀବନମୟ
ବିତରି ପ୍ରେମ, କର୍ମେ ଆଉ ଗାନେ ।

(୩)

ପ୍ରଣୟ ଯା'ରେ ଦେଇଛି ଥରେ
ମରମ-ଫଟା ଅଶ୍ରୁ-ଜଳେ,
ସେ ଯଦି ଦିଏ ନିଠୁର ବ୍ୟବହାର,
ପ୍ରତିଟି ତା'ର ଆଘାତ ପାଇଁ
ପରମ-ଶୁଭ ମରମେ ଧ୍ୟାୟି
ଅଧିକେ ଦେବି, ସେନେହ ଉପହାର ।

(୪)

ସେନେହ ଯାହା ଦେଇଛି ବାରେ
କରିବି ନାହିଁ ଆଉ ଗୋ ତା'ରେ
କଳଙ୍କିତ, ଦାବିର ଧୂଳି ଲେସି,
ଆନନ୍ଦ ଯା କେବଳ ଦାନେ
ତାହାହିଁ ରାଜୁ ସାରାଟି ପ୍ରାଣେ,
ତ୍ୟାଗର ଧାରା, ସର୍ବ ଦିଗେ ପେଶି ।

(୫)

କୋଟିକି କୋଟି ହୃଦୟ ଚାହେ
ଧୋଇବି ବିଶ୍ୱ ଜୀବନ୍ ପାୟେ,
ପ୍ରଣୟ-ପୁଣ୍ୟ ଉଷ୍ଣ ଅଶ୍ରୁଜଳେ
ଅୟୁତ ବାହୁ ଚାହେ ମୋ ଦେହେ
ଆଶ୍ଳେଷିବି ନିବିଡ଼ ସ୍ନେହେ,
ବିଦାୟ ଯେବେ, ନେବି ଏ ଧରା ପରେ ।

## ମୁଁ ଅଛି, ମୁଁ ଅଛି

(୧)

ଜନନୀ ଅଛନ୍ତି କାହିଁ ଗୃହର ଜଞ୍ଜାଳେ
ଶିଶୁ କନ୍ୟା ରୋଦଇ ଆକୁଳେ,
'ମୁଁ ଅଛି' 'ମୁଁ ଅଛି' କହି ବୋଧ ଦେଇ ତା'ରେ
ଶିଶୁ-ପୁତ୍ର ଆଦରେ ଆଗୁଳେ ।

(୨)

ନୀରସ କିତାପୁଁ ମୁଖ ଟୋକି ଅନାଇଲି
ଚକ୍ଷୁ ମୋର ହେଲା ଲୁହେ ଭରା,
ଦେଖିବାରେ ଛୋଟ ଭାଇ ଛୋଟ ଭଉଣୀରେ
ବାଣୀ କହେ ଆଶ୍ୱାସନା-ଭରା ।

(୩)

ଭାବିଲି ପୁଣି ମୁଁ, ଯାହା ଦିଅଇ ଭରସା
ଛୋଟ ଭାଇ ଛୋଟ ଭଉଣୀରେ,
ଉଦ୍‌ଭ୍ରାନ୍ତ ଜୀବକୁ ହାୟ ଦେଉଥାନ୍ତା କିଏ
ସେ ଭରସା ରୂକ୍ଷ ଧରଣୀରେ ।

(୪)

କାହିଁ ସେ ଅଦୃଶ୍ୟ ହସ୍ତ; କାହିଁ ନିର୍ଭରତା ?
ଜୀବ ମରେ ଜୀବନ-ଜଞ୍ଜାଳେ,
ଖାଇ ଖାଇ ବ୍ୟାଧି, ଦୁଃଖ, ନୈରାଶ୍ୟର କଶା,
ରାସ୍ତା ଖୋଜି, ମରେ ଅରାସ୍ତାରେ ।

(୫)

ଜୀବନର ଜଞ୍ଜାଳରେ କିଂକର୍ତ୍ତବ୍ୟବିମୂଢ଼
ଜୀବ ଯେବେ ଡାକଇ କାତରେ,
ସବୁ ଯେବେ ଅକରୁଣ ଅନାଶ୍ରୟ ରୂଢ଼,
ବନ୍ଧୁହୀନ, ବିରାଟ ବିଶ୍ୱରେ ।

(୬)

କେ ଯଦି କହନ୍ତା ପଛୁ 'ମୁଁ ଅଛି' 'ମୁଁ ଅଛି'
''ପ୍ରିୟ ବତ୍ସ, ଭୟ କାହିଁପାଇଁ ?''
ଧୀରେ ସ୍କନ୍ଧେ ସକରୁଣ ଅଙ୍ଗୁଳି ନିବେଶି
ପଥ, ଲକ୍ଷ୍ୟ, ଦିଅନ୍ତା ଦେଖାଇ ।

# ନିଃସହାୟ

ଛୋଟ ମୋ ଭଗିନୀ ପରି ସ୍ନେହ ଯଦି କରିଥାନ୍ତେ ସେହି,
ସେହି – ଯା'କୁ କହୁ ଆମେ ଜଗତର ଜନକ ବା ମାତା,
ସରମ, ନୈରାଶ୍ୟ, ଦୁଃଖ, ଅପମାନ, ପାପ, ମିଥ୍ୟା ଦେଇ
ଏତେ ତୁଚ୍ଛ ହୁଅନ୍ତା କି ଆମ ସବୁ ଜୀବନର ଖାତା ?

ମନେଅଛି ଶୈଶବ ସେ ଥିଲା ଚିତ୍ତ ବିକଚ ପଂକଜ,
ବିଦ୍ୟାଳୟେ ସାଙ୍ଗମେଳେ ଥିଲା ମାତ୍ର ଲଘୁ-ମିଥ୍ୟା ଜଣା,
ଦେବତାରେ ପୂର୍ଣ୍ଣ ଥିଲା ପୃଥିବୀର ପ୍ରତି ବିନ୍ଦୁ ରଜ
ଦୈନନ୍ଦିନ ବଂଚିବାହିଁ ଥିଲା ଏକ ତୀବ୍ର ଉନ୍ମାଦନା ।

ତା'ପରେ କି ହେଲା କ୍ରମେ ଜୀବନର କିବା ରୂପାନ୍ତର
ପରମ ବୋଲିଣ ହେଲୁଁ ତୁଚ୍ଛପାଇଁ କ୍ଷିପ୍ର, ଲାଳାୟିତ
ଜାଣି, ଅଜାଣିବା ପରି ଉତ୍ସାହରେ ପୂଜିଲୁଁ ନଶ୍ୱର
ହେଲେହେଁ ଶାଶ୍ୱତ ଲାଗି ବେଳେବେଳେ ଚିତ୍ତ ବ୍ୟାକୁଳିତ ।

ଆତ୍ମିକ, ଭୌତିକ ରଣେ ହେଲୁଁ ଯେବେ ଭଗ୍ନ, ଭୂପତିତ,
ସ୍ୱର୍ଗସ୍ଥ ସେ ପିତା ବା ଜନନୀ –
ସଂକଟ-ପିଚ୍ଛିଳ ସେହି ଯୌବନରେ, ସନ୍ତାନ ନିମିତ୍ତ
କରିଥାନ୍ତେ ବେଳେ ହେଲେ ସାହାଯ୍ୟ ବା ସାମାନ୍ୟ କିଞ୍ଚିତ୍ ।

# ଅନାବଶ୍ୟକ ମଧ୍ୟସ୍ଥ

ପୁରୋହିତ କହେ "ସେ ତ – ଗହନ କଥା ହେ ବାବୁ
ଗହନ କଥା,
ମହାଯୋଗୀ ତପ କରି ନ ପାଇଲେ କିଛି ତା'ର
ଭେଦ, ବାରତା ।
ମୂଳାଧାରେ ଅଛି ସେହୁ, ସୁଷୁମ୍ନାରୁ ଯିବ କାହୁଁ
ସହସ୍ରାରକୁ ?
ପଁଚ ପବନକୁ ରୋକି ଭିତରକୁ ନେଲେ ଦୃଷ୍ଟି
ଦେଖିବୁ ତାକୁ ।
ପିଣ୍ଡ-ବ୍ରହ୍ମାଣ୍ଡ ଭିତରେ ଖେଳଇ କାଳିନ୍ଦୀ-ଜଳେ
ପରମହଂସ,
କେଉଁଠୁ ଆସିଲା ସେହୁ କିପରି ସେ ଯିବ ଦେହୁ
ବୁଝ ରହସ୍ୟ ।
ଅଗ୍ନାଅଗ୍ନି ବନସ୍ତରେ ଊର୍ଦ୍ଧ୍ୱପଦେ ତପ କଲେ
ବାରବରଷ,
ନାରୀ ମୁଖ ନ ଦେଖିବ ଆହାର ପାନ ନ ଥିବ
ଭେଟିବୁ ହଂସ ।
ଗହନ ଏ ବିଦ୍ୟା ବାବୁ କେବେ ଏଥି ନ ପଶିବୁ
ବଡ଼ ବିପଦ,
ବ୍ରହ୍ମା ଇନ୍ଦ୍ର ନ ପାରିଲେ ବୁଝି ଏ ରହସ୍ୟ ତିଳେ,
ତତେ ସମ୍ଭବ ?
ତେବେ, ବ୍ରାହ୍ମଣକୁ ଯଦି ସେବା-ସାଧନାରେ ଭଜି
କରୁ ସନ୍ତୁଷ୍ଟ,
ଦେବତାକୁ-ପାଇବାର- -ସୁଖ-ପଥ ପାଇପାର,
ଭେଟିବୁ କୃଷ୍ଣ ।"
ବିରାଗେ ସେ ସତ୍ୟାନ୍ୱେଷୀ ଦେଉଳ ଦୁଆର ତେଜି
ଚଳାଉଁ ପଦ,
ଦେବତାର ଶୁଭେ ବାଣୀ ଭକ୍ତଚିତ୍ତ ପ୍ରତିଧ୍ୱନି
ସ୍ନେହ-ଗଦ୍‌ଗଦ –
"ଶୁଣ ବତ୍ସ, ଯିବୁ କାହିଁ, ବନସ୍ତ ବା ଦୂର ଭୂଇଁ
ଛାଡ଼ି ଜନତା ?

କାହିଁକି କରିବୁ ତପ ଦେଇ ଦେହେ ସେ ସନ୍ତାପ
ହୀନ ଅବସ୍ଥା ?
ମୁଁ ଯେ ତୋର ମରମରେ, ଶିଶୁ ପରି ଡାକ ଥରେ
ଦେଖିବୁ ମତେ,
ଶିଶୁର ମଧୁ ଆର୍ଦ୍ଦୋଳି ରହି କି ପାରେ ପାସୋରି
କେ ମା' ଜଗତେ ?''

## ସମଦୁଃଖୀ ପ୍ରାଣୀ

ଅନ୍ୟାୟ-ପୀଡ଼ିତ କିଏ ଧରାପଥ-ସାଥୀ
ନିର୍ଯାତିତ କାରାଗାରେ, – କ୍ଷମତାରେ ମାତି
ଶତ୍ରୁଦଳ ଚାହୁଁଛନ୍ତି ବିରାଟ ଧରାର
କେହି ହେଲେ ଜାଣିବେନି ତୁମର ଚିତ୍‌କାର
ଅପସୃତ ହେବ ତୁମେ ଧୀରେ, ନୀରବରେ –
ବିରୋଧିତା କଲ ଯେଣୁ କ୍ଷମତାପନ୍ନରେ;
ତେଣୁ, ଏହି ପୁରସ୍କାର ଅନ୍ୟାୟ-ରୋଧୀର;
କ୍ଷମତା ଯେ ଚାଟୁପ୍ରିୟ ଜାଣି କି ନଥିଲ ?
ତୁମେ ଭାଇ ଅଶ୍ରୁ ତେଜ, ତେଜ ଦୀର୍ଘଶ୍ୱାସ
ନିଃସଙ୍ଗ ସେ କାରାକକ୍ଷେ, – ପ୍ରାଣେ ନାହିଁ ଆଶ
ଦେଖାହେବ ଆଉ କେବେ ପ୍ରିୟ ପରିଚିତ
ଊର୍ଦ୍ଧ୍ୱେ ଅଧେଃ ନାହିଁ ଦିଶେ ସାନ୍ତ୍ୱନା କିଂଚିତ ।
ଭାବୁଅଛ ନାହିଁ ନର, ଧର୍ମ, ନାରାୟଣ,
ଏଇ ପରିଣତି, – ହେଲେ ନ୍ୟାୟପରାୟଣ ।

ଦୁଃଖେ, ଦୈନ୍ୟେ, ବକ୍ଷଭେଦୀ ନିବିଡ଼ ନୈରାଶ୍ୟେ
ସ୍ମରି ମୁକ୍ତ ଧରା, ସ୍ମରି ପ୍ରିୟଜନ ଆସ୍ୟେ,
ହେ ବନ୍ଧୁ ନୀରବେ ଲୋକନେତ୍ର ଅଗୋଚରେ
ଈଶ୍ୱର-ମାନବ-ଦୟା-ଶୂନ୍ୟ ଅଭ୍ୟନ୍ତରେ
ତେଜୁଅଛ ଅଶ୍ରୁଧାର, ଭାବି ମନେ ମନେ
ଏ ଲୋତକ ଦେଖିଲାନି କେହି ହେଲେ ଜଣେ ।

ନାହିଁ ନାହିଁ ହେ ଅଦୃଶ୍ୟ, ହେ ବନ୍ଧୁ ଅଜ୍ଞାତ
ସମ-ପଥ-ଯାତ୍ରୀ ଜାଣ, ତବ ଅଶ୍ରୁପାତ
ଜଣେ ଜାଣେ, – ଏଇ କ୍ଷୁଦ୍ର ହୃଦୟ ଆକାଶେ
ପ୍ରତିଟି ତା ପ୍ରତିଧ୍ୱନି କ୍ଷିପ୍ର ଭାସିଆସେ;
ଭେଦି ଦେଶ, ମରୁ, ସିନ୍ଧୁ, ସାଗର ଦୂରତା
ଅନନ୍ତ ବ୍ୟୋମରେ ଖୋଜି ସିଧା ତା'ର ପନ୍ଥା,
ପ୍ରତିଟି ସେ ଅସହାୟ ଦୀନ ଦୀର୍ଘଶ୍ୱାସ
ପ୍ରଭଂଜନାକୁଳ କରେ ମୋ କ୍ଷୁଦ୍ର ଆକାଶ ।

ଜଗତର କେଉଁ ସ୍ଥାନ ଦେଶଦେଶାନ୍ତରେ
ଧର୍ମ, ଜାତି, ଚର୍ମ, ବର୍ଣ୍ଣ, ବାଣୀ ଅଭେଦରେ
ଯିଏ ଯହିଁ ଦୁଃସ୍ଥ, ଦୀନ, ଅନ୍ୟାୟ-ପୀଡ଼ିତ
ରୁଗ୍‌ଣ, ଭଗ୍ନପଦ, ଧରା-ସଂଗ୍ରାମେ ପତିତ
ତେଜ ଅଶ୍ରୁ ନିଃସହାୟେ, ସର୍ବ-ପରିତ୍ୟକ୍ତ
କ୍ଷୁଦ୍ର ମୋ ବ୍ୟକ୍ତିତ୍ୱ ହୁଏ ତା' ପାଇଁ ମହତ ।

ଧରାର ହେ କାହିଁ-କ୍ଷିପ୍ତ ଆର୍ତ୍ତ ପ୍ରାର୍ଥୀଦଳ
ହେ ଅଜ୍ଞାତ ବନ୍ଧୁଗଣ, ଲାଂଛନା-ଜର୍ଜର,
ତମ ବେଦନାରେ ବିଦ୍ଧ ଏ କ୍ଷୁବ୍ଧ ପରାଣ
ନାହିଁ ଦେଇପାରୁ ପଛେ କିଛି ପରିତ୍ରାଣ ।
ତବ ଚିତ୍ତେ ସ୍ପର୍ଶିବାକୁ ଅନ୍ତରୀକ୍ଷ ପଥେ
ଦିଶେ ଦିଶେ, ଚତୁର୍ଦ୍ଦିଗେ ଦ୍ରୁତ ମନୋରଥେ,

ଏ ବାଣୀ ପେଶୁଛି ତମ ସମସ୍ତଙ୍କପାଇଁ
ତମ ଲାଗି ଅଶ୍ରୁ ତେଜେ, ଆଉ ଜଣେ ଥାଇ ।
କଳ୍ପନାରେ ଜନନୀ ସେ ତମ ସକଳର,
ତମ ଦୁଃଖେ ଚିତ୍ତ ତା'ର ଚିର ଟଳମଳ ।
କଳ୍ପନାରେ ବାହୁ ତା'ର ଜନନୀ-କଲ୍ୟାଣେ
ବଢ଼ିଯାଏ ତବ ଆଶେ, ତବ ଦୁଃଖ ଧ୍ୟାନେ ।

ଧରାର ଯେ କୋଣେ ଥାଅ ସହସ୍ର ଯୋଜନେ
କଳ୍ପନାରେ କୋଳେ ଭରି ପୋଛେ ଅଶ୍ରୁକଣେ;
କାନେ କାନେ କହେ ପୁଣି ଏହି ମର୍ମବାଣୀ
"ଭୟ ନାହିଁ, ମୁହିଁ ଅଛି ସମଦୁଃଖୀ ପ୍ରାଣୀ ।"

# ଦୁର୍ବଳ

(୧)

କହିପାରିଥାଅ ମିଛ, କରିପାରିଥାଅ ଚୋରି,
ପାପ ନୁହେ ତାହା, ପାପ ସେହି ଯାହା
ଚରଣେ ଭିଡ଼ଇ ଡୋରି ।
ପାପ ସେହି ଯାହା କରେ ଦୁର୍ବଳ,
କରେ ଭୀରୁ, ଅସାହସୀ,
ତୁଙ୍ଗ, ସୁଢ଼ଳ ପୌରୁଷ ଭାଲେ
ବୋଳେ ଲଜ୍ଜାର ମସି ।
ଛଦ୍ମ ହେବାକୁ କହେ,
ମିଛ, ଅନ୍ୟାୟ, କୁତ୍ସିତ କ୍ଳେଦ
ମୃଦୁ ହସି ଯାହା ସହେ ।

(୨)

ଭୂମାରୁ ଆସିଛ, ଭୂମାରେ ମିଶିବ
ଚିନ୍ମୟ ବିଗ୍ରହ,
କିପାଇଁ କରିବ ଜୀବନକୁ ତବ
ନୀଚ, କ୍ଷୁଦ୍ରତାମୟ ?
ସୁରଧୁନୀ ଭୁଲି, ମାଟି ଜଗତର
ପଲ୍ୱଳେ ଯାଅ ଭୁଲି,
ମାଟି ଜୀବନକୁ ବଁଚାଇବା ପାଇଁ
ପତାଉଛ ଭିଖ ଝୁଲି,
ସହି ଜୀବନର କର ଜୟଜୟକାର,
ସବୁଠାରୁ ସେହି ବଡ଼ ପାପ ଜାଣ
ଆତ୍ମାର ଅପଚାର ।

(୩)

ସୁଧାଶୀ ଗରୁଡ଼, ଯାଅ ତମେ ଉଡ଼ି
ସ୍ୱର୍ଣ୍ଣ ପକ୍ଷ ମେଲି,
ଇନ୍ଦ୍ର ବଜ୍ର ସାଥେ ଡେଣା ତବ
କରିବ ଆକାଶେ କେଳି ।

କିଏ ପଛୁ ଟାଣେ ?        କେ ଆଗୁଳେ ବାଟ ?
କାହା ମୁଖ ? କା ଲୋତକ ?
ଭୂଲି-ପଥ-ପାଶ –        ଦୁର୍ବଳ ମୋହେ
ନ ଭୁଲ ଲକ୍ଷ୍ୟ-ପଥ ।
ସେଇ ଭୁଲିବାହିଁ ପ୍ରମାଦ, ଦୁର୍ବଳତା,
ସେଇ ପାପୁଁ ମେତେ ଲାଞ୍ଛନା-ମନ୍ଦ ବ୍ୟଥା ।

(୪)

ଉଚ୍ଚ ଆସନେ        ଯିଏ ଯହିଁ ଅଛ
ଅନ୍ତର ଖୋଜ ଭାଇ,
କିପାଇଁ ସ୍ୱଚ୍ଛ        ବଚନ ମୁଖରୁ
ଆସି, ଆସି ପାରୁ ନାହିଁ ?
ସେହି ଭୟ, ପାପ ତବ
ତାହାଠାରୁ ବେଶୀ        ଲାଂଛନା କି ହେ
ଜୀବନରେ ସମ୍ଭବ ?

(୫)

ମାରିବ, ମରିବ,        ଜୀବନକୁ ଦେବ
ଜନତାର କଲ୍ୟାଣେ,
ଅଥବା ରିକ୍ତ        ସନ୍ୟାସୀ ହେବ
ମୁକ୍ତିର ସନ୍ଧାନେ ।
କିନ୍ତୁ ପଙ୍ଗୁ,        ଲାଞ୍ଛିତ, ପ୍ରାଣ
ଜିଇଁବ କି ଲାଭ ପାଇଁ ?
କୁତ୍ସିତ, ନୀଚ,        ତୁଚ୍ଛ, ଛୋଟ ଯା
କି ଲାଭେ ତା ଲାଗି ବାଇ ?
ମୁକ୍ତ ହେ ବୀର,        ସ୍ୱାଧୀନ, ବିରାଟ
ଅଭୀତ, ଅବନ୍ଧନ,
ସ୍ମର ସେହି ପାପ        ଯା'ପାଇଁ, ଯହିଁବା
ହୁଅ ଦୁର୍ବଳ-ମନ ।
ସେ ପାପ ନକର ଭାଇ,
ମୁକ୍ତ, ବିରାଟ,        ବଦ୍ଧ, ଅନ୍ଧ
ହେବ କେଉଁ ଲାଭ ପାଇଁ ?

## କୃପାଶ୍ରୁ

(୧)

ଅନୁତପ୍ତ ଏ କରୁଣ ଅଶ୍ରୁଧାର
ହେ ଜନନୀ ତବ ଚରଣକମଳେ
ଏକାନ୍ତ ଉପହାର ।
କଳଙ୍କ ଯାହା ଘେରିଛି ଜୀବନେ
ଅଜ୍ଞାନ-ପଥ ଚଳି,
ଅନ୍ୟାୟ ଯାହା ଘଟିଛି ଜୀବନେ
ଅହମିକା ଅନୁସରି,
ପୋଛି ହୋଇ ଯାଉ ଏଇ ଅଶ୍ରୁରେ
ନୂତନ ଶସ୍ୟ, ଉଠୁ ପ୍ରାଣକୂଳେ,
ତୁମରି ଦେଉଳ ସୋପାନ ନିକଟେ
ହେଉ ମୋର ଅଭିସାର
ଅନୁତପ୍ତ ମୋ କରୁଣା ଅଶ୍ରୁଧାର ।

(୨)

କ୍ଷମାର ଅତୀତ ମୋର ଅପରାଧ,
କ୍ଷମା ମୁଁ ମାଗିବି ନାହିଁ,
ମୋ ହୃଦକମଳ ଅନାଇଛି ଖାଲି
କରୁଣା-କିରଣ ପାଇଁ ।
ହେ ମହାଜନନି ! ଚରଣରେ ତବ
ଅନୁତାପ ମୋର ପାଉ ଉତ୍ସବ;
ନିରାଲୋକ ଏଇ ଦଗ୍ଧ ଜୀବନେ
କର ଆଶା ସଂଚାର;
ମୋର ଏ ଅଶ୍ରୁଧାର
ହେ ଜନନି ! ତବ ଚରଣକମଳେ ଏକାନ୍ତ ଉପହାର ।

## ବିଶ୍ୱ-ମିଳନ

ହେ ଜନନି ! ରୁଦ୍ଧ ଥାଏ ଯେବେ ଆପଣାରେ
ଆପଣାର ଭଲମନ୍ଦ ଭାବି ତିଳେ ତିଳେ;

ସହସ୍ର ଦରଜା ମୋର ଦରିଦ୍ର ସତ୍ତାରେ
ସହସା ଉନ୍ମୁକ୍ତ ହୁଏ, ତୁମରେ ଧାୟିଲେ ।

କ୍ଷୁଦ୍ର କ୍ଷୁଦ୍ର ବାସନାର ଅହମିକା-ଘେରା
ଛୋଟ ମୋ କୋଷାରେ ମୁହିଁ ଥାଏ ଅନୁରକ୍ତ,
ସେହି ଜାଣି ଜୀବନର ଶ୍ରେଷ୍ଠ ସୁଖ-ଖେଳା,
କୋଷାର ବାହାରେ କିଛି ଧାନେ ଅଶକତ ।

ଜନନି, କ୍ଷୁଦ୍ର ମୋ ଘେରା ତୁମର ସ୍ମରଣେ
ଧୀରେ ଧୀରେ ଯାଏ ଭାଁଗି, ମିଶଇ ବିଶାଳେ,
ତୃଣୁ ତାରା ଯାଏ ବ୍ୟାପେ ଦୈବତ କଂପନେ,
ନିଖିଳ ଲୋତକ, ସ୍ମିତ ଧ୍ୱନଇ ଶିରାରେ ।

ତୁମେ ରାଜ ଚିତ୍ତେ ମମ ତବ ସ୍ମୃତି ସ୍ପର୍ଶେ,
କ୍ଷୁଦ୍ର ରୁଦ୍ଧ ପ୍ରାଣ ମିଶେ ବିଶ୍ୱ ପ୍ରାଣ-ରସେ ।

## କପୋତ-କପୋତୀ

(୧)

କି କରୁଣ ଗାଆଁତି ଏ କପୋତ-କପୋତୀ
ବନ ବନାନ୍ତରୁ ଆସେ ଅବିରତେ ଲୋଟି;
ପର୍ଣ୍ଣ ଅନ୍ତରାଳେ ରହି ବିରହିତ ହେ ପ୍ରଣୟି !
ଦୂର ପ୍ରିୟେ ଡାକ କାହିଁ ବୃକ୍ଷେ ମଥା ପୋତି,
କାରୁଣ୍ୟ-ଲହରୀ ଭାସିଆସେ ଗୋଟି ଗୋଟି ।

(୨)

ଖେଳୁଥାଅ, ଘୂରୁଥାଅ ଦୁହେଁ ତ ଏକାଠି,
ଖୁଆଅ ଦୁହିଁକି ଦିହେଁ ଖୋଜି ଖୋଜି ମାଟି,
ଉଜ୍ଜ୍ୱଳ ତପନ-କର ପଡ଼ି ସ୍ନିଗ୍ଧ ତନୁ ପର
କରୁଥାଏ ଚକମକ, ମିଳନ-ସୁଖର
ଦୁଇଟି ପ୍ରଦୀପ ଯେହ୍ନେ ମନୋଜ୍ଞ, ଉଜ୍ଜ୍ୱଳ ।

(୩)

ସେ ମିଳନ-ସୁଖ-ଭୋଗି କେଉଁ ଅତୃପ୍ତିରେ
ଉଡ଼ିଯାଅ ଜଣେ ଜଣେ ବନ ତୀରେ ତୀରେ,

ଏକକୁ ଆରେକ ସ୍ମରି ହଜିଯାଇଥିଲା ପରି
ଦୂରୁ ଦୂରେ ଛାଡ଼ିଦିଅ କରୁଣ କାକଳି,
ବିଳାପରେ ମୁଖରିତ ହୁଏ ବନସ୍ଥଳୀ ।

(୪)

ଏକ ଡାକେ 'କାହିଁ ଅଛ ?' – ଆନ ଉତ୍ତରଇ
'ଏଇ ଅଛି ମୁଁ ଯେ ପ୍ରିୟ' – ଦୂରୁଁ ରହି ରହି,
ବନଭୂମି, ନଭସ୍ଥଳ ସମୀରଣ, ସୌରକର
ଜର୍ଜରିତ ହୋଇଉଠେ ଯୁଗ୍ମ ପ୍ରେମିକର,
କରୁଣ ପ୍ରକାଶେ ସ୍ୱେଚ୍ଛାକୃତ ବିଚ୍ଛେଦର ।

(୫)

ପାଇବାଠୁ ଖୋଜିବାରେ ନିକି ବେଶୀ ସୁଖ,
ମିଳନକୁ ସ୍ୱାଦ ଦିଏ ବିଚ୍ଛେଦର ଦୁଃଖ,
ସତ୍ୟରୁ, ସନ୍ଧାନ ବଡ଼, ସଂପଦରୁ ମହତ୍ତର
ଅଭାବର ଅଶ୍ରୁବିନ୍ଦୁ । କପୋତ-କପୋତୀ-
ପ୍ରୀତି ତେଣୁ ମଧୁରିତ ବିଚ୍ଛେଦରେ ଲୋଟି ।

(୬)

ବିରହରେ ଗାଅ ଗାଅ ପ୍ରେମିକଯୁଗଳ,
ଅପ୍ରକାଶ୍ୟ ଅନୁଭବେ କବି ମର୍ମ-ସ୍ଥଳ
ପୂରିଉଠେ ଯେବେ ଯହିଁ, ଶୁଣେ ତବ କଣ୍ଠ ରହି,
ମନେକରେଁ ଶିଖାନ୍ତି କି ତୁମରି କୌଶଳ,
ମୋ ଗାନେ କରନ୍ତି ମୁଗ୍ଧ ଅନ୍ତର ବିଶ୍ୱର ।

## ସପ୍ତଶଯ୍ୟା*ରେ ନିଶୀଥ

ନୀରବ ନିଶୀଥ । ଧରା, ଘନ ଅନ୍ଧକାରେ
ସମାବୃତ । ଭୁବନର ଉଚ୍ଚ ବ୍ୟୋମ-ଚାଳେ
ସ୍ୱର୍ଗବାସୀଙ୍କର ଲୀଳା-ପ୍ରଦୀପ ଅୟୁତ

---

* ଲେଖକ ଆଠଗଡ଼ ହାଇସ୍କୁଲର ପ୍ରଧାନଶିକ୍ଷକ ଥିବା ସମୟରେ ଛାତ୍ରମାନଙ୍କୁ ନେଇ ଥରେ 'ସପ୍ତଶଯ୍ୟା' ଯାଇଥିଲା ।

ଝୁଲେ, ଦେବବାଳା-ଶୁଦ୍ଧ-ଶ୍ୱାସ-ପରିପ୍ଲୁତ
ଆଲୋକ ତାଙ୍କର ଝରିଆସେ ଅନ୍ଧକାରେ
କ୍ଷୀଣ, କ୍ଷୀଣ ଯଥା ଗୁଣରାଶି ଦୀନତାରେ ।

ବିରାଟ ଏ ସପ୍ତଶଯ୍ୟା କ୍ଳାନ୍ତ ଦୈତ୍ୟସମ
ଘୁମାଇ ପଡ଼ିଛି ମାଟି ପରେ ଅଚେତନ ।
କ୍ରୋଶ କ୍ରୋଶ ଧରି ଲମ୍ବେ ଅବୟବ ତା'ର,
ଅଭ୍ରଂଲିହ, ବହୁଶୀର୍ଷ, ମୌନ, ନିର୍ବିକାର ।
କଟି ଭେଦି ବହେ ଏଇ ଝର ସୁନିର୍ମଳ,
ନିଶାର ସ୍ତବ୍ଧତା ଭେଦି ଶୁଭେ କଳକଳ ।
ପାଷାଣ-ବନ୍ଧୁର ମଞ୍ଚେ ତା' କ୍ଷିପ୍ତ ନର୍ତ୍ତନ,
ବଞ୍ଚିବାର ମହୋଲ୍ଲାସେ ହାସ୍ୟ-ବିଧୂନନ ।
ସୁପ୍ତ ସେ କିଶୋରବର୍ଗ, ସାରାଦିନ ଧରି
(ଗିରି-ଝର ପରି ଯା'ଙ୍କ ଅଙ୍ଗୁ ପଡ଼େ ଝରି)
ଦୁର୍ବାର ଜୀବନ-ଶକ୍ତି କର୍ମେ, ଖେଳେ, ହସେ ।)
ବୁଲିଥିଲେ ସାରା-ଗିରି ଉତ୍ସାହ-ରଭସେ ।
ଶାନ୍ତ ତାଙ୍କ ଅବୟବ, ଅଗ୍ନିସ୍ତୂପ ପାଶେ
ବୃତ୍ତେ ଘେରି, ଯା'ନ୍ତି ନିଦ୍ରା ନିଶ୍ଚିନ୍ତ ନିଶ୍ୱାସେ ।

କାହିଁକି ଏ ଅଗ୍ନିସ୍ତୂପ ? ଜୀବ ନିଶାଚର
କିପାଇଁ ଯାଁକର ବୈରୀ ? ଏକ ବା ଅନ୍ୟର
ରକ୍ତ ପିଇ କିପାଁ ଲଭେ ନିଷ୍ଠୁର ସନ୍ତୋଷ ?
କିପାଇଁ ଶୋଣିତଗତ ଏ ଭୟ, ଆକ୍ରୋଶ,
ବିଧାତାର ଏକ ଜୀବ ହୃଦେ ଆନ ପ୍ରତି ?
ଏକର ବଁଚ଼ିବାପାଇଁ ଲୋଡ଼ା ଅନ୍ୟ-ଅସ୍ଥି !
ଅମୃତରୁ ଜାତ ଯେହୁ, ଆନନ୍ଦ ଉଭବ
ହିଂସାରେ କେବଳ ତାଙ୍କ ବଂଚ଼ିବା ସମ୍ଭବ ?
କେ ବୁଝାଇ କହିବ ଏ ଜଘନ୍ୟ ରହସ୍ୟ,
ଅମୃତ ହୋଇଛି କିପାଁ ଏପରି ବିନଶ୍ୟ ?

ସମାଧିସ୍ଥ ଯୋଗୀ ସମ ଏ ଯେ ଧରାଧର
ଦୂରୁ ଦିଶେ କି ଗମ୍ଭୀର ସୁନୀଳ, ସୁନ୍ଦର !
ନିକଟେ କି ଶୀତଛାୟ, ଅତିଥିବତ୍ସଳ !
ରଖିଛି ଏ କାନ୍ତ ଝର; ଶ୍ୟାମଳ, ଶୀତଳ,

ଅଧିତ୍ୟକା କି ସୁନ୍ଦର, ବନ୍ୟ ଫୁଲ-ଫଳେ,
ମନେହୁଏ ଆସିଲି ବା ବନଲକ୍ଷ୍ମୀ ଘରେ !
ଊର୍ଦ୍ଧ୍ୱେ ଉଠି ଅନାଇଲେ ଦିଗ୍‌ବଳୟବ୍ୟାପୀ,
ଯତ୍ନାଙ୍କିତ ଚିତ୍ରପଟ ଦେଇଛି କେ ଥାପି,
ବନ, ବିଲ, ପଥ, ରଥ, ଗ୍ରାମ, ଦେବାଳୟ
ନଦୀ, ତୋଟା ଘେରା ଛୋଟ କୃଷକ ନିଳୟ
ସମସ୍ତ ଦେଖାଏ ଏକ ମହାଚିତ୍ରପଟେ –
ମନେହୁଏ ଗିରିରାଜ କଳାପ୍ରିୟ ସତେ !
ପ୍ରକୃତିର କିନ୍ତୁ ଏଇ ସୌମ୍ୟ ଶାନ୍ତ ଛବି,
ଭ୍ରାନ୍ତି ଏକ ମନେକରେ ତତ୍ତ୍ୱ-ଅନୁଭବୀ ।
ଏ ନିର୍ଝର ପ୍ରତି କଣେ, ସୁନ୍ଦର ଗିରିର
ପ୍ରତି ବୃକ୍ଷ ପ୍ରତି ପତ୍ରେ ବହୁଛି ରୁଧିର
ହତ, ଆକ୍ରାନ୍ତର ଅଂଗୁ । ଶୁଭଇ ଚିତ୍କାର
କୋଟି କୋଟି ଦୃଶ୍ୟାଦୃଶ୍ୟ ଦୁର୍ବଳ ଆତ୍ମାର,
ଆକ୍ରାନ୍ତ, ନିହତ, ଭୁକ୍ତ ଯେହୁ ପ୍ରତି କ୍ଷଣେ
ବଳବନ୍ତ ଜୀବନର କ୍ଷୁଧା ନିବାରଣେ ।
ପ୍ରକୃତିର ସୌମ୍ୟ, ଶାନ୍ତ, ଯୋଗୀ ଛବି ତଳେ,
ହିଂସୋନ୍ମତ୍ତ ଏହି ଲୀଳା ଅହରହ ଚଳେ;
ଉପରେ ଯେ ଅନ୍ନପୂର୍ଣ୍ଣା, ଅନ୍ତରେ ସେ କାଳୀ,
ଦନ୍ତେ ନଖେ ରକ୍ତପାୟୀ, ଗଣ୍ଡେ ମୁଣ୍ଡମାଳୀ ।
ନିସ୍ତବ୍ଧ ନିଶୀଥ ରାତ୍ରେ, ଗିରିକଟି ପରେ,
ନୀରବ ଏ ଅନ୍ଧକାରେ ତାରାସଂଘ ତଳେ,
ପ୍ରକୃତିର ଏଇ ଶାନ୍ତ-ଧ୍ୟାନୀ-ପରିବେଶେ,
ଏକ ପାଶେ ଚିତ୍ତ ମୁଗ୍ଧ, ପବିତ୍ର ଆବେଶେ,
ଆନ ପାଶେ କ୍ଷୁବ୍‌ଧ, କ୍ରୁଦ୍ଧ, ଅଶାନ୍ତ, ବିଦ୍ରୋହୀ,
ଜୀବର କରୁଣ ଦଶା ଅନ୍ତରେ ଚିତୋଇ ।
ହେ ସ୍ରଷ୍ଟା, ହେ ଅଧୀଶ୍ୱର କୋଟି ଭୁବନର,
ହିଂସ୍ର-ପ୍ରାଣ ଏ ସୃଜନ କି ନିମନ୍ତେ କଲ ?
କେ ଯାର ଉତ୍ତର ଦେବ ? ମୁକ୍ତି, ପ୍ରେମ ସତ୍ୟ
ଧର୍ମ, ଦାନ, ପୂଜା, ଯଜ୍ଞ, ଯମ, ପାତିବ୍ରତ୍ୟ,
ଏ ସମସ୍ତେ ତୁଚ୍ଛ କଥା ପଳାତକ ଭେକେ
ଭୁଜଙ୍ଗ ଧରଇ ଯେବେ ଜଠର-ଉଦ୍ରେକେ !

କେ ଶୁଣଇ ଭେକର ସେ କରୁଣ ଚିତ୍କାର ?
କିଏ କରେ ପାପ ସେଠି ? ପ୍ରାୟଶ୍ଚିତ୍ତ କା'ର ?
ବନେ ଚରେ ପ୍ରୀତିମୟୀ ସୁନ୍ଦରୀ ହରିଣୀ,
ସନ୍ତାନର ସ୍ନେହୀ ମାତା, ଚିତ୍ତବିନୋଦିନୀ,
ଶୃଙ୍ଗବନ୍ତ ଦୃଢ଼ାଙ୍ଗ କେ ପୁରୁଷ ମୃଗର,
ନିରୀହା ସେ, ଅହିଂସ ସେ, ବାତ୍ସଲ୍ୟ ଚଞ୍ଚଳ ।
ଏକାଳେ ବାଜେ ତା ବକ୍ଷେ ବ୍ୟାଧର ନାରାଜ,
ଧାମଇ ହରିଣୀ କରି କରୁଣ ଆବାଜ,
ନିରୀହ, ନିଷ୍ପାପ ତାର ରକ୍ତ ଯାଏ ବହି,
ନୀରବେ ଦେଖଇ ତାହା ଏ ଜନନୀ-ମହୀ;
ନୀରବେ ଦେଖନ୍ତି ଏହି ସୌମ୍ୟ ଗିରି, ଲତା,
ଆକାଶ, ତପନ, ତାରା, କାନନ-ଦେବତା ।
କା'ପ୍ରାଣେ ନ ଉଠେ ବିନ୍ଦୁ କ୍ରୁଦ୍ଧ-କରୁଣାର,
କେ ନ କରେ ତାହା ପାଇଁ ଅଂଗୁଳି ସଂଚାର ।
ଛାଡ଼ି ପତି-ପୁତ୍ର-କନ୍ୟା ସୁଖର ଜୀବନ
ଦୂରେ ସେ ହରିଣୀ ହୁଏ ଶେଷେ କା' ଭୋଜନ !
ହେ ଈଶ୍ୱର, ଦେବଦେବୀ, ଧର୍ମଧ୍ୱଜୀଗଣ,
ହେ ପାଦ୍ରି, ହେ ମୁଲ୍ଲା, ଆହେ ବିଶୁଦ୍ଧ ବ୍ରାହ୍ମଣ !
କହ ମତେ, ହରିଣୀର ଉଷ୍ଣ ନେତ୍ରବାରି,
ତା ନିରୀହ ଶୋଣିତର ଘୃଣ୍ୟ ପିଚ୍ଚିକାରି,
ତମ ଧର୍ମ, ତମ ମୁକ୍ତି, ତମର ସ୍ୱର୍ଗରେ,
ତମ ପ୍ରଚାରେ କି ଅପଳାପ ନାହିଁ କରେ ?

## ଦିଅ ହେ ଉତ୍ତର

ପୁଣି ଏକ ଦିନାରମ୍ଭ,
ପୁଣି ସେହି ଦୈନନ୍ଦିନ ଗତ,
ଜୀବନ ରକ୍ଷଣ ପାଇଁ
ପୁଣି ସେହି ପୁନରାବର୍ତ୍ତନ,
କରି ଆସୁଥାଇଁ ଯାହା
ଦୀର୍ଘକାଳ ମୂକ ଯନ୍ତ୍ରବତ

କ୍ଷୁଧା-ତୃଷା-ଆୟୋଜନ,
ଉଷ୍ଣ-ଶୀତ-ସ୍ୱାଚ୍ଛନ୍ଦ୍ୟ-ରଚନ ।
କିପାଇଁ କରୁଛୁଁ ଏହା ?
କିବା ଲକ୍ଷ୍ୟେ, କିବା ପ୍ରୟୋଜନେ ?
ସତ୍ତାର ରକ୍ଷଣପାଇଁ,
ସ୍ୱେଦ-ସିକ୍ତ କ୍ରୂର ଏ ଜଞ୍ଜାଳ
ଜାନ୍ତବ ପ୍ରେରଣା ମାତ୍ର
ଘୂର୍ଣ୍ଣାୟିତ କରେ କାୟେ, ମନେ,
ଜଟିଳ ଦାସତ୍ୱ ଏ ଯେ,
କେ କହେ ଏ ସ୍ୱାଧୀନ ବିହାର ?
ସ୍ୱାଧୀନ ହେବି ମୁଁ ଚାହେ,
ଲକ୍ଷ୍ୟ କାହିଁ ? — ଜାଣିବାକୁ ଚାହେ,
କିପାଁ ଆବର୍ତ୍ତିତ ମୁହିଁ
କୋଟି କ୍ଷୁଦ୍ର କର୍ମର ଉତ୍ସାହେ ?
କି ମହତ ଶେଷ ଅଛି
ଜୀବନର ଏ କଟାହ ଦାହେ ?
ଅଜ୍ଞାନ-ଚାଳିତ ଏହି
କ୍ଷିପ୍ରତା କି ଜୀବନ ବୋଲାଏ ?
ଜୀବନର ତତ୍ତ୍ୱ କହ,
କିଏ ଅଛ ହେ ଜୀବନେଶ୍ୱର,
ବିରାଟ ଏ ଅପଚୟେ,
ଅଛି କିଛି ଶୁଭ ଅନଶ୍ୱର ?

## ଦହନ-ସୁଖ

ସ୍ୱର୍ଣ୍ଣ ଯେବେ ନିଆଁରେ ପୋଡ଼େ
ଅକୁହା ବ୍ୟଥା ମରମେ ମରେ
ସେଇ ଯେ ତା'ର ଭାଗ୍ୟୋଦୟ
ନ ପାରେ ଜାଣି ଅଜ୍ଞତାରେ !
ବୀଜଟି ଯେବେ ମାଟିରେ ପଡ଼ି
ଧ୍ୱଂସ ହୁଏ ଗଳିତ-ଅଙ୍ଗ,

ବୁଝେ କି ଆହା କ୍ଷୁଦ୍ର-ବୀଜ
କି ମହା-ଲୀଳା ତା ତନୁ-ଭଙ୍ଗ !
ମତେ ବି ତମେ ଜଳାଇଅଛ
ଦୁର୍ବିପାକର ତପ୍ତ-ଦାହେ,
ଅଜ୍ଞତାରେ ଦେଇଛି ଗାଳି,
ସେ ଲାଗି, ପ୍ରଭୁ, ସେ ଦିନ ଯାଏଁ !
ବୁଝୁଛି ଆଜି ବିଳାପ ଯେତେ,
ଲାଞ୍ଛନା ଯା, ଭ୍ରାନ୍ତ-ଗତି,
ଆସ୍ତେ ପ୍ରଭୁ, ଅଲକ୍ଷ୍ୟରେ
ଆଣିଛି ଅବା ତୁମରି କତି !
ତୁମରି ଅନୁକମ୍ପା ତଳେ
ଶାନ୍ତ ଆଜିର ବିଶ୍ରାମରେ
କେତେ ବା ଦୂରେ ଦୁଃଖ ପୁଣି
ଅଛି, ମୁଁ ଭାବେ କୌତୂହଳେ !
ଦୁଃଖ ଆଜି ବିପଦ ନୁହେଁ,
ଦୁଃଖ ତୁମରେ ବିସ୍ମରଣ,
ତୁମରେ-ବୁଝିବା-ପନ୍ଥା ଯଦି –
ସେ ଘୋର-ଦାହ, ବନ୍ଧୁ ମମ ।
ଦୁଃଖ ଦିଅ, ବିପଦ ଦିଅ,
ଘାରନା କେବଳ ଅଜ୍ଞତାରେ,
ଆଲୋକ ଆଣେ ଯେ ଅନ୍ଧାର,
ଯଜ୍ଞ ବୋଲି ମୁଁ ଭାବିବି ତା'ରେ ।

## ସୁମେଧାର ବିବାହ

(ବୌଦ୍ଧ ଥେରୀ ଗାଥାର ଛାୟାରେ)

(୧)

ସୁମେଧାର ହେବ ଆଜି ମଙ୍ଗଳକୃତ୍ୟ,
ଲାଗିଛି ନଗରେ ତେଣୁ ଉତ୍ସବ, ନୃତ୍ୟ ।
ସୁମେଧା ସେ ଅଲିଅଳୀ ନରପତି-କନ୍ୟା,
ତେଣୁ ପରିଣୟ ତାର ଆନନ୍ଦ-ବନ୍ୟା ।

ସୁନ୍ଦରୀ ସୁମେଧା ସେ ବହୁଗୁଣ-ଯୁକ୍ତା,
ଚରଣ ତା ରକ୍ତିମ, କଣ୍ଠରେ ମୁକ୍ତା ।
ବହୁ ରାଜ-ସୁତ-ସୁଖ- କଳ୍ପନା-ଧାତ୍ରୀ,
ଯାହାପାଇଁ ନିଶ୍ଚିତା ହୋଇଛି ସୁଗାତ୍ରୀ,
ତରୁଣ ସେ ସୁନ୍ଦର ଅଲୋକ-ସାମାନ୍ୟ,
ବୀରବର ଗୁଣଧର, ଲୋକପ୍ରିୟ, ମାନ୍ୟ ।

(୨)

ସୁଭଗ ସେ ରାଜ-ସୁତ ମଣ୍ଡିତ ଭୂଷଣେ,
ବରବେଶେ ସମାଗତ କୁଟୁମ୍ବ ଗହଣେ ।
ଚାରିଆଡ଼େ କୋଳାହଳ; ଉତ୍ସୁକ ଜନତା
ମାଡ଼ିଚାଲେ ନଗରର ସମସ୍ତ ପନ୍ଥା ।
ବ୍ୟସ୍ତ ଉଆସେ ତେଣେ ଅଂଗନେ, କକ୍ଷେ,
ସଖୀଜନ, ଦ୍ରୁତେ ଚଳେ ସୁମେଧାର ଲକ୍ଷ୍ୟେ ।
ଏ କଅଣ ? ଦ୍ୱାର କିପାଁ ଅନ୍ତରୁ ବନ୍ଦ ?
ସଖୀ ଡାକେ –''ଏ କି ଜେମା ? ଶୁଭେ (୧) କିପାଁ ମନ୍ଦ ?
ଶେଷଥର ଲାଗି ଏଇ ପ୍ରାସାଦର ମାଟିରେ,
ଦେଖୁ ଆମେ ତୋ ଚରଣ ଚାରୁ ପରିପାଟିରେ ।
ଖୋଲ ଦ୍ୱାର, ଉତ୍ସବେ ଆନନ୍ଦ ମିଶାଅ,
ଦ୍ୱାର ଖୋଲି କୋଟି ପ୍ରାଣେ ସୁଖ-ଧାରା ଭସାଅ ।''

ସୁମେଧା ଖୋଲଇ ଦ୍ୱାର ଗମ୍ଭୀରେ ଭାଷଇ,
ନୟନେ ତା ଅଭିନବ ଦୀପ୍ତି ଆଭାସଇ ।
''ବିବାହ ମୁଁ କରିବିନି ଏଇ ମୋର ଧାର୍ଯ୍ୟ,
ନିର୍ବାଣ ଏକ ମୋର ମଂଗଳ-କାର୍ଯ୍ୟ ।''
ସ୍ତମ୍ଭିତ ସଖୀଜନ, ଉତ୍ସାହ ଅସ୍ତ
ଧାଇଁଲେ ଜନନୀ, ପିତା ବିଚଳିତ, ବ୍ୟସ୍ତ ।
କରୁଣ ବିଳାପେ ମାତା କହେ, ''ଏ କି ଧନରେ ?
ଅଶୁଭ ଏ ଲକ୍ଷଣ ମଂଗଳ-କାମରେ ।
ଯୋଗ୍ୟ ଏ ବର ତୋର କେତେ ଖୋଜି ଲବ୍ଧ,
କି ମନେକରୁ, ଏ ମହା- ଉତ୍ସବ ସ୍ତବ୍ଧ ?''

(୧) ଶୁଭେ – ଶୁଭ କାମରେ

(୩)

ସୁମେଧା ସକଳେ ଚାହିଁ ଉତ୍ତରେ ସଧୀରେ,
"ହେବ ମାଆ ମୋ ବିବାହ ଅଭିନବ ବିଧିରେ ।
ଫିଟିଅଛି ଅନ୍ତରେ ମୋର ଜ୍ଞାନ-ନେତ୍ର,
ବିନା ମୋହେ ଦେଖୁଛି ମୁଁ ସଂସାର-କ୍ଷେତ୍ର ।
ମୋ ପାଇଁ ନୁହେଁ ମା, ଭୋଗ-ବିକୃତ ଶଯ୍ୟା,
ସତ୍ୟର ଉପାସିକା, ନେବି ମୁଁ ପ୍ରବ୍ରଜ୍ୟା ।
ସବୁ ଭୋଗ-ମୂଳ ଏ ଯେ ନର ଦେହ-ଯନ୍ତ୍ର,
ସେ ତ ଖାଲି ହାଡ଼, ଚର୍ମ, ରକ୍ତ ଓ ଅନ୍ତ୍ର ।
ଗୋଟି ଗୋଟି ଅବୟବେ କରି ନେଲେ ଛିନ୍ନ,
କିଏ ତାକୁ ଲୋଭାଇବ ଜମ୍ବୁକ ଭିନ୍ନ ?
ପ୍ରେମିକକୁ ଛାଡ଼ିଗଲେ ଚର୍ମର ବେଢ଼ଣ,
ନିଜ ମାତା ସହିବେ କି ଦୃଶ୍ୟ ସେ ଭୀଷଣ ?
ସେହି ସେ ଘୃଣାର ଏହି ସୁନ୍ଦର ଶରୀର,
ବାହାରେ ତା' ସ୍ୱେଦସ୍ରାବ, ଅନ୍ତରେ ରୁଧିର ।
ଅଜସ୍ର ଯାଏ ମଳ ବହୁ ତାର ଦୁଆରେ,
କୀଟମୟ, ରୁଗ୍‌ଣ ତା' ଅନ୍ତରେ, ବାହାରେ ।
ପ୍ରିୟ ଏ ଯେ ଅପଘନ, ପତ୍ନୀ ବା ପତିର,
ମଲେ ହୁଏ କିସ ଏହି ମନ୍ଦିର ରତିର ?
ବିଭୀଷିକା ହୁଏ ତାହା, ଶ୍ମଶାନରେ ଫୋପାଡ଼ି
ନ ଆସିଲେ, ନିର୍ଭୟ- ମନ ନୁହେ କାହାରି ।
ଦର୍ଶନ-ମୋହମୂଢ଼, ତୃଷାର୍ତ୍ତ ଚିତ୍ତ,
ଭ୍ରାନ୍ତ କରୁଛି ଜନେ ବିଚ୍ଳିତ, କ୍ଷିପ୍ତ ।
ମିଥ୍ୟାର ପଛେ ଧାଇଁ ଦୁଃଖରେ ମଗ୍ନ,
ବୁଦ୍‌ବୁଦ ଏ ଜୀବନ କେବଳହିଁ ସ୍ୱପ୍ନ ।
ସତ୍ୟର ସଂଧାନୀ ବୁଦ୍ଧର ଭକ୍ତ,
ନହେବି ମୁଁ ପ୍ରତାରକ- ଭୋଗେ ଅନୁରକ୍ତ ।
ମୋହ-ତୃଷ୍ଣାରେ ତେଜି ଜୟିବି ମୁଁ ମରଣ,
ନିର୍ବାଣ ପାଇଁ ଯିବି ବୁଦ୍ଧମ୍ ଶରଣ ।"

(୪)

ବିବାହର ଉତ୍ସବ ସହସା ନିସ୍ତବ୍ଧ,
ମୌନ ସେ ଯୁବାବର, (କଷ୍ଟରେ ଲବ୍ଧ) ।

ଠେଲିଦେଇ ଜଗତର ମିଛ ମୋହ ବନ୍ୟା,
ବୁଦ୍ଧର ପଥେ ଚଳେ ନରପତି-କନ୍ୟା ।

## ରୂପତତ୍ତ୍ୱ

(ଧମ୍ମପଦ : ଜରାବଗ୍‌ଗ : ବୁଦ୍ଧଘୋଷ ଭାଷ୍ୟ)

ଶ୍ରୀମତୀ, ସେ ରାଜଗୃହେ ରୂପସୀ ଗଣିକା,
ଲାଳସା-ନିଳୟ,
ନଗରର ବହୁ ଧୈର୍ଯ୍ୟ, ତା' ରୂପ-ଶିଖାରେ
ଲଭିଛି ବିଲୟ ।
ଭିକ୍ଷୁ ଏକ ଭିକ୍ଷାର୍ଥରେ ଯାଇ ହେଲା ଥରେ
ତା ରୂପ-ବିଦଗ୍‌ଧ,
ପ୍ରଭୁ ବୁଦ୍ଧ ଜାଣିଲେ ତା' ନ କହିଲେ କିଛି,
ରହିଲେ ନିସ୍ତବ୍‌ଧ ।
ହଠାତ୍ ନଗରେ ହେଲା ବାର୍ତ୍ତା ପ୍ରଚାରିତ –
ମୃତ୍ୟୁ ଶ୍ରୀମତୀର,
ଶୁଣି ବୁଦ୍ଧ ଆଦେଶିଲେ, ନ ହେଉ ବିନଷ୍ଟ
ତା' ମୃତ ଶରୀର ।
ଦିନ ତିନି ପରେ ବୁଦ୍ଧ ଚଳିଲେ ସଶିଷ୍ୟ
ନଗର ଶ୍ମଶାନେ,
ଅଣାଇ ଶ୍ରୀମତୀ-ଶବ ରଖାଇଲେ ତହିଁ
ସର୍ବ ଅବଧାନେ ।
ରୂପ-ମୂଢ଼ ଭିକ୍ଷୁ ସହ ରାଜା, ମନ୍ତ୍ରୀ ତୁଳେ
ବହୁ ନାଗରିକ,
ବୁଦ୍ଧ-ବାଣୀ ଶ୍ରବଣାର୍ଥେ ନଗର ଶ୍ମଶାନେ
ସର୍ବେ ଉପସ୍ଥିତ ।
ରୂପସୀ ଶ୍ରୀମତୀ ଏବେ ଦିଶେ ବିକଟାଳ
ଜଘନ୍ୟ, କୁତ୍ସିତ,
ମକ୍ଷିକାର ଚରାଭୂମି ଦୁର୍ଗନ୍ଧ, ବୀଭତ୍ସ
ସ୍ଫୀତ, ବିଗଳିତ ।
କହନ୍ତି ସେ ତଥାଗତ ସକଳେ ଅନାଇ
''ଚିତ୍ରିତ ପୁତ୍ତଳୀ

ଏଇ ତ ମାନବ ଦେହ, ବସନେ, ଭୂଷଣେ
ଦିଶେ ସୁଖକରୀ ।
କ୍ଷତମୟ, ରୋଗାକୁଳ, ଈର୍ଷା, ତୃଷାମୟ,
ପଂକିଳ, ଭଂଗୁର,
ଏଇ କରେ ମାନବକୁ ବ୍ୟାକୁଳ, ଉଦ୍‌ଭ୍ରାନ୍ତ,
ଧୈର୍ଯ୍ୟ କରି ଚୁର ।''
ଏହା କହି ସ୍ୱଳ୍ପଭାଷୀ ସ୍ଥିତପ୍ରଜ୍ଞ ପ୍ରଭୁ
ଗଲେ ଚଳି ଧୀରେ,
ଭିକ୍ଷୁ ସହ ସେ ଜନତା ହେଜେ ରୂପତତ୍ତ୍ୱ
ମନର ଗଭୀରେ ।

## ପତିତ-ପାବନ ବୁଦ୍ଧ

(୧)

ବୈଶାଳୀରେ ଲିଚ୍ଛବୀ ସାମନ୍ତେ
ରୋଷଜର୍ଜରିତ ଆଜି, ଅପଭାଷା ଫୁଟିଉଠେ କଣ୍ଠେ,
ସକଳ ଅନ୍ତରେ ଜଳେ ଅପମାନଦଗ୍‌ଧ ଅଭିମାନ
ସାମାନ୍ୟ ଶ୍ରମଣଟାଏ ବିଖ୍ୟାତ କୁଳର
ନିମନ୍ତ୍ରଣେ ନାହିଁ ଦେଇ ସ୍ଥାନ,
ଗଲା ବୃଦ୍ଧା ଗଣିକାର କଳୁଷ-ମନ୍ଦିରେ
ପାଦେ ଦଳି ରାଷ୍ଟ୍ରର ସମ୍ମାନ !
କହେ କେହି ବିଜ୍ଞମ୍ମନ୍ୟ, ''ନାହିଁ ପରା କରୁଥିଲି ଆଦ୍ୟେ
ବେଦଦ୍ରୋହୀ, ଧର୍ମଦ୍ରୋହୀ, ନାସ୍ତିକ ସେ ଶ୍ରମଣ ଗୌତମେ,
ନାହିଁ ଦିଅ ଅଭ୍ୟର୍ଥନା ତମେ;
ମୋ କଥା ନଶୁଣି ଗଲ ଧାଇଁ ତାକୁ କରିବାକୁ ପାଦ୍ୟେ,
ପାଇଲ ତ ଆଚ୍ଛା ଫଳ, ନାହିଁ ମିଳିଥିଲା
କେବେ ଯାହା ଭାଗ୍ୟେ ।''

(୨)

ବୈଶାଳୀର ଗଣିକା ପଲ୍ଲୀରେ
ଦିନେ ଯେ ବିଶ୍ରୁତ ଥିଲା ରୂପ-ଗୁଣ ଲାଗି

ଥାଏ ସେହି ଆମ୍ରପାଳୀ, ଏବେ ତାର ଗଣ୍ଡ
ବେଳେବେଳେ ଆର୍ଦ୍ର କରି ଅନୁତାପନୀରେ ।
ଦିନେ ସେ ମୋହିନୀ ଥିଲା, – କଳା, କଳେବରେ
ନୃତ୍ୟ-ରଙ୍ଗେ ତାର,
ଦୋଳାଉଥିଲା ସେ ଚିତ୍ତ ଅୟୁତ ଅନ୍ତରେ
ରହସ୍ୟ ପୂରିତ ଥିଲା, ପୂର୍ଣ୍ଣ ତାର ଯୌବନସମ୍ଭାର ।
ସେ ଦିନ ନାହିଁଛି ଆଉ, ଆମ୍ରପାଳୀ କୁଂଚିତ କୁନ୍ତଳେ
ଅନିପ୍ସିତ ଶୁଭ୍ର ରେଖା ଯତ୍ରତତ୍ର ଉଠିଲାଣି ଫୁଟି
ଦେଖେ ସେ ତା ବାତାୟନୁ ସେଦିନ ତା ଭକ୍ତ ଦଳେ ଦଳେ
ଯିବାର ନବୀନା ସବୁ ପ୍ରତିଦ୍ୱନ୍ଦ୍ୱୀ ଘରେ
ପ୍ରଦୋଷ ଅନ୍ଧାରେ ଲୁଚି ଲୁଚି ।
ସହସ୍ରର ସୋହାଗିନୀ, ସହସ୍ରର କାମନାର ତାରା
ସେ ଦିନର ରୂପକଳାବତୀ
ବୈଶାଳୀର ନିଖିଳ ନାୟିକା
ଆମ୍ରପାଳୀ, ଚ୍ୟୁତ ଆଜି ଚୂତବୀଜ ସମ
ପୁଷ୍ପଫଳହୀନ ଆଜି ମନୋଜ୍ଞ ତା ଯୌବନ-ବାଟିକା ।
ହେଉଁ ବୃଦ୍ଧା, ପରିତ୍ୟକ୍ତା, ଉଠେ ଚିତ୍ତେ ତାର – ସହସ୍ର ଜିଜ୍ଞାସା
ଜୀବନର କିସ ଅର୍ଥ, ଆସିଥିଲା କିପାଇଁ ଜଗତେ
ପାପର କି କ୍ଷମା ଅଛି ବିଶ୍ୱେ,
ପାତକୀର କିବା ଅଛି ଆଶା ?
ଦେଖାଇବେ କି ପନ୍ଥା ବ୍ରାହ୍ମଣେ,
ତାର ରୂପ-ସରେ ସ୍ନାନେ ସେ ଗୋଷ୍ଠୀର ସର୍ବେ ଜଣେ ଜଣେ
ଆସିଛନ୍ତି ଅତୀତରେ । ଏବେ ଯଦି ଇଚ୍ଛେ ପ୍ରାୟଶ୍ଚିତ୍ତ
ବ୍ରାହ୍ମଣେ ବତାନ୍ତି ଯଜ୍ଞ, ଲୋଡ଼ା ଯହିଁ ସାମ୍ରାଜ୍ୟର ବିତ୍ତ,
ଦେବତାର ନାମେ,
ବିତରିତ ଦ୍ରବ୍ୟ ଅର୍ଥ ପହଁଚିବ ଯାଇ
ପୁରୋହିତ ଧାମେ ।
ଆମ୍ରପାଳୀ ଭାଳେ ଅବିରତ,
କେହି କି ବିଶାଳ ଦେଶେ ନାହିଁ ପୁଣ୍ୟପ୍ରାଣ,
ଯା'ର ଖାଲି ପୁଣ୍ୟ ସ୍ପର୍ଶେ କଳୁଷିତ ଜୀବନ ତାହାର
ପୁଣି ହେବ କଲ୍ୟାଣ-ଶ୍ରୀମନ୍ତ ?

ଏକାଳେ ଶ୍ରବଣେ ବାଜେ ବୈଶାଳୀର ଉପକଣ୍ଠ ବନେ
ସମାଗତ ଶାକ୍ୟସିଂହ, ବୁଦ୍ଧ, ତଥାଗତ
ଅନୁକଂପାମୟ ସତ୍ୟ ଝରେ ଯା'ର ବଚନେ ବଚନେ ।
କାମନା-ବିଳାସ-ଭୂମି ଥିଲା ଦିନେ ଯେଉଁ ଆମ୍ରପାଳୀ,
ଶୁଣେ ସ୍ତବ୍ଧ ବିସ୍ମୟରେ ଏହି ବର ନବୀନ ତାପସ
ଥିଲେ ଦିନେ ରାଜପୁତ୍ର, ଜୀବନର ଯାହା କିଛି ଭୋଗ
ସବୁ ଥିଲା ତାଂକ ଆତ୍ମବଶ ।
ତେଜି କିନ୍ତୁ ରାଜ୍ୟ, ସୁଖ, ରୂପସୀ ବନିତା,
ତେଜି ସର୍ବ ସୁଲଭ ବିଳାସ,
ତେଜି ନର-ଜୀବନର ସର୍ବ କ୍ଷୁଦ୍ର କ୍ଲିନ୍ନ ଅଭିଳାଷ,
ସନ୍ନ୍ୟାସୀ ସେ ରାଜପୁତ୍ର ଚିତ୍ତେ ବହି ଏକମାତ୍ର ଚିନ୍ତା
ନିଖିଳର ମୁକ୍ତି-ସୁଖ, ପାପ-ତାପୁଁ ପୁଣ୍ୟ ପରିତ୍ରାଣ
ଭ୍ରମୁଛନ୍ତି ଗ୍ରାମୁଁ ଗ୍ରାମେ ନଗରେ ନଗରେ
ଜନେ ଦେଇ ମହତ୍ତର ଜୀବନ-ସଂଧାନ ।
ଜାତି-ସ୍ଥିତି-ନିର୍ବିଶେଷେ ମୁକ୍ତ ତାଙ୍କ କରୁଣାର ଦ୍ୱାର
ତାଙ୍କ ଧର୍ମ ଅଭ୍ୟନ୍ତରେ ମାନସ-ସାଧନା,
ନାହିଁ ତହିଁ ବାହ୍ୟ ଉପଚାର ।

ଦାସୀ ଡାକି କହେ ଆମ୍ରପାଳୀ,
"ଯାଆ ଲୋ ତୁ, କର ଯାଇ ନିମନ୍ତ୍ରଣ ବରେଣ୍ୟ ପୁରୁଷେ
ଚରଣେ ଜୁହାରି,
ଭାଗ୍ୟ ଥିଲେ ଆସିବେ ବା ମୋର ଏହି କଳଂକ ମନ୍ଦିରେ,
ପୁଣ୍ୟ ଥିଲେ ବାକି କିଛି କରି ତାଙ୍କ ଚରଣ ବନ୍ଦନ
ପରଶିବି ପାୟସାନ୍ନ ଥାଳି,
ପ୍ରପଂଚ ବିମୁକ୍ତ ଏହି ନରରାଜ ଚରଣ ପ୍ରାନ୍ତରେ
ଭାବୁଛି ମୁଁ ପାଇବି ବା ପୁଣ୍ୟତୀର୍ଥ ଜୀବନ-ଆଖରେ ।"

(୩)

ଗଣପତି, ଗଣିକାର ଦୂତ ଦୂତୀ ଦୁହେଁ ଏକ କାଳେ
ପ୍ରଣମିଲେ ବୁଦ୍ଧପଦେ, ଜଣାଇଲେ ବିନମ୍ର ଭାଷାରେ
ନିଜ ନିଜ ନିମନ୍ତ୍ରଣ, –
ତୁଷ୍ଣୀ ରହି କିଛି କ୍ଷଣ, ମହାଜ୍ଞାନୀ କହିଲେ ଆନନ୍ଦେ
ଆମ୍ରପାଳୀ ଗୃହେ କାଲି ହେବ ଆମ୍ଭ ସକଳ ଭୋଜନ ।

ଗଣିକାର ଦାସୀ କ୍ଷଣେ ଅବିଶ୍ୱାସେ ହୁଏ ସ୍ତମ୍ଭୀଭୂତ,
ସ୍ତମ୍ଭୀଭୂତ ହୁଏ ପୁଣି ଶୋଣିତ-ଗର୍ବିତ
ବୈଶାଳୀର ଲିଚ୍ଛବୀଙ୍କ ଦୂତ
ଦାସୀ କରେ ବୁଦ୍ଧ ପଦେ ବାରଂବାର ମୂଢ଼ ନମସ୍କାର,
ଦୂତ ଫେରେ ମୌନ ଅପମାନେ
ଦେବାକୁ ସାମନ୍ତବର୍ଗେ ରୂଢ଼ ସମାଚାର ।

ଆନନ୍ଦ ବିହ୍ୱଳେ କହେ ଯୋଡ଼ି ବେନି ପାଣି,
"ମହାଭାଗ ! ଏ କି ଦେଲେ ଆଜ୍ଞା ।"
ମହାପ୍ରାଣ ବୁଦ୍ଧ କହେ, "ଧନଗର୍ବୀ ମୁକ୍ତାଜାଳଠାରୁ
ପତିତର ଅଶ୍ରୁ ବଡ଼ । ପାପିନୀର ପାଶେ ମୋର ସ୍ଥାନ,
ଯେଣୁ ସେ ଅଭାଗ୍ୟା ।"

(୪)

ବୈଶାଳୀର ଗଣିକା ପଲ୍ଲୀରେ
ମଙ୍ଗଳଉତ୍ସବ ଆଜି, ଦ୍ୱାରେ ଦ୍ୱାରେ ମଂଗଳକଳସ,
ଘରେ ଘରେ ଶଂଖଧ୍ୱନି, ଦେହେ ଦେହେ ଶୋଭନ ବସନ
ପରମପ୍ରେମିକ ଆଜି ସମାଗତ ସେ ଘୃଣ୍ୟ ମାଟିରେ ।
ନାଗରେ ଆସନ୍ତି ସେଥି ଲୁଚି ଲୁଚି ରାତ୍ରି ଅନ୍ଧକାରେ
ଅନାଚାରେ ଖୋଜି ଆବରଣ,

ଆଜିର ନାଗର କିନ୍ତୁ ସମାଗତ ମୁକ୍ତ ଦିବାଲୋକେ
କରିବାକୁ ଅଭାଗିନୀ ସକଳ ସେ ଭଗିନୀଦଳର
ଜୀବନ ସଂଚିତ ଯେତେ କଳୁଷ ହରଣ ।
ଆମ୍ରପାଳୀ ଗୃହଦ୍ୱାରେ ବିରାଜିତ କରୁଣାସାଗର
ବୁଦ୍ଧ, ତାଙ୍କ ମୁଖ ଦୀପ୍ତ ଦୈବତ ଆଲୋକେ,
ପଲ୍ଲୀର ପତିତାଦଳ ଘେରି ତାଙ୍କୁ ହୋଇଛନ୍ତି ଠିଆ
ସକଳର ବକ୍ଷ କ୍ଷୁବ୍ଧ ନବସ୍ପର୍ଶ ଏକ ସୁଖଦିଗ୍ଧ ଶୋକେ ।

ବୁଦ୍ଧର ବରେଣ୍ୟ ପଦ ପତିତା ରମଣୀ
ଆର୍ଦ୍ର କରି ଅନୁତାପ-ଜଳେ,
ପୋଛିଦିଏ ଆପଣାର ସୁବାସ କୁନ୍ତଳେ;
ପ୍ରଥମ ପାବନ ସ୍ପର୍ଶେ ଶତ ସେହି ପତିତା ନୟନୁ
ଅଯାଚିତେ ଆନନ୍ଦାଶ୍ରୁ ଝରେ ।

ଜାନୁ ପାତି ଯୁକ୍ତପାଣି, ବୁଦ୍ଧ ମୁଖେ ଚାହିଁ
ଆମ୍ରପାଳୀ କରଇ ପ୍ରାର୍ଥନା,
ବୈଶାଳୀର ସକଳ ସେ ପତିତାର ଦଳ
ଜାନୁ ପାତି ଅଶ୍ରୁ ତେଜି ନବୀନ ସେ ପ୍ରେମିକ ବଦନେ
ଚାହିଁଛନ୍ତି ଆଜି ଉନମନା ।

ସକଳର ପ୍ରାଣକଥା ଫୁଟିଉଠେ ଆମ୍ରପାଳୀ ମୁଖେ –
"କରୁଣାସାଗର,
ହେ ବୁଦ୍ଧ, ହେ ମାରଜୟୀ, ପତିତ ପାବନ,
ମାର-ଘୃଣ୍ୟ ପଣ୍ୟ ଆମେ, ପତିତାର ଦଳ
ମହାଭାଗ ତବ ସ୍ପର୍ଶେ ପାଇଲୁଁ ଆସ୍ୱାଦ
ନବ ଜୀବନର ।
ଘୃଣ୍ୟ ଦେହ ବିକି ଆମେ ଚଳାଉ ଜୀବିକା
ହେ ମନ-ବଣିକ,
ଆମର ପ୍ରାଣର କଥା କିଏ ବୁଝେ ପ୍ରଭୁ,
ଆମ ପ୍ରାଣ ଜନ୍ତୁଠାରୁ ଧିକ ।
ଏଇ ଦେହମାଂସ ଯେହୁ ଚୋଷନ୍ତି ଅନ୍ଧାରେ
ସେ କରନ୍ତି ଆଲୋକରେ ଘୃଣା,
ଆମର ଦେବତା ନାହିଁ କେ ଦେବ ବା ମନ୍ତ୍ର ପତିତାରେ ?
ମହାଭାଗ, ପତିତା ଭାଗରେ
ଏଇ ତବ ପ୍ରଥମ କରୁଣା ।
ନେଉଛୁ ଶରଣ ଏଇ ଅଭାଗିନୀଦଳ
ତବ ପଦ ନଖେ,
ପାପୀଙ୍କ ଜୀବନେ ଫିଟୁ ନୂତନ ଅଧ୍ୟାୟ
ଆମରି ପ୍ରତ୍ୟକ୍ଷେ ।
କରୁଣା ସଂଚାର କର ପତିତପାବନ,
ସଂଘେ ତବ ଦିଅ ମୋରେ ସ୍ଥାନ
ଜନ୍ମାନ୍ତର ଘଟୁ ଆମ କଳଂକ-ଜୀବନେ
ଜଗତେ ଘୋଷିତ ହେଉ ପାପୀ-ପାପିନୀଏ
ପାଇବେ ନିର୍ବାଣ ।"

(୫)

ପଚିଶ ଶତାବ୍ଦୀ ଧରି ମାନବର ଶ୍ରେଷ୍ଠ ଜ୍ଞାନଗୁରୁ
ହେ ବୁଦ୍ଧ, ହେ ମାନବର ପରମ ବାନ୍ଧବ,

ବୈଶାଳୀ ପତିତା ପରି କୋଟି କୋଟି ପ୍ରାଣେ,
ଜାଳିଅଛ ଆଶା ଅଭିନବ ।
ଦୁଃଖୁ ଉଦ୍ଧାରିବା ପାଇଁ ଜୀବ-ମାନବରେ
ଜୀବନର ସର୍ବସୁଖ ତେଜି ରାଜପୁତ୍ର,
ଆପଣାକୁ କଲ ଯାହା ପବିତ୍ର ବର୍ତ୍ତିକା
କାଳର ନିଖିଳ ଦୈର୍ଘ୍ୟ ଆଲୋକିତ ତବ ସେ ଆଲୋକେ
ଧରାତଳେ ସୀମା ଭାଙ୍ଗି ଦେଶ ଦେଶ ମଧ୍ୟେ
ଯୋଗାଏ ସେ ପୁଣ୍ୟ ଯୋଗସୂତ୍ର ।
ନରତ୍ୱର ପ୍ରଧାନ ଓ ଆଦ୍ୟ ପ୍ରଚାରକ,
ନିରୀଶ୍ୱର ହେ ଐଶ୍ୱର୍ଯ୍ୟମୟ,
ପ୍ରଜ୍ଞା ପ୍ରେମେ ଯା ମହା ବିଜୟ,
ପଚିଶ ଶତକ ତବ ଏ ଶ୍ରାଦ୍ଧ ବାସରେ
ହେ ଶ୍ରେଷ୍ଠ ମାନବ, ତବ ପବିତ୍ର ଚରଣେ
କବି କରେ ନମସ୍କାର ଭକ୍ତିଶ୍ରଦ୍ଧାମୟ ।
ହେ କରୁଣ, ସତ୍ୟସଂଧ, ହେ ଅକୁତୋଭୟ,
କୋଟି କୋଟି ସହ ଆଜି ଦେଇ ତା'ର ବିନୀତ ପ୍ରଣାମି,
କବି-କଣ୍ଠ ଧନ୍ୟ ହେଉ ପାବନ ସେ ତ୍ରିମନ୍ତ୍ର ଉଚ୍ଚାରି
ବୁଦ୍ଧ, ସଂଘ, ଧମ୍ମ ପଥେ ଶରଣଂ ଗଚ୍ଛାମି ।

## ବୁଦ୍ଧଂ ଶରଣଂ ଗଚ୍ଛାମି

ସଞ୍ଜେ, ସକାଳେ, ସଂଘେ ବିହାରେ
ନିମଗ୍ନ ଯେବେ ଧ୍ୟାନେ,
ତଥାଗତ-ବାଣୀ-ଅମୃତୋପମ ବାଜୁଥାଏ କାନେ କାନେ,
ମନ ଯେବେ ମୋର ସକଳ ତୃଷ୍ଣା-ବନ୍ଧନ କାଟି କାଟି
(୧) ନିର୍ବାଣେ ଉଠେ, ମୁଦିତା, କରୁଣା ଜଗତରେ ବାଁଟି ବାଁଟି,
ସହସା ସେହି ସେ ନୟନ ଦୁଇଟି,
ଭାସିଉଠେ ଅନ୍ତରେ,

(୧) ମୁଦିତା – ବୌଦ୍ଧ ଆଦର୍ଶ ଅନୁସାରେ ମୁଦିତା, ମୈତ୍ରୀ, କରୁଣା ଓ ଉପେକ୍ଷା – ଚାରିଟି ଆଦର୍ଶ ମାନସିକ ଅବସ୍ଥା । ଏଗୁଡ଼ିକୁ ବ୍ରହ୍ମବିହାର କୁହାଯାଏ । ମୁଦିତାର ତାତ୍‌ପର୍ଯ୍ୟ, ଅନ୍ୟ ପ୍ରତ୍ୟେକ ଜୀବର ସୁଖରେ ସୁଖୀ ବୋଧକରିବା ।

କାହାରେ କହିନି ସରମେ ସେ କଥା
ନୀରବେ ମରମେ ମରେ । ୧ ।

କାହାରେ କହିନି ସିନା ହେ ବୁଦ୍ଧ !
ତୁମଠୁ ଛାପିବି କିସ,
ତବ ପଦେ ସବୁ ସଁପିଛି ପ୍ରାଣର ସଂଗ୍ରାମ ଅହର୍ନିଶ ।

ତୁମେଇ ମୋହର ଆଶ୍ରୟ, ଗୁରୁ ସାଧନାର ରଜ୍ଜୁ-ପନ୍ଥା
ତୁମକୁ ତରୁଣ ଭିକ୍ଷୁ ଜଣାଏ ତା ଚିତ୍ତ ହଟହଟା ।
ବୁଦ୍ଧ ଶରଣ ଯାଏ,
ଧମ୍ମ ଶରଣ ଯାଏ,
ତରୁଣ ଭିକ୍ଷୁ ମାୟା-ବନ୍ଧନୁ ମୁକ୍ତି କେବଳ ଚାହେ । ୨ ।

ବାରବାର ମନ ମନ୍ଥିତ କରି ସେଇ ସେ ନୟନ ଟାଣେ,
ଗମନେ, ଶୟନେ, ଧ୍ୟାନେ,
ପୂର୍ଣ୍ଣିମା ଶଶୀ ତରଳ ଜଳଧି-ଜଳରେ ଟାଣିଲା ପରି
ହେ ବୁଦ୍ଧ, ତେଣୁ ଶରଣ ମାଗୁଛି ଆହୁରି ଗଭୀର କରି । ୩ ।

ତୁମରି ଚରଣେ ଶରଣ ପଶିଛି ପ୍ରପଞ୍ଚ ଜଞ୍ଜାଳୁ
ବିଦାୟ ନେଇଛି ଘର, ପରିବାର, ସମାଜ, ବନ୍ଧୁଠାରୁ ।
ସୂକ୍ଷ୍ମତନ୍ତ୍ରେ ଟାଣି ମାୟା ମୋତେ ତଥାପି ଦିଅଇ ଜର,
ହେ କରୁଣାମୟ, ଆଶ୍ରୟ ଦିଅ, କର ହେ ନିକଟତର । ୪ ।

ତୁମରି ଆଦେଶେ ଭିକ୍ଷାର ଆଶେ
ଯାଏ ଯେବେ ପଥେ ପ୍ରାତେ,
ନୀରବ-ବଦନ, ନିମ୍ନ-ନୟନ, ଭିକ୍ଷାପାତ୍ର ହାତେ ।
ପରମ ଯତନେ, ଅନ୍ତରେ ମନେ ତୃଷ୍ଣାର ଅବସାନ
ଅଭ୍ୟାସ କରେ, ଆର୍ଯ୍ୟ ଅଷ୍ଟ-ମାର୍ଗରେ ରଖି ଧ୍ୟାନ,
ତଥାପି ପ୍ରଭୁ ହେ, ମାର ଟାଣେ ଥର ଥର
ହେ କରୁଣାମୟ, ଦୟାକର, ଉଦ୍ଧର । ୫ ।
ପ୍ରତିଜ୍ଞା ମୋର ଭାସିଯାଏ କାହିଁ, ଚରଣ ଧରଇ ପଥ,
ଅଜ୍ଞାତେ ସେଇ ଦୂର ଗାଏଁ, ଘରଲେଉଟା ପଥିକବତ ।
ନିମ୍ନ-ନୟନ ଆପେ ଉଠିଯାଏ ସେଇ ବାତାୟନ ଆଶେ
ଶ୍ରେଷ୍ଠୀକନ୍ୟା ଚାହିଁଥିଲା ଯହିଁ
ଦିନେ ମଞ୍ଜୁଳ ହାସେ । ୬ ।

ପ୍ରଭୁ ବୁଦ୍ଧ ହେ, ସେହି ହସ, ସେହି କଟାକ୍ଷ ନୟନର
ଦାରିଦ୍ର୍ୟ ଚୀର ତଳେ କରେ ମୋର ଚିତ୍ତରେ କଳବଳ ।
କିପରି ଏ ମାର-ସଂଗ୍ରାମୁ ମୁହିଁ ତରୁଣ ବ୍ରହ୍ମଚାରୀ,
ଅକ୍ଷତ ଜୟେ ଉପସର୍ପିବି ତବ ପଦେ ମୋ ଗୁହାରି ।
ଆହୁରି ଶରଣ ଯାଏ,
ଆକର୍ଷଣ ଏ ଦଳିବି କିପରି ଶକ୍ତି ଦିଅ ହେ ପାୟେ । ୭ ।

ନିର୍ବାଣ ଆଶେ ତରୁଣ ଭିକ୍ଷୁ ରିକ୍ତ, ତିକ୍ତ, ତ୍ୟାଗୀ,
କୁଟୁମ୍ବ-ଜନ ଘର-ସମ୍ପଦ ଛାଡ଼ି ମୁଁ ଆସିଛି ମାଗି,
ତୁମରି କରୁଣା, ତଥାଗତ, ପାରିହେବାକୁ ଏ ସଂସାର,
ଦୁଇଟି କୃଷ୍ଣ ନୟନ ଅଇରି ଆଜି ତା ତପସ୍ୟାର ।
ତୁମେଇ ଶରଣ ତା'ର,
ହେ ଜୀନ, ବୁଦ୍ଧ, ପରମ ଶୁଦ୍ଧ, କରୁଣାର ଅକୂପାର !

## ମିଳିବ କି ନାହିଁ

ପ୍ରଣୟୀ ହେ ତବ ମୋହନ ବଂଶୀ ଆଜି
ମରମରେ ପଶି ଉନ୍ମାଦ କରେ ପ୍ରାଣ,
କିବା ଛାଡ଼ି, କେଉଁ ସାଜେ ବା ଶରୀର ସାଜି
କାହିଁ ଯିବି ଅବା, ନାହିଁ ମୋର କିଛି ଜ୍ଞାନ । ୧ ।

ତୁମେ ମୋର କିଏ ସ୍ପଷ୍ଟ ଧାରଣା ନାହିଁ,
କାହିଁ ଅଛ ଅବା କେଉଁଠି ପାଇବି ଖୋଜି,
କେବଳ ଚିତ୍ତ ଅଶାନ୍ତ ତୁମ ପାଇଁ –
ତୁମରି ଅଭାବେ ଅରୁଚ୍ୟ ଯେତେ ଭୋଜି । ୨ ।

ସଂଜେ, ସକାଳେ ଶ୍ରମେ ବିଶ୍ରାମେ
ବେଳେବେଳେ କିଏ ଚିତ୍ତେ ଉଠଇ ଡାକି
''ସେଇ ନାହିଁ ଯେଣୁ ଘୂରୁଛ ଭୁବନ ଭରମେ,
ଅ-ଚଳ ତା'ଠାରେ ସମସ୍ତ ତୋର ଫାଁକି !'' । ୩ ।

କିବା ମୁଁ ଛାଡ଼ିବି ? କାହିଁ ଯିବି ଅବା କହ !
ତୁମ ଛଡ଼ା ଅଛି ଭୁବନର କେଉଁ ଥାନ ?
ଯେଉଁଠି ଅଛି ମୁଁ ସେଇଠୁ ମୋ ପୂଜା ନିଅ
ମୋ ଭଗ୍ନ କୁଟୀ ହେଉ ତବ ଆସ୍ଥାନ ! । ୪ ।

ଗଗନେ ପବନେ ବାହାରେ ବା ଅନ୍ତରେ
ବେଣୁ ନାଦ ତବ ଥରାଏ ବିଶ୍ୱ-କାୟା
କୋଟି ବିରହିଣୀ ଗୋପିକା ନିତ୍ୟ କାଳେ
ଖୋଜୁଛନ୍ତି ତେଣୁ ତବ କଦମ୍ବ-ଛାୟା । ୫ ।

ହେ କୋଟି ଧରାର ଏକାନ୍ତ ପ୍ରିୟତମ,
ଅଶାନ୍ତ ଏକ ପ୍ରାଣ ଚାହେ ଧରା କଣେ,
ମିଳିବେ କି ନାହିଁ ଶାଶ୍ୱତ ଦୁଇ ମନ –
ତୁମେ ଆଉ ମୁହିଁ, ସୃଜନ-କୁଂଜ ବନେ ? । ୬ ।

## ନବ ପ୍ରଣୟୀ

ଜୀବନର ସ୍ୱାଦ ଯେତେ ବୁଦ୍‌ବୁଦ ପରି ଗଲା
ନବ ସ୍ୱାଦେ ପ୍ରାଣ ମୋ ସତୃଷ୍ଣ,
ବିଶ୍ୱର ବେଣୁବନେ, ତେଣୁ ଉନ୍ମନ ପୁଣି,
ଖୋଜେ ବରପ୍ରଣୟୀ, ସେ କୃଷ୍ଣ । ୧ ।

ତୁମର ପ୍ରତୀକ୍ଷାରେ ଇଚ୍ଛାର ଶେଷ ନାହିଁ,
ଶେଷ ନାହିଁ ରାସ ପରା ପ୍ରଣୟୀ,
ଆତ୍ମା ମୋ ଖୋଜେ ଶ୍ୟାମ, ସେହି ପ୍ରେମ ଅଭିରାମ,
ସବୁ ପାଇ ଯେ ନିରତ ବିରହୀ । ୨ ।

ସେ ନୟନ ଅଭିରାମ ଆତ୍ମା ଖୋଜଇ, ଶ୍ୟାମ,
ସମୟର ଶେଷଯାଏଁ ଯାହାରେ,
ଚାହିଁ ଚାହିଁ କ୍ଳାନ୍ତିର, ଆଶଂକା, ଭ୍ରାନ୍ତିର,
ନାହିଁ ଥିବ ଲେଶ ପ୍ରାଣ-ଜୁଆରେ । ୩ ।

ମୋ ପ୍ରାଣର କୁଂଜରେ, ବ୍ରସନ୍ତ ଗୁଂଜରେ,
ମଂଜୁ ମଳୟ ପୁଣି ଆଗତ,
ବଂଧୁ ହେ, ରସମୟ, ହୃଦ ହୃଦ ବିନିମୟ,
ପାଇଁ ଚିତ ଜାଗ୍ରତ, ସ୍ୱାଗତ ! ୪ ।

ବଂଧୁ କେବଳ ତବ ଅଂଗୁଳି ପରଶିବି,
ପିଇବି ନୟନ ତବ ନୟନେ,
ଆଉ କିଛି ମାଗେ ନାହିଁ, ଆନ ତୃଷା ଜାଗେ ନାହିଁ
ଜୀବନର ଅଗଣିତ ଅୟନେ । ୫ ।

# ତୃତୀୟାକ୍ଷି

ଅସତ୍ୟରୁ ସତ୍ୟେ ଟାଣି ନିଅ,
ଆଲୋକରେ ଘନ ଅନ୍ଧକାରୁ
ମରଣରୁ ନିଅ ଅମୃତରେ
କୁତ୍ସିତରୁ ଯା ମଧୁର, ଚାରୁ ।
ବ୍ୟର୍ଥ ନୁହେଁ ସୃଷ୍ଟି କଉଣସି
ତୋ ସୃଷ୍ଟିରେ, ପରମ ଜନନୀ,
ଅସତ୍ୟ ବି ମାଧୁରୀରେ ଭରା
ମରଣ ବି ଶୁଭ-ଆଗମନୀ ।
ଅସତ୍ୟକୁ ସତ୍ୟ ବୋଲି ଧରି
ଭଙ୍ଗୁରକୁ ବିଚାରି ଅକ୍ଷୟ,
ତୋହ ହୀନ ମୋହାନ୍ଧ ଜୀବନ
ହେଉଛି ବା ବିଫଳତାମୟ ।
ଏଇ ତୋର ସୁନ୍ଦର ସଂସାର
ଏଥିପ୍ରତି ନ କରି ବିରାଗ
ଏଥି ଯାହା ପରମ, ପାବନ,
ସେଥିପ୍ରତି କର ଅନୁରାଗ ।
ଅଛ ତମେ ଅଣୁ ଅଣୁ ବ୍ୟାପୀ,
ଓତପ୍ରୋତେ ଏଇ ପୃଥିବୀର,
ପରିତ୍ୟାଜ୍ୟ ହେୟ ହେବ କିପାଁ
ଗୃହସ୍ଥଳୀ ମହାଜନନୀର ।
ତହିଁ ସ୍ୱର୍ଗ, ଜ୍ୟୋତି ଓ ଅମୃତ
ଜନନୀର ପଦଚିହ୍ନ ଯହିଁ,
ଚକ୍ଷୁଷ୍ମାନ ସେହି ସେ ପୁରୁଷ
ତବ ପଦ ଯେ ଦେଖିପାରଇ ।
ଅନ୍ଧ ଥାଇ ଅନ୍ୟ ଧାମେ ଗଲେ
କି ହେବ ବା ଅଧିକ ଦର୍ଶନ,
ତୃତୀୟାକ୍ଷି ତେଣୁ ଗୋ ଜନନୀ,
ତୋ ପରମ କରୁଣା ବର୍ଷଣ !
ସ୍ୱର୍ଗ ନାହିଁ ଯିବାକୁ ମୁଁ ମାଗେ
ଘୃଣା ନାହିଁ କରେଁ ଏହି ଧରା,

ଓତପ୍ରୋତ ଯେହେତୁ ଜନନୀ
ଏଇଠି ତ ଅମୃତ-ପସରା ।
ସତ୍ୟ, ଜ୍ୟୋତି, ମୁକ୍ତି, ଅମୃତତ୍ୱ
ଏଇଠାରେ ଦିଅ ଆମ କରେ,
ମାୟା ଯାହା ବୁଝୁଁ ଦୟା ବୋଲି,
ମୁକ୍ତିପଥ କର ବନ୍ଧନରେ ।

## ଭେଟିବି

(୧)

ବୃକ୍ଷ ଉଠେ ଗଗନ ଭେଦି
ସୂର୍ଯ୍ୟକର ଲାଗି,
କୁସୁମ ଫୁଟେ ବର୍ଣ୍ଣ ବିଁଛି
ମିଶାଇ ଦେବ ବାୟେ,
ସରିତ ଧାଏଁ ସାଗରକୋଳେ
ହୋଇବ ଏକାକାର,
ସାଗର ହୁଏ ପାଗଳ ଯେବେ
ପୂର୍ଣ୍ଣ ଶଶୀ ଚାହେଁ ।

(୨)

ବାସନା ଧାଏଁ ବର୍ଣ୍ଣେ, ରୂପେ
କରିବ ଅଧିକାର,
ଧାମଇ ଆଶା କଳ୍ପନାର
ସ୍ୱର୍ଣ୍ଣ-ମୃଗ ପଛେ,
ଅଦୃଶ୍ୟ ହେ, ଅଜ୍ଞାତ ହେ
ପରମ ବଂଧୁ ମୋର,
ତୁମରି ଆଶେ ଧାଉଁଛି ପ୍ରାଣ
ଭେଟିବ କେବେ ପଥେ ।

## ଦୂର ଓ ନିକଟ

ଗୃହସ୍ଥ, ସନ୍ନ୍ୟାସୀ ହେଲେ ଖୋଜି ଭଗବାନ
ବହୁ ତୀର୍ଥେ ବନେ ଘାଟେ କଲେ ତପ, ଧ୍ୟାନ ।

ଦିନେ ଘୋର ଗ୍ରୀଷ୍ମେ କ୍ଷୁଧାପିପାସା-କାତର
ସନ୍ନ୍ୟାସୀ ଚଳନ୍ତି ବନେ, ଶରୀରରେ ଜ୍ୱର,
କାହିଁ ସେ ପାଇବେ ଆଶ୍ରା, ନ ଜାଣନ୍ତି ପଥ
ଏ ବନେ ଆସିବ କାହୁଁ ସଦାବ୍ରତ ମଠ ?

ହଠାତ୍ ଦିଶିଲା ଏକ ଶବର-କୁଟୀର,
ଧାଇଁ ବାରନ୍ଦାରେ ବସି ହୁଅନ୍ତି ଅସ୍ଥିର ।
ଶବର, ଶବରନାରୀ ଫିଟାଇ ଦୁଆର
ସନ୍ନ୍ୟାସୀଙ୍କି ଡାକି ଦେଲେ ଦରିଦ୍ର ସତ୍କାର ।
ଆଶ୍ୱସ୍ତ ହୋଇଣ ଯୋଗୀ ଶୋଉଁ ଭୂଇଁତଳେ,
ଭାବୁଛନ୍ତି ଧୀରେ ଅନୁଶୋଚିତ ଅନ୍ତରେ,
''ଭଗବାନ୍ ବିରାଜିତ ପ୍ରତି ଲୋକାଳୟେ,
ଘର ଛାଡ଼ି କିପାଁ ଧାଇଁଥିଲି ହିମାଳୟେ !''

କରିବାକୁ ପ୍ରକୃତିର ରୂପ ଉପଭୋଗ
ଧନିକର ହୋଇଅଛି ପର୍ଯ୍ୟଟନ ରୋଗ,
ଆଜି ବିନ୍ଧ୍ୟ, ରାମେଶ୍ୱର, କାଲି ଆମାଜନ୍
ଆଜି ଫୁଜିୟାମା କାଲି ପାରିସ୍, ଲଣ୍ଡନ୍ ।
ବହୁଦିନ ବିଦେଶରେ କାଟି କାଟି କାଳ
ଫେରିଛନ୍ତି ଧନୀ; କେତେ ସନ୍ଧ୍ୟା ଓ ସକାଳ
ବନ୍ଧୁମେଳେ ବର୍ଣ୍ଣି ନାନା ଦୃଶ୍ୟ ଚମତ୍କାର,
ଶ୍ରୋତୃବର୍ଗ ଓଷ୍ଠ, ଫଟାକାଛ ପରକାର ।

ଦିନେକ ସକାଳେ ମାଳୀ ବନ୍ୟ ଏକ ଫୁଲ
ଆଣି ସଜାଇଲା ସାହେବଙ୍କର ଟେବୁଲ;
ପ୍ରଭାତ ଭ୍ରମଣୁଁ ଫେରି ଦେଖନ୍ତି ରସିକ
ସେ ଫୁଲେ, ବିସ୍ମୟ ହୁଏ ଅଧିକୁ ଅଧିକ ।
ତାର ସ୍ୱରେ ହୁଏ କ୍ଷଣେ ମାଳିକି ହକରା
ଜିଜ୍ଞାସୁ ସେ କହେ, ''ଏଇ ବଣେ ଫୁଟେ ପରା ।''

ଭାବନ୍ତି ଧନିକ ବସି – ପାରିସ୍, ଲଣ୍ଡନ୍
ବୁଲିଲି, ଦେଖିଲି ବିନ୍ଧ୍ୟ ପୁଣି ଆମାଜନ୍,
ଘରପାଖେ ପୁଣି ଫୁଟେ ଏ ରୂପ ପରମ,
ଦୂର ଯୋଗୁ ହୁଏ ସିନା ମରୀଚିକା ଭ୍ରମ !

## ଶ୍ରୀକୃଷ୍ଣ

ଯା' ନୀଳିମା ପରିବ୍ୟାପ୍ତ ମହା ଅନ୍ତରୀକ୍ଷେ,
ଯେ ପୀତ-ଦୁକୂଳ ପିନ୍ଧେ ଊଷା, ପ୍ରଦୋଷରେ,
ଯା'ଶିରେ ଚନ୍ଦ୍ରିକା-ଗୁଚ୍ଛ, ମେଘ, ବିଦ୍ୟୁଦ୍‌ବନ୍ତ
ସେ ସୁନ୍ଦର କୃଷ୍ଣ ପଦେ ମୁହିଁ ପୂଜା କରେ । ୧ ।

ଦେଖିଛି ମୁଁ ରାସ ତା'ର ପୂର୍ଣ୍ଣିମା-ନିଶୀଥେ
ନିର୍ମଳ, କର୍ପୂର-କୀର୍ଣ୍ଣ ଯେବେ ନଭାଙ୍ଗନ,
ଜ୍ୟୋତ୍ସ୍ନାର ଉତ୍ତରୀ ଘେନି ନକ୍ଷତ୍ର-ଗୋପିନୀ
ନୃତ୍ୟେ ଘେରିଥାନ୍ତି ତା'ର ନୀଳ ଅପଘନ । ୨ ।

ସୃଷ୍ଟିର ଯମୁନାକୂଳେ, ପ୍ରେମ-ନୀପମୂଳେ
ଅହରହ ବାଜେ ତା'ର ବଂଶୀ, ଘର-ଛଡ଼ା,
ସେ ଧ୍ୱନି-ଉନ୍ମାଦେ ଶୂନ୍ୟେ କୋଟି ଧରା-ଶ୍ରେଣୀ
ଧାଉଁଛନ୍ତି, – କି ଅଲଭ୍ୟ ଖୋଜୁଛନ୍ତି ପରା । ୩ ।

ସେ ପୁଣି ଅନ୍ତର ଯେବେ ହୁଏ କୁରୁକ୍ଷେତ୍ର
କାମନା ଓ କର୍ତ୍ତବ୍ୟର ଜଟିଳ ଆହବେ,
ଶୁଣାଏ ନିଃଶବ୍ଦେ ବକ୍ଷେ, ବାଣୀ ଭାଗବତ
''ପଂକଜ ହୁଅରେ ବତ୍ସ, ପଂକମୟ ଭବେ !'' ୪ ।

ଆଗେ, ପଛେ, ଊର୍ଦ୍ଧ୍ୱେ, ଅଧେଃ, ବାମେ ଓ ଦକ୍ଷିଣେ
ପ୍ରଣମେ ମୁଁ ଓତପ୍ରୋତ ସେ ଶ୍ୟାମ-ବରଣେ,
ଛାୟା-ପଥ ଯା ବକ୍ଷର ଶୁଭ୍ର ବନମାଳ
ନ ହେବ କେ ଗୋପୀ, ସବୁ ସଁପି ତା' ଚରଣେ ! ୫ ।

## ଜୀବ-ଗୋପୀ

ଉଲ୍ଲୋଳ-କଲ୍ଲୋଳ,
ଜୀବନ-ଯମୁନା-ଜଳ;
 ବାସନାର ତୀରବନ ଥରଇ,
ମୁଗ୍ଧ ସେ ଜୀବ-ଗୋପୀ
 ସୁଖର ସ୍ୱପନ ରଚି
 ଯମୁନାର ଘାଟେ ଧୀରେ ଚଳଇ ।

ଭରିବ ତା ଯୌବନ-ପାତ୍ରେ
ବିକଶିତ ଉଚ୍ଛଳ ଗାତ୍ରେ
ଜୀବନର ଯେତେ ଜଳ
ବାସନାର ଫୁଲ ଫଳ,
କାମନାର ଅଗ୍ନି ତା ଜଳଇ । ୧ ।

ଚଂଚଳ, ଉଚ୍ଛଳ
ଜୀବନ-ଯମୁନା ଜଳ,
ନୀପବନେ କାହା ବେଣୁ ବାଜିଲା,
ନିଜ-ସୁଖ-ଦୁଃଖ-ଭୟ –
କାମ, କଳ୍ପନାମୟ
ଗୋପୀ-ଚିତ୍ତ ସେହି ସ୍ୱନେ ଜାଗିଲା ।
କିଏ ସେ ଏ ମଧୁ ବେଣୁ ବଜାଏ ?
ସଂଚିତ, ସତ୍ତାରେ ହଜାଏ !
ବାସନାର ଶୃଙ୍ଖଳ
ଖସିପଡ଼େ ରେଣୁ ତଳ,
ପରମ-ମିଳନେ ପ୍ରାଣ ମଜାଏ । ୨ ।

ଜୀବନ-ଯମୁନା ଜଳ
ଆପାତତ ରସ-ଭର
ଭରଇ ଗୋପିନୀ ତା'ର ଗାଗରୀ,
ପୂର୍ଣ୍ଣ ତା ଯଉବନ,
ତା ନୂପୁର-ନିକ୍ୱଣ –
ସ୍ପନ୍ଦନେ ଉଠେ କାମ ଜାଗରି !
ଘରେ କି ଫେରିବ ଆଉ ଗୋପିନୀ ?
ଦେହ-ଫୁଲ ଦେବ ଫୁଲ-ହାସିନୀ ?
ସ୍ୱର୍ଣ୍ଣ ତା ଯଉବନ
ପୂର୍ଣ୍ଣ ତା ଅପଘନ,
କାହାରେ ସଁପିବ ରସ-ସାଗରୀ ? ୩ ।

ଚଂଚଳ କଳକଳ
ଜୀବନ-ଯମୁନା ଜଳ
ଘାଟେ ଉଭା ଯଉବନୀ ଗୋପିନୀ,

ସହସା କି ହେଲା ତା'ର
ହାତୁ ଖସେ ଘଟ-ଭାର ?
ଜାଣୁନି ସେ ଦିବସ କି ଯାମିନୀ ।
ସେ କି ଆଉ ଫେରିପାରେ କୁଟୀରେ ?
ରୋଷ ହେବ ଗୃହ-ଜନ ସାଥିରେ ?
ଘରର ଯା' ଛୋଟ କଥା
ଟାଣିବ କି ଚିତ୍ତ ତା'
ଛୋଟ ସେଇ ଧରା-ବ୍ରଜମାଟିରେ ? ୪ ।

ମନୋହର ଚଂଚଳ,
ଜୀବନ-ଯମୁନା ଜଳ,
ଜୀବ-ଗୋପୀ ପଛେ ରଖି ଚାଲଇ,
ଜଳ-ଘଟ ଛାଡ଼ିଯାଏ
ଭୁଲିଯାଏ ଅବଗାହେ
କେ ବଜାଏ ମଧୁ ବେଣୁ ଭାଳଇ !
"କାହିଁ ଅଛ ଅଜ୍ଞାତ ବାଦକ,
ଗ୍ରନ୍ଥି-ଛେଦକ ଉନ୍ମାଦକ,
ସବୁ ମୋର ଦେବି ପଦେ
ଆନନ୍ଦ-ଗଦ୍‌ଗଦେ
ପରମ-ମିଳନ ପ୍ରାଣ ଲୋଡ଼ଇ ।" ୫ ।

ଜୀବନ-ଯମୁନା ଜଳ
ଡାକଦିଏ ଛଳଛଳ,
ଜୀବ-ଗୋପୀ ଛାଡ଼ି ତାର ଗାଗରୀ,
ଅହମିକା-ଭୋଗ-ଭୟ –
କଳି-କନ୍ଦଳମୟ –
ଜୀବନକୁ ଛାଡ଼ି, ହୁଏ ପାଗଳୀ ।
ଧାଏଁ ଡାକି – "ସତ୍ୟ ହେ ମଧୁର
ନିଅ ସବୁ ଏଇ ଜୀବ-ବଧୂର,
ନୀଳ-ନଭ ସୁନ୍ଦର,
କୋଟି ଭୁବନର ବର
ତମ-ଜଳେ ଭରୁ ପ୍ରାଣ-ଗାଗରୀ ! ୬ ।

# ଚାଳକ

ପ୍ରଦୀପ୍ତ କର ଦୈବତ ଶିଖା
ପରାଣ-କନ୍ଦରେ
ସୁମଧୁର କର ଭବ-ବନ୍ଧନ
ପ୍ରଣୟ-ସ୍ପନ୍ଦରେ ।
ପବିତ୍ର କର ସକଳ କର୍ମ
ଧର୍ମର ନିକଷେ,
ମଂଗଳ ହେଉ ଯେତେ ଉଦ୍‌ଯୋଗ
ଜନ ହିତ-ପରଶେ ।
ସାର୍ଥକ ହେଉ କ୍ଷୁଦ୍ର-ଜୀବନ
ବିଶ୍ୱ-ଜୀବନେ ଲାଗି,
ଆନନ୍ଦମୟ ହେଉ ଏ ଚିତ୍ତ
ସହସ୍ର ସୁଖେ ଭାଗୀ ।
ଅମୃତ ହେଉ ମର ଏ ସତ୍ତା
ଅନିତ୍ୟ ପରିହରି,
ମହାନ୍ ହେଉ ଏ ମଳିନ ଜୀବନ
ବିରାଟରେ ଅନୁସରି ।
ଘୁଁଚାଅ ଚିତ୍ତୁ ଦୈନ୍ୟ-ଭାବନା
ଗରିମାରେ ଭର ପ୍ରାଣ,
ପ୍ରଲୋଭନେ, ପର-ଆଲୋଚନେ କର,
ସଂଯତ, ନ୍ୟାୟବାନ୍ ।
ନିଃଶେଷ କର ଅହମିକା ମନୁ
ହିଆ ମୈତ୍ରୀରେ ଭର,
କରୁଣାର ଧାରା ବୋହି ନେଇଯାଉ
ବିଭେଦ ଆପଣା-ପର ।
କୃତାର୍ଥ କର ମାନବ-ଜୀବନ
ଶୁଭ, ଆନନ୍ଦ-ମୟ,
ଯଥାର୍ଥ ହେଉ ପ୍ରତି ଉଦ୍ୟମ,
ବିଶୁଦ୍ଧ, ନିର୍ଭୟ ।

# ଲାଭାଲାଭ

ଜାଣି ପାରି ନାହିଁ, ବିନ୍ଦୁ ବିନ୍ଦୁ
ଘଟ କେ ଭରିଛି ମୋର,
ଶୂନ୍ୟ ମୋ କୁଟୀ ମନ୍ଦ୍ରିତ କରେ
ଶାଶ୍ୱତ କଳରୋଳ ।
ସେଦିନର ମୁହିଁ ଦୁଃସ୍ଥ ଅପାଂକ୍ତେୟ
ଆଜି କା'ର ଦାନେ ପ୍ରସନ୍ନ ମନ,
ସମ୍ରାଟେ କରେ ହେୟ । ୧ ।

ଖୋଜୁ ଖୋଜୁ ପଥେ ଧନ ସମ୍ମାନ,
ଅଧିବିତ୍ତ କେ ଦେଲା –
ଗଣ୍ୟ ନୁହେଁ ଯେ ଚିତ୍ତ-ପଣ୍ୟ
ଉଷ୍ମ-ଲୋତକଘେରା,
ସେହି ବିତ୍ତର କୁବେର ମୁଁ ଆଜି ଭାବର ପରମ ଯାନ;
ସକଳ ପ୍ରେମର ଉତ୍ସ ଯେ ସେହୁ ଶୁଣେ ମୋର ଅଭିମାନ । ୨ ।

ଅଜାଣତେ ମୋର ଭରିଛି ମୋ ଘଟ;
ବିନ୍ଦୁ ବିନ୍ଦୁ ସେହି
ଅମଳ ସମଳ ଯେତେ ଯାହା ଜଳ
ସବୁର ମିଶ୍ର ଦେଇ ।
ଆଜି ମୁଁ ଦେଖୁଛି ହୋଇଛି ସକଳ ତାହା
ସ୍ୱଚ୍ଛ, ପୁଣ୍ୟ ସୁରଧୁନୀ ବାରି, ଅକଳ୍ପନୀୟ ଯାହା । ୩ ।

ସକଳ ଦ୍ୱେଷରେ କରିଛି ଆଜି ସେ
ମୈତ୍ରୀର ସୁନା ତାର
ଛୋଟ ମୋ ହୃଦୟେ ଭରି ସବୁ ଲାଗି
ପ୍ରଣୟ ଦୁର୍ନିବାର ।
ରୁକ୍ଷ କୁଟୀର ଭରିଅଛି ମୋର ସୁରଭି ପୁଷ୍ପମାନେ
ନିଖିଳ ଗୋପନ କଥା ବାଜିଉଠେ
କ୍ଷୁଦ୍ର ମୋ ବୀଣାତାରେ । ୪ ।

କିନ୍ତୁ ଖୋଜୁଛି ଦିଶ ଦିଶ ପୁଣି
ସେହି ସେ ସ୍ୱର୍ଣ୍ଣକାରେ,

କି ଆଶେ ନୂତନ ପରଶ ଦେଉଛି
ସେ ମୋର ମୃତ୍ତିକାରେ ?
ଜାଣେ ନାହିଁ, ତାକୁ ଜାଣେ ନାହିଁ,
ଜାଣୁଛି କେବଳ ଯାହା କରୁ ଦାନ
ଅଶ୍ରୁର ମୋର ଶେଷ ନାହିଁ;
କପୋଳ ଓଦାଇ ବହଇ ନିତ୍ୟ
ଅଶ୍ରୁ କେଜାଣି କାହା ପାଇଁ,
ତାକୁ ନ ଭେଟିଲା ଯାଏ ବା ଆତ୍ମା
ପାଇ ନାହିଁ କିଛି ପାଇ ନାହିଁ । ୫ ।

## ମହାପଥର ଯାତ୍ରୀ

ମୁଁ ଯେ ଜନମୁ ଜନମେ କରମୁ କରମେ
ମରମୁ ମରମେ ଥିବି ଧାଇଁ,
ମୁଁ ଯେ ସ୍ୱପନୁ ସ୍ୱପନେ ନବ ନବ ମନେ
ନବ ନବ ଗୀତି ଯିବି ଗାଇ ।
ମୁଁ ଯେ ଚିରଗତି ଚିରଚପଳ, ସ୍ଥିର ଏ
ଧରାରେ ମୋହର ଥାନ କାଇଁ,
ମହାଜୀବନର ବାରିବାହ ମୁଁ ଯେ
ବନ୍ଧନ କ'ଣ ଜାଣେ ନାହିଁ । ୧ ।

ତାରାରୁ ତାରାରେ ଦେବି ଅଭିଯାନ
ଲୋକେ ଲୋକେ ଦେବି ଅଭିସାର,
କେ ରୋଧିବ ମୋର ଦୁର୍ବାର ଗତି
ନିୟମିବ ମତେ କା ବିଚାର !
ସରଣୀର ମୋର ଶେଷ ନାହିଁ ପରା
ବିଶ୍ରାମ ମୁଁ ତ ଚାହେ ନାହିଁ,
ମହା ଜବନର ବିନ୍ଦୁ ମୁଁ ମହା-
ବ୍ୟୋମେ ଅଶ୍ରାନ୍ତ ଥିବି ଧାଇଁ । ୨ ।

ସ୍ରଷ୍ଟା ମୁଁ, ମୋର ସୃଜନରେ ମୋଦ,
ନିଖିଳ ସୃଷ୍ଟି ଘର ମୋର,
ସହସ୍ର ମୋର ଶ୍ରବଣ, ନୟନ
କୋଟି ଭୋଗ ଲାଗି ଚିର ଲୋଳ ।

କ୍ଷୁଦ୍ର, କ୍ଷଣିକ ବିକାର-ପୀଡ଼ିତ
ତେଜି, ମନ ଖୋଜେ ଯିବ କାହିଁ,
ମୈତ୍ରୀ-କରୁଣା-ଆଲୋକ-ଉଷ୍ଣ
ଧରା-ବଣେ ସଂଧାନ ପାଇଁ । ୩ ।

ବିଭୁ ସୁତ ମୁହିଁ ବିବୁଧ-ବଂଶୀ,
ସୁଧାଶୀ, ଆଶିଷ-ବିକୀରକ,
ଲୋକେ ଲୋକେ ଯିବି କଲ୍ୟାଣ ବୁଣି
ଅଶ୍ରୁ ପୋଛିବି ଅପଲକ ।
ସ୍ୱର୍ଣ୍ଣପକ୍ଷ ଗରୁଡ଼ ମୁଁ, ମୋର
ପୃଷ୍ଠେ ସୁଧାର ମହାଝରି,
ଜୀବନେ ଜୀବନେ ଚାଲିଥିବି ଏଇ
ସୁଧା ବଣ୍ଟନ କରି କରି ।
ବନ୍ଧନ ମୋର ନାହିଁ ନାହିଁ,
ଏକ ବନ୍ଧନ ପ୍ରତିଟି ଲୋକରେ
ଆନନ୍ଦ ବେଣୀ ଯିବି ବାହି । ୪ ।

ମୁକ୍ତ ମୁଁ, ଚିର ଜାଗ୍ରତ ଚିର-
ଗତିଶୀଳ, ଶେଷ ନାହିଁ ମୋର,
ସୃଷ୍ଟିର ମହା ପଥିକ ମୁଁ ମହା-
ସୃଜନେ ଚିର ମୋର ଭୋକ ।
ଏକକର ନୁହେଁ ସମଗ୍ରର ମୁଁ,
ଦେଶ କାଳାତୀତ, ମୁକ୍ତ-ହିୟ,
ଦେଶେ ଦେଶେ ନୁହେଁ, ଲୋକେ ଲୋକେ ପ୍ରେମ
ବିତରିବି, ମୁଁ ଯେ ବିଶ୍ୱ-ପ୍ରିୟ ।
ଏତେ ଦିନେ ନିଜ ପଥ ପାଇ
ମହାବିହଙ୍ଗ ପ୍ରାଣର ଆବେଗେ
ମହାବ୍ୟୋମେ ଯାଏ ଗାଇ ଗାଇ । ୫ ।

## ଆନନ୍ଦେ ଗୀତ ଗାଆ

ଖଂଜ ତୁ ଯଦି, ଗଂଜିତ ଅବା
ଦୁର୍ଜନ ଖଳ ବାଣୀରେ,

ରଂଜିତ ଯଦି ଗଣ୍ଡ ତୋହର
ଉଷ୍ଣ ଲୋତକ ବେଣୀରେ
ଚିର ପ୍ରତିକୂଳ ଯଦିରେ ଜୀବନ-ବାଆଁ
ଆନନ୍ଦେ ଗୀତ ଗାଆରେ ଚିତ୍ତ
ଆନନ୍ଦେ ଗୀତ ଗାଆ । ୧ ।

ସେହି ରେ ପରମ ସିଦ୍ଧି ଜୀବନେ—
ଦୁର୍ଦ୍ଦିନ ଗୁରୁ ଦହନେ,
ଖୋଜି ପାଇବାର ଆନନ୍ଦଧାର
ଦୁଃଖର ମରୁ ଗହନେ ।
ତୋର ଚାରିପାଖେ ଜନତାର ହାଟେ
ଘଟୁ ଘଟିବାର ଯାହା,
ଆନନ୍ଦେ ଗୀତ ଗାଇ ଚାଲ ତୁ'ରେ
ଆନନ୍ଦେ ଗୀତ ଗାଆ । ୨ ।

ଆରେ ସାଥୀହୀନ, ଜାଣ ରାତିଦିନ
ଅଜ୍ଞାତ ଏକ ମାଆର
କରୁଣ, ପରମ, ସରସ-ପରଶ
ଡାକିଯାଏ ସ୍ନେହ-ଜୁଆର ।
ଫିଟାଇ ହିଆର କବାଟ ବୋହି ନେ ତାହା,
ଆନନ୍ଦେ ଗୀତ ଗାଇ ଚାଲ ତୁ'ରେ
ଆନନ୍ଦେ ଗୀତ ଗାଆ । ୩ ।

ଗାଆ ଆଲୋକର, ଗାଆ ଖ-ଲୋକର,
ଆନନ୍ଦଭରା ଲହର,
ସମ-ପୀଡ଼ିତର ଦୁରିତ ପାଇଁ ରେ
ପୂତ, ମଂଜୁଳ କୋହର (୧)
ଜଗତର କବି ଅଲକ୍ଷ୍ୟେ ତୋର ସାହା,
ଆନନ୍ଦେ-ଗୀତ ଗାଆରେ ଚିତ୍ତ
ଆନନ୍ଦେ ଗୀତ ଗାଆ । ୪ ।

---

(୧) କୋହ୍ — ଦେଶଜ ଶବ୍ଦ, ଯାହା ଅବରୁଦ୍ଧ ଶୋକ ଫାଟିପଡ଼ିବାକୁ ବୁଝାଏ । ନିଜ ପାଇଁ ନ ହୋଇ, ସମ-ପୀଡ଼ିତ ପାଇଁ ଯେଉଁ କୋହ, ତାହା ନିଷ୍ଫଳ ହେଲେହେଁ ପବିତ୍ର ଓ ସୁନ୍ଦର ବୋଲି କୁହାଯାଇଛି ।

# ଅର୍ଦ୍ଧଶତାବ୍ଦୀ

ଜୀବନର ମହାପଥେ ପଚାଶ ମାଇଲି,
ଅତିକ୍ରମି, ଆଗେ ପଛେ ଚାହିଁ ମୁଁ ପଚାରେ,
କି ସିଦ୍ଧି ଏ ଜୀବନର, କି ଅବା ବ୍ୟର୍ଥତା
କି ଆଶା ଅଭୁକ୍ତ ଅବା ଚିରେ ଥାଇପାରେ ?

ଜୀବନର ଜମା-ଖର୍ଚ୍ଚ ହିସାବ-ନିକାଶେ
ବାକି କିଛି ରହୁଛି କି, ଦେଇଯିବି ଯାହା
ଆଗାମୀ ମନୁଷ୍ୟ ହାତେ, ଭବିଷ୍ୟ ଜାତିରେ ?
ଧରଣୀର ପଦତଳେ ? — ସ୍ତନ୍ୟ ନ ପିଆଇ,
ହୋଇଅଛି ଏତେ କାଳ ଯେ ମାଟି, ମୋ ମାଆ ।

ନେଇକି ଯାଉଛି ଯାହା ପାଇଛି ଧରାରେ
ତା'ଠାରୁ ଅଧିକ ଦାନ ? ସ୍ନେହେ, ଧନେ, ମାନେ,
ଫେରାଇ ନାହିଁ କି ଯାହା ପାଇଲି ଜୀବନେ ?
ଧରା କି ସ୍ମରିବ ମତେ, ଭିକ୍ଷାଜୀବୀ, ପରପୁଷ୍ଟ ବୋଲି,
ଦୀନ, ଅନୁକମ୍ପନୀୟ, ଘୃଣ୍ୟ ଅବଜ୍ଞାନେ ?

ଜୀବନ-ସଂଗ୍ରାମେ କ୍ଷତ-ବିକୃତ-ସର୍ବାଙ୍ଗ,
ନିଷ୍ପେଷିତ, ଅନ୍ୟାୟିତ, ଚିର ଅଶ୍ରୁସିକ୍ତ,
ହେ ଧରା, କି ଦେଲ ମତେ ବୁଝି ନାହିଁ ପାରେ,
ଉତ୍ତମ ବଞ୍ଚିବା କିସ ଜାଣିନି ଜୀବନେ,
ମୂର୍ଖ, ଦାମ୍ଭିକର ଜୟ, ତୁଙ୍ଗ ଅହମିକା,
ପାଷଣ୍ଡର ଅଭ୍ୟୁଦୟ, ଦେଖିଲି ମୁଁ ଖାଲି ଚାରିଧାରେ,

ଦେଖିଛି ବିକଟ ଦୈନ୍ୟ, ମନୁଷ୍ୟର ବୀଭତ୍ସ ଦୁର୍ଦ୍ଦଶା,
ପ୍ରକୃତିର, ଦେବତାର ଦୀନ ଜନେ ଘୋର ଅତ୍ୟାଚାର,
ଅବଜ୍ଞା, ଲାଞ୍ଛନା ଖାଲି ଘଟିବାର ଭାଗ୍ୟେ ସାଧୁତାର,
ଦେଶ, ମନୁଷ୍ୟର ପାଇଁ କିଛି ମାତ୍ର ନାହିଁ ଯା'ଙ୍କ ଦାନ
ସେହି ହେୟ ଜନ ଭାଗ୍ୟେ ସବୁ ସୁଖ ହେବାର ପରଶା !

ଏଇତ ଜୀବନ ଏଥି ? — ସତ କି ନା କହ ଗୋ ଧରିତ୍ରୀ,
କି ଆଶା ରଖିଛ ଏଥି ହୀନ-ଜାତ, ଦୈନ୍ୟ-ଗ୍ରସ୍ତ ପାଇଁ,
ପ୍ରବଳ, ସୌଭାଗ୍ୟବନ୍ତେ ଜିଣିବାର ସରଜି ବ୍ୟବସ୍ଥା,

ଦରିଦ୍ର, ଦୁର୍ବଳେ ଏଥି ଆଣିଛ କି ? କେବଳ ଆହବେ,
ହୋଇ ଭୂପତିତ, ଦେବେ ପ୍ରବଳରେ ଦମ୍ଭର ବଢ଼ାଇ ?

ଏଇ ତୋ ଜୀବନ-ଛାଞ୍ଚ, ଜୀବମୟୀ ହେ ଧରା ଜନନି,
ଦୁଃଖମୟ, ଦୈନ୍ୟ-ପୂର୍ଣ୍ଣ, ହାହାକାରେ ବୀଭତ୍ସ-ଭୀଷଣ, –
ମୋ ଜୀବନ ଅର୍ଦ୍ଧପଥେ ପଛେ ଚାହିଁ ଭାବେ ତେଣୁ ଆଜି,
ମୁଁ କିବା ବଢ଼ାଇଗଲି ଏ ଧରାରେ ଜୀବର କଷଣ ?
କିଏ ସେ ଉତ୍ତର ଦେବ ? କିଏ ସେ କହିବ ?
କାହିଁକି ମୁଁ ଆସିଥିଲି, କିବା ଦେଲି, ନେଇଗଲି କିବା,
ସାଧିଲି କି ପ୍ରୟୋଜନ ଯୋଜନାରେ ମୂକ ବିଧାତାର ?

ଅଥବା ଯୋଜନା ଖାଲି ଆମ ପରି ନିଃସହାୟ ଯେତେ
କୋଟି କୋଟି ଜୀବ, ଖାଲି ଦୁଃଖ ବୋହି ଜନ୍ମିବା, ମରିବା ?
ନତୁବା ସ୍ରଷ୍ଟାର ଏହି ଲୀଳାଚକ୍ର ସମ୍ଭବିବ କାହୁଁ ?
ଏକ ରାଜା, ଏକ ନେତା, ଏକ ମନ୍ତ୍ରୀ, ଏକ ବଡ଼ ପାଇଁ
ଅଗଣିତ କ୍ଷୁଦ୍ର, ମୂକ, ନାମହୀନ ଜୀବର ସଂସ୍ଥିତି
ପତାକା ଧରିବା ପାଇଁ, ଜୟ ଗାଇ ରହିବା ତ ଚାହିଁ ?

ପଚାରେ ଧରିତ୍ରୀ-ମାତା, ତୋ ମାଟିରେ ଦେଲୁ ଯା ଜନମ
ପଚାଶ ବରଷ ତଳେ ଏଇ ଦୀନ ସାମାନ୍ୟ ଜୀବରେ,
ସେ କି ଖାଲି ସୂତ୍ର ରୂପେ ସୃଷ୍ଟି ଯୋଜନାର,
ବାଷ୍ପପରି ମେଘ ହୋଇ ଲିଭିଯିବା ପୁଣି ନଭତଳେ ?

ଏତେ ଦୁଃଖ, ଏତେ ଅଶ୍ରୁ, ଏତେ ଯାହା ମରମ-ମନ୍ଥନ
ଜୀବନରେ ହେଲା ଭୋଗ, ସବୁ ସେ କି ବି-ଅର୍ଥ, ବି-ଫଳ ?
କିଛି ତା'ର ନାହିଁ ମୂଲ୍ୟ, ସେ କେବଳ ସୂତ୍ରଧର ପାଇଁ
ଏ ବିରାଟ ରଙ୍ଗମଞ୍ଚେ ? ଅଭିନୟ ମାତ୍ର ସୃଜନର ?
ହେଲା ବା ସେ ଅଭିନୟ, ତାନ୍ତ୍ରିକର ତନ୍ତ୍ରେ ପ୍ରଚାଳିତ;
ଆମ ଭୂମିକା ବା ହେଉ ଖାଲି ଯୁଦ୍ଧେ ଭୂମି-ପତନର –
ତଥାପି ସେ ଅଭିନୟେ ଦେଇଛି କି କଷ୍ଟ କାହା ପ୍ରାଣେ ?
ଅବା ମୁଁ ଫେରିବି, ରହି ଅଧମର୍ଣ୍ଣ ଏଇ ଜଗତର ?
ଜାଣେନା ମୁଁ, ଜାଣେନା ମୁଁ ତେବେ ଅଛି ମାତ୍ର ନିଜେ ସଚେତନ,
ମୋର ଅଶ୍ରୁ, ମୋ ଶୋଣିତ, ମୋର ଭସ୍ମ ନୋହି ଅଭିନୟ,
ହେଉ ଦୃଢ଼ ସତ୍ୟ, କରି ଧରା-ମରୁ କିଞ୍ଚିତ୍‌ରେ ହେଲେ
ଉର୍ବରିତ, ଶ୍ୟାମଳିତ, ସୁଖ ଶାନ୍ତିମୟ !

ସତେ କି ଏ ଜୀବନର ଭାଗ୍ୟେ ଅଛି ସେହି ସାର୍ଥକତା ?
ଏ ଦେହ-ଶୋଣିତ ହେବ ଆନନ୍ଦର ବିକଚ-ମନ୍ଦାର,
ଅଶ୍ରୁ ମୋର ଜନଚିତ୍ତରେ ଫୁଟାଇବ ଗ୍ରୀଷ୍ମରେ ମଲ୍ଲିକା,
ମୋ ଦାବ-ଦହନ ଦେବ ଅନ୍ୟ-ପ୍ରାଣେ ଶୀତ ଉପଚାର ?

ଅର୍ଦ୍ଧଶତାବ୍ଦୀର ଏଇ ଯାତ୍ରାପଥେ ଧୂଳି-ଧୂସରିତ
ତେଣୁ ମୁଁ ଜୀବନ-ଯାତ୍ରୀ, ଆପଣାରେ ପୁଚ୍ଛଇ ଆପଣେ,
ହେ ଯାତ୍ରି, ହେ ଅଭିନେତା, ହେ ଧରାର ସାମାନ୍ୟ ପୁତ୍ରକ,
ବଞ୍ଚିବାର ଜମା-ଖର୍ଚ୍ଚ-ଖାତା ତବ ଦେଖିନିଅ ମନେ !

ସାମାନ୍ୟ ହେଲେହେଁ ତୁହି, ଏ ଧରାର ସର୍ବ ଅତ୍ୟାଚାରେ
ଦେଇଯାଅ ପ୍ରତିଦାନ – ଶୁଭାକାଙ୍କ୍ଷୀ ତୋର ଅଶ୍ରୁଧାର,
ପ୍ରାଣର ଆନନ୍ଦ-ବାର୍ତ୍ତା, ସର୍ବ ବିଶ୍ୱେ ପ୍ରେମର ପ୍ରବାହ,
ବିଶ୍ୱର ସାମାନ୍ୟତମେ ନାହିଁ କି ସେ ପୁଣ୍ୟ ଅଧିକାର ?

## ନବ-ମାନବ

ନବ ଜାଗ୍ରତ ମାନବ ଚେତନା, ଅପଗତ ବିଭାବରୀ,
ହେ ନବ ମାନବ ନୂତନ ଧରାରେ ପୂର୍ଣ୍ଣକର ତୋ ଝରି ।
ବିଜୟ ଶଙ୍ଖ ନିର୍ଭୟେ ବଜା ତୁ'ରେ,
ଆନନ୍ଦ ପ୍ରତିଧ୍ୱନି ଉଠୁ ପୁରେ ପୁରେ ।

ପ୍ରକୃତି ଆଜି ପରିଜନ ତୋର, ବିଜ୍ଞାନ କ୍ରୀତଦାସୀ,
ଆଜି ତୋ କୁଟୀର ପ୍ରାନ୍ତେ ମିଳିତ ସ୍ୱପ୍ନର ସୁଖରାଶି ।
କପାଳରେ ହାତ ମାରନା ମାରନା ଆଉ,
ସକଳ ଭୋଗ୍ୟ ଦେବ ତୋ ଦୃପ୍ତ ବାହୁ !

ମୁକ୍ତ ତୁ ଆଜି, ସହସ୍ର ଭୟୁ ସ୍ୱାଧୀନ ତୋହର ଗତି,
ଲୁପ୍ତ ଆଜି ରେ ଯେତେ ଅପମାନ, ତୁଇ ତୋ ଭାଗ୍ୟପତି ।
ଉନ୍ନତମାଥ ଗଗନେ ଚାହାଁ ରେ ଚାହାଁ,
ନରତ୍ୱ ଜୟ ଉଚ୍ଚେ ଘୋଷଣା କର ଟେକି କୋଟି ବାହା ।

# ଆଶ୍ଳେଷ

ମହୋଦଧି କହେ, ''ମାଟି, ତମେ ମୋର,
ସବୁଠୁ ଅଧିକ ବୈରୀ,
ଚାରିଆଡ଼େ ମୋର ବନ୍ଧନ ପାତି
ନଷ୍ଟ କର ମୋ ଶୈଳୀ ।''
ମାଟି କହେ, ''ତମେ ବାରିଧି ମୋ ଘରେ
ସବୁଠୁ ଅବାଞ୍ଛିତ,
ଦେଶ ଦେଶ ମୋର ଉଜାଡ଼ି କରିଛ
ନଷ୍ଟ, ବିଲୁଣ୍ଠିତ ।''
ସୃଷ୍ଟି କହଇ ରହସ୍ୟ-ହସେ,
''କଠିନ, ତରଳ ଦୁଇ
ତମ ଦି'ଜଣର ଘନ ଆଶ୍ଳେଷେ
ସମ୍ଭବ ପରା ମୁହିଁ !''

# ସିନ୍ଧୁ ଓ ବିନ୍ଦୁ

ବିରାଜିତ ମହାସିନ୍ଧୁ ମହାମହିମାରେ
ନଗଣ୍ୟ ବିନ୍ଦୁର କିବା ସମ୍ପର୍କ ତା'ଠାରେ ?

କଳିବାକୁ, ତୁଳିବାକୁ କିବା ପ୍ରୟୋଜନ ?
ବିନୀତ-କ୍ଷୁଦ୍ରତା ସିନା ବିନ୍ଦୁତ୍ୱ ଜୀବନ ?

ବେଳେବେଳେ ବିନ୍ଦୁ କିନ୍ତୁ ଥରେ ଆନନ୍ଦରେ
ଜାଣି, ସିନ୍ଧୁ ଓତପ୍ରୋତ ତା' ନିଜ ଅନ୍ତରେ ।

ବିନ୍ଦୁ ପାଶେ ସିନ୍ଧୁର ଏ ଆତ୍ମ-ପରାଜୟ
ସ୍ରଷ୍ଟାର ଏ ସୃଜନରେ ଶ୍ରେଷ୍ଠ ପରିଚୟ ।

---

# ସ୍ୱରାଜ୍ୟାଶ୍ରମ

## ସ୍ୱରାଜ୍ୟାଶ୍ରମ (୧)

''ନବବାବୁ (୧) ଯାଇଛନ୍ତି ଦିଲ୍ଲୀ
ନିକଟରେ ଆସିବେନି,
ସେଠୁଁ ଯିବେ ଆକାଶରେ ଚିଲ୍ଲୀ,
ଯିବେ ସେଠୁଁ ମାର୍କିନିର (୨) ଦେଶେ
ଡଲାରର ଡିମୋକ୍ରାଶୀ (୩)
ଯହିଁ ନୃତ୍ୟ କରେ ନଗ୍ନ ବେଶେ ।
ଚାହିଁଛନ୍ତି କିଦ୍ୱାଇ ସର୍କାର (୪),
ଉଧାଉନି ଶସ୍ୟ ଅହିଂସାର
ଜାହ୍ନବୀର ମାନ୍ଦା ପଙ୍କେ, ଡେକାନ୍‌ର ଅନୁର୍ବର ଖେତେ,
ନବବାବୁ ଯଦିଚ୍ ଆଣନ୍ତେ
ଡଲାର ମିଶ୍ରିତ ତୀବ୍ର ନୂଆ କିଛି ଫର୍ଟିଲାଇଜର,
ସେଇ ଉଗ୍ର (୫) ୟାଁକି ଦେଶୁ
ପ୍ରତିକାର ହୋଇ ବା ପାରନ୍ତା
ମରୁଡ଼ି ଏ ଅଧା-ପ୍ରାଣ ଗାନ୍ଧି-ଫସଲର ।

କହୁନା କି ଦରକାର ?
ଅଛନ୍ତି ପେସ୍‌କାର,
ପ୍ରାଦେଶିକ କମିଟିର 'ଛନ୍ତି ସେକ୍ରେଟାରୀ,
ତାଙ୍କୁ ଆଗ ଜଣାଅ ଗୁହାରି –''
ଦୂରାଗତ କର୍ମୀ ଛିଡ଼ା ଆଶ୍ରମ-ଚତ୍ୱରେ,

---

୧) ନବବାବୁ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ
୨) ମାର୍କିନି – ଆମେରିକାନ୍
୩) ଡଲାର – ଯୁକ୍ତରାଷ୍ଟ୍ର ଆମେରିକାର ସାଧାରଣ ମୁଦ୍ରାର ନାମ ଡଲାର । ଧନୀଦେଶ ଆମେରିକାକୁ ଅନେକେ ତେଣୁ 'ଡଲାର ରାଜ୍ୟ' କହିଥାନ୍ତି । ଯୁକ୍ତରାଷ୍ଟ୍ର ଗଣତାନ୍ତ୍ରିକ ରୀତିରେ ଶାସିତ । କିନ୍ତୁ କେବଳ ଧନୀଲୋକେ ସେ ଶାସନକୁ ପ୍ରଭାବିତ କରୁଥିବାରୁ ତାହାକୁ ଏଠାରେ ଶ୍ଳେଷରେ 'ଡଲାରର ଡିମୋକ୍ରାଶୀ' କୁହାଯାଇଛି ।
୪) କିଦ୍ୱାଇ ସର୍କାର – ରଫୀ ଅହମଦ୍ କିଦ୍ୱାଇ ସେତେବେଳେ ଭାରତର କୃଷିମନ୍ତ୍ରୀ ।
୫) ୟାଁକି – ଆମେରିକାନ୍‌ମାନଙ୍କର ତାଚ୍ଛଲ୍ୟମିଶ୍ରିତ ନାମ ।

ବୟସର ଭାରେ ନ୍ୟୁବ୍ଜ, ଇନ୍ଦ୍ରଲୁପ୍ତ-ଶୀର୍ଷ (୧)
ମଳିନ ଖଦଡ଼ବାସ, କର୍ଦ୍ଦମାକ୍ତ ପଦ
ଚାଦରେ ବରିତ ତନୁ, ତାଳପତ୍ର ବୃନ୍ତ ଏକ କରେ,
ଆନ କରେ ଝୁଲିଟିଏ, ନୈରାଶ୍ୟ ତା ସକଳ ଅଙ୍ଗରେ ।

ଧୀରେ, ନମ୍ରେ ଭାଷେ ବାଣୀ –
"ନାହିଁ ମୋର କିଛିହିଁ ଗୁହାରି,
ସୁଦୂର କାକଟପୁରୁ ଆସିଥିଲି ଦୀର୍ଘପଥ ଚାଲି,
ନବବାବୁଙ୍କର ସାଥେ କହିବାକୁ ଖୋଲି ମର୍ମକଥା,
ସେଇ ଏକା ବୁଝିଥାନ୍ତେ, ଭାବିଥିଲି, ଏ ପ୍ରାଣର ବ୍ୟଥା ।

ନେବା ଆଗୁଁ ପାର୍ଟିରୁ ବିଦାୟ,
କହିଥାନ୍ତି କଥା ସମୁଦାୟ
ପାଇଥାନ୍ତି ଅବା ସମାଧାନ
ଫେରିଥାନ୍ତି ଶାନ୍ତିରେ ମୋ ଗ୍ରାମ ।
ଏକ ହାତେ ଅଛି ଆଣି ଗାନ୍ଧିରାଜ୍ୟ ସ୍ଥାପନ ଯୋଜନା –
ତା କେବଳ ତାଙ୍କ ପାଇଁ,
ତାଙ୍କ ବିନା କିଏ ଆଉ ସମଜିବ ମର୍ମର ପ୍ରେରଣା ?
ନାହାନ୍ତି ତ ସିଏ,
ଆନ ହାତେ ଆଣିଛି ଯା ଦିଏଁ –
ପାର୍ଟିରୁ ଇସ୍ତଫା ପତ୍ର; ସ୍ୟାହି ନୁହେଁ କଳିଜାର ରକ୍ତ ଦେଇ ଲେଖା,
ଦେଇଦିଅ ପେସ୍କାରଙ୍କୁ,
ନବବାବୁ ଆସିଲେ କହିବ
ଆସିଥିଲା କରିବାକୁ ଦେଖା

କାକଟପୁରର ସେଇ ନିରଞ୍ଜନ ସ୍ୱାଇଁ,
ଦିନେ ଜ୍ୟେଷ୍ଠ ଖରାବେଳେ ଯାଇ
ଯା ସଙ୍ଗେ, ଯା କୁଟୀରରେ ଖାଇଥିଲେ ଶାଗ ଓ ପଖାଳ;
ଆପେ ଆପେ କଂଗ୍ରେସରୁ ସେହି ଗାନ୍ଧିବାଦୀ
ଚାଲିଗଲା ହୋଇ ବହିଷ୍କାର ।"

ମୃଦୁ ହସି ଆଶ୍ରମର ଅଫିସ୍-ବାହକ
ଅଗୂଢ଼ ଶ୍ଳେଷରେ କହେ, "ଲାଭର ମୋଦକ

(୧) ଇନ୍ଦ୍ରଲୁପ୍ତ – ଚନ୍ଦା

ବେଶି ପାଇବାର ଆଶା ଦେଖିଲ କି କମ୍ୟୁନିଷ୍ଟ ମେଣ୍ଟେ ?
କଂଗ୍ରେସ ଫାଇଦା ଆଉ ନାହିଁ ପରା ଅଣ୍ଟେ ?''

ଚେଙ୍ଗା ହୋଇଉଠେ ତା'ର ଅବସନ୍ନ ଅଙ୍ଗ,
ଭୂପତିତ ନେତ୍ର-ଜ୍ୟୋତି ହୁଅଇ ଊର୍ଦ୍ଧଗ,
ସ୍ଫୁଲିଙ୍ଗ ଉଠଇ ଯେହ୍ନେ ତହିଁ,
କ୍ରୋଧ ତା'ର ରୋଧି ନ ପାରଇ,
କହେ ବାଷ୍ପାକୁଳ କଣ୍ଠେ –
''ନେତା ମୋର ପ୍ରାଣର ବାପୁଜୀ,
ତାଙ୍କୁ ଛାଡ଼ି ଆଜି କେଉଁ ସ୍ୱାନେ
କି ଲାଭରେ ଯିବି ମୁହିଁ ପୂଜି ?''

କହି ଏହା ଦୃପ୍ତ ତେଜେ ଫେରାଏ ଚରଣ
ପଛେ ରଖି ସ୍ୱରାଜ୍ୟ ଆଶ୍ରମ,
ଧୀର ହସ୍ତେ ଫିଟାଏ ଫାଟକ,
ସେଇଠାରେ କିନ୍ତୁ ଚିତ୍ତ, ବୁଦ୍ଧି, ହୃଦ ସବୁ ହୁଏ କ୍ଷଣକେ ଅଟକ ।
ବିଚାରା ସେ ଗାନ୍ଧି-ଭକ୍ତ କାହିଁ ଯିବ ଆଜି ?
ସବୁ ଆଶା ପଡ଼ିଛି ତା' ଭାଜି,
ନାହିଁ ଚାହିଁପାରେ ପଛେ, ସମ୍ମୁଖ ତା' ଶୂନ୍ୟ, ନିରାଲମ୍ବ,
ଜୀବନଟା ଆଜି ତା'ର କେବଳହିଁ ପୀଡ଼କ ବିଳମ୍ବ ।
ସେହି ସେ ଆଶ୍ରମ ମାଟି, ପୂତ ଗାନ୍ଧି ଗୋପବନ୍ଧୁ ପଦେ,
ତାକୁ ସେ କି ତ୍ୟଜି ପାରେ ଆପଣା ଇଚ୍ଛାରେ ?
ସ୍ୱର୍ଗ ସେ ଯେ ତାହା ପ୍ରତି, ସ୍ୱର୍ଗ ଯଦି କାହିଁ ଥାଇପାରେ !
ନା ନା, ନା ନା, . . .
ତାହା . . . ତାହା . . . କେମନ୍ତେ କରିବ ?
ଗରିବ ଜୀବନ ତା'ର ହେବ ସିନା ଆଉରି ଗରିବ ।
ବାପୁଜି-ସଂପର୍କ ଗଲେ ତା ଜୀବନେ କିବା ମୂଲ୍ୟ ଥାଇ ?
ଭାବେ ଘୋରେ ନିରଞ୍ଜନ ସ୍ୱାଇଁ,
ଗଣ୍ଡଗୋଳ ଅତି ମସ୍ତକରେ,
ଭାବି କିଛି ନାହିଁ ପାରି, ବସିପଡ଼େ ଅତ୍ୟନ୍ତ କାତରେ
ଫାଟକର ସୋପାନ ଉପରେ ।

ଦୂରୁ ଥାଇ ଆଶ୍ରମର ନୂଆ କର୍ମଚାରୀ
କହେ ସାଙ୍ଗେ ଠାରି,

''ଲୋକଟା ଏ ପାଗଳ ନା କ'ଣ ?
ପାର୍ଟିରୁ ଇସ୍ତଫା ଦେଇ,
ଫାଟକରେ ପାତୁଛି ଆସନ !''

## ସ୍ୱରାଜ୍ୟାଶ୍ରମ (୨)

ବାହୁର ବନ୍ଧନୀ ମଧ୍ୟେ, ଜାନୁ-ଯୁଗ୍ମେ ନିବେଶି ମସ୍ତକ
ନିମ୍ନ-ମୁଖ, ବଦ୍ଧ-ନେତ୍ର, ନିଜେ ହୋଇ ନିଜ ସମୀକ୍ଷକ,
ନିରଞ୍ଜନ ଭାବିଚ୍ଛାଲେ,
କାକଟପୁରର ସେହି ନିରଞ୍ଜନ ସ୍ୱାଇଁ
ସେହି ସେ ଆଶ୍ରମ ଦ୍ୱାରେ, ସଂଜ୍ଞା ତା'ର ନାହିଁ;
କିଏ ଯାଏ, କିଏ ଆସେ,
ବିନ୍ଦୁ ବିନ୍ଦୁ ସ୍ୱେଦ ଉଠି ଭାସେ
ଇନ୍ଦ୍ରଲୁପ୍ତ ମସ୍ତକରେ ତା'ର
ଜଟିଳ, ପଙ୍କିଳ କ୍ରମେ ହୁଏ ତା'ର ଭାବନାର ଧାର ।

ପଶ୍ଚାତ୍‌ର ସମଗ୍ର ଜୀବନ
ମେଲାଇ ମେଲାଇ କିଏ କରି ପ୍ରଦର୍ଶନ
ତ୍ୱରିତେ ତ୍ୱରିତେ ତା'ରେ ଯାଉଛି ଦେଖାଇ –
ବାଧ୍ୟ ହୋଇ ଦେଖୁଛି ତା ନିରଞ୍ଜନ ସ୍ୱାଇଁ ।

ଏଇ ଦେଖେ କିଶୋର ସେ, ଉଦାସ ପରାଣ
ଖେଳ ଓ ଭୋଜନ ଛଡ଼ା ନାହିଁ ଥିଲା ଅନ୍ୟ ବଡ଼ ଧ୍ୟାନ,
କାଲିପରି ଲାଗେ ଯେହ୍ନେ ଦୂର ସେ ପୁରାଣ,
ତିରିଶ ବରଷୁଁ ବେଶି ହେବ ପରା ଦୀର୍ଘ ବ୍ୟବଧାନ ।

ଦିନେକ ଇସ୍କୁଲେ ଯାଏ ଭାବି ଭାବି ଫୁଟ୍‌ବଲ ଖେଳ,
ଇସ୍କୁଲକୁ ଯାଉଁ ଯାଉଁ ହେଉ ସ୍କୁଲ ବେଳ,
ଘଣ୍ଟା ଏଇ ବାଜେ ପରା । ପ୍ରଥମରେ ପଣ୍ଡିତଙ୍କ କ୍ଲାସ,
ଆଜି ସେ କରିଛି ପଢ଼ା, ନାହିଁ ତେଣୁ ଲେଶ ଆଜି ତ୍ରାସ;
ପକେଟରେ ଉପଢୌକନ
ଅଛି ପୁଣି ଘେନିବାକୁ କେଉଁ ସାଙ୍ଗ ମନ ।
ଆଜି ଏ ଦିନଟି ସେ ଯେ ସବୁ ପାଇଁ ନିତାନ୍ତ ପ୍ରସ୍ତୁତ,
ଫୂର୍ତ୍ତି ତା ମୁଖ କରେ ତେଣୁ, ଗତି ତା'ର ଦ୍ରୁତ ।

ଚାଲିଅଛି ନିରଞ୍ଜନ ସ୍ୱାଇଁ,
ଉଦାସୀନ, ଚିତ୍ତେ ଭାରା ନାହିଁ।
ହଠାତ୍ ଶୁଭିଲା ତା'ର କର୍ଣ୍ଣେ
ପରିଷ୍କାର, ସ୍ପଷ୍ଟ ବର୍ଣ୍ଣେ ବର୍ଣ୍ଣେ
''ମହାତ୍ମା ଗାନ୍ଧି କୀ ଜୟ'' – ''ଆଲ୍ଲା ହୋ ଆକ୍‌ବର''
ନିରଞ୍ଜନ ଚାହେଁ ତରତର।
ଦେଖେ ପାର୍ଶ୍ୱେ କଚେରି ହତାରେ
ଅନେକ ଲୋକର ମେଳା,
ଘଉଡ଼ାଏ ପୋଲିସ୍ ହୁଁକାରେ।
ଏଇ ପୁଣି ଦେଖେ ତହିଁ ଉନ୍ମତ୍ତ ଜନତା
ଧାଇଁ ଚାଲେ ପଛ ଧରି କା'ର,
ଜନତାରେ ପଶି ଠେଲି ନିରଞ୍ଜନ ଦେଖେ ଚାରିଆଡ଼।
ଦେଖେ ହାୟ ଶାନ୍ତ ସୌମ୍ୟ ଗୋପବନ୍ଧୁ ଦାସ,
ହାତେ ତାଙ୍କ ହାତକଡ଼ି, ମୁଖେ ନାହିଁ ହାସ,
କଟିରେ ସୁଦୃଢ଼ ରଜ୍ଜୁ, ନେଉଛନ୍ତି ଟାଣି
ଭାରତୀୟ କଟୁଆଳେ, ବିଦେଶୀ-ଆଶ୍ରିତ –
ଲାଜେ ନତ ତାହାଙ୍କ ଚାହାଣି।
ରଶ୍ମିବନ୍ଧ କଟି ଆଉ ହାତେ ହାତକଡ଼ି,
ନିର୍ଦ୍ଦୟ ପୋଲିସ୍ ନିଏ ଗୋପବନ୍ଧୁ ଦାସେ –
ବଦ୍‌ମାଏସ୍ କିନା !
ବ୍ରିଟୀଶର ରାତ୍ରି ଏବେ କଟେ ନିଦ୍ରା ବିନା
ଏଇସବୁ ଭୟଙ୍କର ପାଜିଙ୍କର ପାଇଁ
ତେଣୁ ରାଷ୍ଟ୍ର-ଚାଳନାର ଆଦର୍ଶ ଦେଖାଇ
ବ୍ରିଟୀଶ୍ ପୋଲିସ୍ ଏଇ ଧରିନିଏ ପ୍ରଜାଙ୍କ କଲ୍ୟାଣେ
ବଜ୍ଜାତ୍ ସେ ଗୋପବନ୍ଧୁ ଦାସେ ଅପମାନେ।
ରୋଧିବାକୁ ପ୍ରତାପୀ ରାଜାରେ
ରଖିବାକୁ ପ୍ରାଣର ନେତାରେ
ଜନତାର କାହିଁ ବଳ, ନିରସ୍ତ୍ର ସେ କଟା ହସ୍ତପଦ,
କେବଳ ସେ ମନ୍ତ୍ର ଘୋଷେ ମୁକ୍ତି ଅଭୟଦ –
'ମହାତ୍ମା ଗାନ୍ଧି କୀ ଜୟ' 'ଜୟ ହେଉ ଗାନ୍ଧି ମହାତ୍ମାର'
ସେହି ଜଣକର ଜୟେ ଜୟ ଯେହ୍ନେ ବିରାଟ ପ୍ରଜାର।

ଏଇ ଏଇ ଗଳା ଘେନି ପୋଲିସ୍ ନେତାରେ
ସହସ୍ର ଓଷ୍ଠରୁ ଖାଲି ଥରି ଥରି ପ୍ରଣବ ନିକାଳେ –
'ମହାତ୍ମା ଗାନ୍ଧି କୀ ଜୟ'
'ଜୟ ଗାନ୍ଧି ମହାରାଜାଙ୍କର';
ସେ ଧ୍ୱନି ଥରାଏ ଥର ଥର
କିଶୋର ସେ ନିରଞ୍ଜନ ଉଦାସୀନ ପ୍ରାଣ
ନେତ୍ର ତା'ର ଅଶ୍ରୁ-ସିକ୍ତ, ବିସ୍ଫାରିତ-ଘ୍ରାଣ ।

ଇସ୍କୁଲେ ସେ ନ ପାରିଲା ଯାଇ
ଫେରିଲା ସେ ବିପରୀତେ ଯେହ୍ନେ ଏକ ଟାଣ ଧକ୍କା ଖାଇ ।
ଭୁଲିଗଲା ପ୍ରିୟ ଫୁଟ୍-ବଲ୍,
ଭୁଲିଗଲା ହୃଦୟ ଦୋସର,
ଅନ୍ୟ ସେ କିଶୋରଟିକି ଯା ଲାଗି ସେ ଛୋଟ ଉପହାର
ଏତେ ଯତ୍ନେ, ଏତେ ସ୍ୱପ୍ନେ କରିଥିଲା ଆଦରେ ଯୋଗାଡ଼ ।

ଚାଲେ ସିଧା ସ୍ୱରାଜ୍ୟ ଆଶ୍ରମେ,
ଭକ୍ତିଭରେ ଆନତେ ପ୍ରଣମେ
ସେ କେଉଁ ନେତାର ପଦେ, ସଁପି ତା'ର ସମଗ୍ର ଜୀବନ,
କଂଗ୍ରେସରେ ମିଶିବ ସେ, ଗାନ୍ଧି ପାଇଁ ବରିବ କଷଣ ।

ପିତାଙ୍କର ଅଭିଶାପେ, ଜନନୀଙ୍କ କରୁଣ କ୍ରନ୍ଦନେ
ପ୍ରତିବେଶୀ ଛି-ଛି-କାରେ, ପଛେ ରଖି ସକଳ ବନ୍ଧନେ,
ଦୁର୍ଦ୍ଦାନ୍ତ ଖେଳାଳି ସେଇ ନିରଞ୍ଜନ ସ୍ୱାଇଁ
ହେଲା ଶାନ୍ତ, ଦୃଢ଼ବ୍ରତ, ଅହିଂସ ସୈନିକ
ଖାଲି ଗାନ୍ଧି,
ଖାଲି ଗାନ୍ଧି ପାଇଁ ।

ସୁସ୍ଥ, ସୌମ୍ୟ ସେ କିଶୋର ସେହି ନିରଞ୍ଜନ,
ଅବୟସେ ବୃଦ୍ଧ ଆଜି, ଇନ୍ଦ୍ରଲୁପ୍ତ ଶିର
ଦରିଦ୍ର କୁଟୁମ୍ବଭାରେ ଚିତ୍ତ ତା ଆଚ୍ଛନ୍ନ,
ଦୈନନ୍ଦିନ ବସନ ତା ଖଦଡ଼ର ଚୀର !
ସମସ୍ତ ଆପଦେ କିନ୍ତୁ ଜଳୁଥାଇ ଦୃପ୍ତ ଅଗ୍ନି-ଶିଖା,
ସେହି ଦେଉଥିଲା ଆଶା, ଆଲୋକ ଓ ଶିକ୍ଷା,–
ଗାନ୍ଧିରାଜ୍ୟ-ସ୍ଥାପନ-ସ୍ୱପନ,
ଅଧର୍ମ, ଅନ୍ୟାୟ, ମିଥ୍ୟା, ଦୌରାତ୍ମ୍ୟର ହେବ ସମାପନ,

ରାମରାଜ୍ୟ ଗ୍ରାମରାଜ୍ୟ ହେବ ପ୍ରତିଷ୍ଠିତ,
ପୀଡ଼କ ରହିବେ ନାହିଁ, ନଥିବେ ଶୋଷିତ,
ସ୍ୱୟଂପୁଷ୍ଟ ଗ୍ରାମ ଓ ନଗର,
ସମଗ୍ର ଶାସନ ହେବ ସତ୍ୟ ଆଉ ସେବା ମନୋହର ।

ଯେ ସ୍ୱପ୍ନର ଅନ୍ତଃସ୍ରୋତ ରଖିଥିଲା ଜୀବନେ ଉର୍ବର,
ସେ କି ଆଜି ଶୁଖିଆସେ ?
ହୋଇଛି ସେ ଆଜି ମାତ୍ର ପଙ୍କିଳ ପଲ୍ୱଳ !
ସ୍ୱଚ୍ଛ ତହିଁ ଜଳ,
ଅଧିକାଂଶ ଭରା ମାତ୍ର କୁତ୍ସିତ କର୍ଦ୍ଦମେ
ବୋଲି, ଭାବି ବ୍ୟଥିତ ସେ ଆଜି ଅତି ମର୍ମେ ।

ନଗଣ୍ୟ ସେ ଗାନ୍ଧିବାଦୀ ନିରଞ୍ଜନ ସ୍ୱାଇଁ
ଆଶ୍ରା, ଆଶ୍ୱାସନା ନାହିଁ ପାଇ
ଫାଟକ ପାହାଚେ ବସି ଗାନ୍ଧି-ଆଶ୍ରମର
ଭାବେ ଘୋର, କି ହୋଇବ ଯୋଜନା ତା' ଆଗାମୀ ଦିନର ?
ସବୁ କିନ୍ତୁ ଅତି ଗଣ୍ଡଗୋଳ,
ଚିନ୍ତା ତା'ର ନାହିଁ ପାଏ ଓର,
ମୁଣ୍ଡ ଟେକି ମୁଣ୍ଡ ପୋତୁଥାଇ
କିନାରା ପାଇବ ବୋଲି ନିରଞ୍ଜନ ସ୍ୱାଇଁ ।

## ସ୍ୱରାଜ୍ୟାଶ୍ରମ (୩)

"ଶୁଣ ନିରଞ୍ଜନ ଭାଇ, ଫେରିଛି ମୁଁ ଦେଶ ଦେଶ ବୁଲି,
ତମ ଲାଗି ଆଣିଛି ସନ୍ଦେଶ,
ମନ୍ତ୍ରୀ ନୁହେଁ, ପୂର୍ବର ସେ ସାଥୀ ବୋଲି ଯାଅ ନାହିଁ ଭୁଲି,
ଅବିଶ୍ୱାସ ଛାଡ଼ ଭାଇ, ନାହିଁ ରହୁ ନୈରାଶ୍ୟର ଲେଶ ।"

ଆଶ୍ରମର ଏକ କକ୍ଷେ ଅର୍ଦ୍ଧ-ସଂଜ୍ଞ ରହି
ଶୟାନ ସେ ନିରଞ୍ଜନ, ଉତପ୍ତ ସର୍ବାଙ୍ଗ,
ବେଳେବେଳେ ମେଲେ ଆଖି, ପ୍ରଳାପରେ କହି
'ଇସ୍ତଫା', 'ବାପୁଜୀ', 'ପିଲେ', 'ଗାଆଁ', 'ପାର୍ଟି', 'ସାଙ୍ଗ' !
ଅଚେତନ ହୋଇ
ପଡ଼ିଥିଲା ନିରଞ୍ଜନ ସ୍ୱାଇଁ,

ସେହି ସେ ସ୍ୱରାଜ୍ୟାଶ୍ରମ ଫାଟକ ପାହାଚେ,
ଝୁଲି ଆଉ ତାଳବୃନ୍ତ-ଛତ୍ର
ପଡ଼ିଥିଲା ରାସ୍ତାକର ଘାସେ ।
ଭାଗ୍ୟେ କେ ପୁରୁଣାକର୍ମୀ ଚିହ୍ନିପାରି ତା'ରେ
ସୁସ୍ଥ, ସଂଜ୍ଞ କରିବା ଆଶାରେ
ଘେନିଗଲେ ଆଶ୍ରମରେ । ସେଭୁଁ କିନ୍ତୁ ଛାଡ଼ି ନାହିଁ ଜ୍ୱର,
ଯଦିବା ଅଭାବ ନାହିଁ ସେବା, ଔଷଧର ।
ପାଖକେ ଆଚାର୍ଯ୍ୟଦେବ (୧) ବସି ଶିରପାଶେ
ଦେଉଛନ୍ତି ଜଳପଟି, ଦେଖନ୍ତି ଉତ୍ତାପ,
ଆନ ପାଶେ ନବବାବୁ ଡାକୁଛନ୍ତି ନାମ ଧରି ତା'ର
କହନ୍ତି ଆଶାର କଥା ନେବାକୁ ତା ଚିତ୍ତର ସନ୍ତାପ ।
କହୁଛନ୍ତି ନବବାବୁ ନିରଞ୍ଜନେ ଶୁଣାଇ ଶୁଣାଇ,
''ଶୁଣ ଭାଇ ନିରଞ୍ଜନ, ବ୍ୟର୍ଥତାର ଅବକାଶ ନାହିଁ ।
ଏ ଧରାର ସର୍ବାଞ୍ଚଳେ, ଜାତି ଜାତି ଅନ୍ତରେ ଅନ୍ତରେ
ବାପୁଜୀଙ୍କ ମହାବାଣୀ ଧୀରେ ଧୀରେ ଅଲକ୍ଷ୍ୟେ ସଞ୍ଚରେ ।
ମସ୍କୋ, ଓ୍ୟାଶିଙ୍ଗ୍‌ଟନେ
ଟୋକିଏ, ଲଣ୍ଡନେ,
ବିପୁଳ ସମରସଜ୍ଜା, କୂଟ-ବାୟୁ ତଳେ,
ନରନାରୀ ଆତଙ୍କରେ ଥରେ,
ବିଶ୍ୱଗ୍ରାସୀ ବିନାଶର ଚିତ୍ର ଅନୁମାନି
ହିଂସୋନ୍ମତ୍ତ, ସ୍ୱାର୍ଥପର, ଭୋଗଲୁବ୍ଧ, ବିଜ୍ଞାନଗରବୀ
କ୍ରୋଧଭ୍ରାନ୍ତ, କୁଟିଳ ଏ ସଭ୍ୟତାର ପରିଣତି ଜାଣି ।
ତାହାହିଁ ତ ଦେଖିଲି ସର୍ବତ୍ର,
ଅନ୍ତରେ ଅନ୍ତରେ ସର୍ବେ ଖୋଜୁଛନ୍ତି ବାପୁଜୀଙ୍କ ହସ୍ତ,
କେବେ ହେବ ଗାନ୍ଧିବାଦ କର୍ମେ ପରିଣତ,
ବିଜ୍ଞାନ-ଭୀଷଣ ଏହି ହିଂସ୍ର ପୃଥିବୀରେ
ସେହି ହିଁ ତ ଅଭୟ ମହତ ।
ଅନ୍ୟ ପନ୍ଥା ନାହିଁ,
ଧୀରେ ଧରା ହେଉଛି ରେ ଅଲକ୍ଷ୍ୟରେ ସେହି ପଥାଶ୍ରୟୀ ।
କରେ ମୁଁ ବିଶ୍ୱାସ ତେଣୁ ବାପୁଭକ୍ତ ଭାଇ ନିରଞ୍ଜନ,
ସ୍ୱରାଜ୍ୟ କେବଳ ନୁହଁ, ବିଶ୍ୱରାଜ୍ୟ ହୋଇବ ସ୍ଥାପନ

(୧) ଉତ୍କଳର ପ୍ରସିଦ୍ଧ ଜନସେବକ ଆଚାର୍ଯ୍ୟ ହରିହର ଦାସଙ୍କୁ ଲକ୍ଷ୍ୟକରାଯାଇଛି ।

ବାପୁଜୀର ଆଦର୍ଶରେ,
ମୈତ୍ରୀ ବର୍ଷି ଦେଶ-ଦେଶାନ୍ତରେ,
ହିଂସାର ବ୍ୟର୍ଥତା ବୁଝି ଅନ୍ତରେ ଅନ୍ତରେ
ଶ୍ୱେତ, ରକ୍ତ, ଅବିଳମ୍ବେ ପରସ୍ପରେ ଦେବେ ଆଲିଙ୍ଗନ ।
ଯାଙ୍କି ଦେବ ଡାକ ସୋଭିଏତେ
"ଆସ ଭାଇ କମ୍‌ରେଡ଼୍, କି ଲାଭ ଏ ସୁନ୍ଦର ଜଗତେ
ନିଜ ନିଜ ରକ୍ତେ କରି କୁତ୍ସିତ, ବୀଭତ୍ସ ?
ଧ୍ୱଂସ କରି ଗଠିତ ସଭ୍ୟତା ?
ବିକ୍ଷତ ବକ୍ଷରୁ ନିକି ବଡ଼ ନୁହେଁ ବକ୍ଷର ମମତା ?
ସନ୍ଦେହ, ଆଶଂକା, ଭୟେ ବଞ୍ଚି ବଞ୍ଚି କିବା ଲାଭ ଭାଇ ?
ଏ ଧରା ପ୍ରଶସ୍ତ ସର୍ବେ ଆନନ୍ଦରେ ବଞ୍ଚିବାର ପାଇଁ !
କିବା ଲାଭ ହିଂସି ପରସ୍ପରେ ?
ବିଶ୍ୱରାଷ୍ଟ୍ର ସ୍ଥାପିବା କୌଶଳେ,
ବଂଧୁତ୍ୱ, ବିଶ୍ୱାସ ସ୍ପର୍ଶେ ମାରଣ ଯା' ହୋଇବ ତାରଣ,
ଦେଶେ ଦେଶେ ହେବ ଖାଲି ନରତ୍ୱର ଜୟ ଉଚ୍ଚାରଣ ।
କ୍ଷୁଦ୍ର, ରିକ୍ତ, ନଗ୍ନ ଗାନ୍ଧି ନୁହେଁ ଉପେକ୍ଷାର
ଧରା ତାକୁ ଚତୁର୍ଦ୍ଦିଗୁଁ କରେ ନମସ୍କାର,
ଆମର କୁଚକ୍ର ଜାଲେ, ଅହଂକାରେ ନାହିଁ ଭାଇ, ସତ୍ୟ,
ସତ୍ୟ ଅଛି କ୍ଷୀଣ, ନମ୍ର ବାକ୍ୟରେ ତାହାର ।
ଶୁଣିବାକୁ ହେବ ଶେଷେ ତାହା
ଯଦି ଚାହୁଁ ଏ ବସୁଧା ହେବ ସଭ୍ୟ ମନୁଷ୍ୟର ବାସ,
ମନୁଷ୍ୟେ ପଶୁରୁ ଯଦି ରଖିବାକୁ ଚାହୁ ବ୍ୟବଧାନେ,
ଅହିଂସା, ସତ୍ୟକୁ ନେବୁ ରାଷ୍ଟ୍ରେ ଓ ଜୀବନେ,
ହିଂସା ଓ ମିଥ୍ୟାର ଶେଷ କେବଳ ବିନାଶ !
ଆସ କମ୍‌ରେଡ୍
ମାନବମଙ୍ଗଳ ଯଦି ଲକ୍ଷ୍ୟ ଭାଇ ତମର ଆମର
ତ୍ୱରିତେ ସମାପ୍ତ କର ଏ ବୀଭତ୍ସ, ଘୃଣ୍ୟ, ସ୍ୱୟଂଗ୍ରାସୀ
ହିଂସା ଆଉ କୂଟନୀତି ଖେଳ ।"
ଚାଷୀ ତମେ ନିରଞ୍ଜନ, ଦେଖୁଥିବ ବର୍ଷ-ବର୍ଷାନ୍ତରେ
କୃଷକ ବୁଣଇ ବୀଜ, ଶସ୍ୟ ପାଏ ବହୁକାଳ ପରେ ।
ଚିନ୍ତାର ସତ୍ୟର ବୀଜ,
ସେହିପରି କାଳେ ଫଳ ଧରେ ।

ନିବାର, କଣ୍ଟକମୟ ଏ ଧରାର କୋଟି ହୃଦ ଚଷି
ସତ୍ୟର ପ୍ରେମର ବୀଜ ବୁଣିଦେଇ ଗଲେ ସେ ସନ୍ୟାସୀ,
ଧୈର୍ଯ୍ୟ ଧର ନିରଞ୍ଜନ, କାଟିବାକୁ ନୁହ ତରତର
ଧର୍ମରାଜ୍ୟ-ସ୍ୱର୍ଣ୍ଣ-ଶସ୍ୟ, କାଳ ଜାଣି ପାଚିବ ଫସଲ,
ଆମେ ନ ଭୋଗିଲେ ମଧ ଭୋଗିବେ ସେ ଆମ ବଂଶଧର ।

କ୍ଷମତାର ଆସକ୍ତି ଓ ସ୍ୱାଦ,
ମାନୁଛି ମୁଁ ଖାଇ ପାଇ କରିଅଛୁ ଅନେକ ପ୍ରମାଦ,
ବାପୁଜୀର ପୁଣ୍ୟ-ସ୍ରୋତେ ଉନ୍ମାଦରେ ଯାଇଛୁ ଉଜାଣି,
ତାଙ୍କରି ପ୍ରତିମା ତଳେ ଦଳିଅଛୁଁ ତାଙ୍କ ମହାବାଣୀ ।
ଧୀରେ କିନ୍ତୁ ଯିବୁ ଚାଲି ଆଦ୍ୟର ଉଗ୍ରତା – !''

ଏ କି ? ଏ କି ? ନିରଞ୍ଜନ କହ କହ କଥା,
କିଏ ଅଛ ? ଯାଅ ଧାଇଁ ଡାକରେ ଡାକ୍ତର,
ଏ କି ହୁଏ ନିରଞ୍ଜନ ! ହାତଗୋଡ଼ ହୁଏ ଥରଥର !

X X X

ଗଭୀର ବିଷାଦେ ମଗ୍ନ ସ୍ୱରାଜ ଆଶ୍ରମ
ଟ୍ରାଜେଡ଼ି (୧) କଷଟି ଦିଏ ତହିଁ ପ୍ରତି ମର୍ମ,
ଶ୍ମଶାନେ ସଁପିବେ ସାଥୀ, ବ୍ୟସ୍ତ କତିପୟ
ଅଧିକାଂଶ ଅଧୋମୁଖ, ଆଛନ୍ନ-ହୃଦୟ ।
କେହି ପାଶେ ନାହିଁ,
ଦୁଃଖୀ ନିରଞ୍ଜନ ପାଶେ, ନତଜାନୁ ତା ଆଡ଼କୁ ଚାହିଁ
ଦେଶର ପ୍ରଧାନ ମନ୍ତ୍ରୀ ବସିଛନ୍ତି, ନେତ୍ରୁ ବହେ ଧାର
ଅନୁତାପ ଅବା କରୁଣାର ।
କରବଦ୍ଧ ପ୍ରାର୍ଥନାରେ, ବାଣୀ ଫୁଟେ ମରମ ବିଦାରି –
''ହେ ନେତା, ହେ ବୁଦ୍ଧ, ଶୁଦ୍ଧ, ଧର୍ମପଥଚାରୀ,
ହେ ବାପୁ, ହେ ଅବତାର ମାନବସେବାର,
ସ୍ୱର୍ଗରାଜ୍ୟ ସ୍ୱପ୍ନ ଯେ ପ୍ରଚାର
କଲ ଏ ପାପର ମର୍ତ୍ତେ, ହେବ କି ତା ସତ୍ୟ,
ହିଂସା, ସ୍ୱାର୍ଥ, ଅନାଚାର, ଈର୍ଷା, ଅହଙ୍କାର
ଭ୍ରାନ୍ତ ମାନବର ଯହିଁ ଦୈନନ୍ଦିନ ପଥ୍ୟ ?
ଗଲ ତୁମେ, ଗଲା ଏହି ସାଥୀ ନିରଞ୍ଜନ

(୧) ଟ୍ରାଜେଡ଼ି – ଇଂରାଜୀ ଶବ୍ଦ, ଅର୍ଥ ବିଷାଦାନ୍ତକ ନାଟକ ।

ନାହିଁ ଦେଖି ଗାନ୍ଧିରାଜ୍ୟ ଧରାରେ ସ୍ଥାପିତ,
ଗଲେ ଯେ ସେପରି କେତେ, ରହିଲେ ଯେ ନୈରାଶ୍ୟେ ବ୍ୟଥିତ
ତାଙ୍କ ଚିତ୍ତ-ଲତା ତଳେ ଆଜି ଖାଲି ଝଡ଼ିଲା ସୁମନ !
କେବେ ? କେବେ ? କେତେ ଦୂର ସ୍ୱର୍ଗରାଜ୍ୟ ତବ ?
ତୁମ୍ଭର କୋମଳ, ଶୁଭ୍ର, ସରଳ ବିଶ୍ୱାସ,
କେବେ ଏ ଧରାରେ, ବାପୁ, ହେବ ତା' ସମ୍ଭବ ?
ତମେ ନାହଁ, ହେଉଛୁଁ ଅଣ୍ଟାଳି,
ତମ ବିନା ଆମର ଗାଣ୍ଡୀବ
ବିଦ୍ରୂପର ହେତୁ ହୁଏ, କାହାକୁ ନମାରି ।
ଧର୍ମରାଜ୍ୟ ଆଶା ଯଦି ରଖ ଉଜ୍ଜୀବିତ,
କରିବାକୁ ସେ ସ୍ୱପ୍ନ ସାଧିତ,
ହେ ପରମ ପ୍ରିୟ ନେତା, ଜାଳ ବୁଦ୍ଧି-ପ୍ରଦୀପ ଚିତ୍ତରେ,
ଶକ୍ତି ଦିଅ କରେ,
ହୃଦୟରୁ ନିଅ ପୋଛି ସକଳ କ୍ଷୁଦ୍ରତା,
କେଉଁଠି ରହୁଛି ଭୁଲ୍,
ଦେଖାଇ ଦିଅ ତା',
ଯେ ପ୍ରମାଦ ଦିଏ ବା ଦେଖାଇ
ତାକୁ ଯେହ୍ନେ କରେଁ କୋଳ, ବୋଲି ପ୍ରିୟ ଭାଇ ।
କିଛି ମାତ୍ର ନାହିଁ ବହି ଦ୍ୱେଷ ଅହଙ୍କାର
ଚିତ୍ତ ସଦା ଚିନ୍ତୁଥାଉ କଲ୍ୟାଣ ପ୍ରଜାର,
ରହିଥାଏଁ ଉପରେ ବା ତଳେ
ଭାବୁଥାଏଁ ସଦା ଯେହ୍ନେ ଅଛ ପାଖେ ପାଖେ,
ତବ କ୍ରୁଶ ଥୋଇ ମୋ ସ୍କନ୍ଧରେ ।''

## ମନ୍ତ୍ରୀର ବେଳ କାହିଁ ?

ଘନ ଘନ ଶୁଭେ ଫୋନ୍-ନିକ୍ୱଣ
ଅଛିନ୍ନ ଦ୍ୱାରେ ପ୍ରାର୍ଥୀ-ମେଳଣ,
ଅଜସ୍ର ଧାର କାର୍ - ଗର୍ଜନ –
ମନ୍ତ୍ରୀର ବେଳ କାହିଁ !
ସ୍କନ୍ଧେ ଧରାଇ ଭାରା ତାଙ୍କର,
ମୂର୍ଖ ବୁଝିବେ କାହିଁ ? । ୧ ।

ନାରୀ-ସଦନରେ ସକାଳେ ଭାଷଣ,
ତା'ପରେ ଶିକ୍ଷ-ମିଶନ-ଭେଟଣ,
ତା'ପରେ ସୂତ୍ର-ଯାଗ ଆୟୋଜନ,
ତା'ପରେ ଆକାଶପଥେ
ଦିଲ୍ଲୀ-ଯାତ୍ରା, — କେନ୍ଦ୍ରରେ ଭେଟ
ବଡ଼ ବଡ଼ ସଙ୍ଗତେ ! । ୨ ।

ତେଣୁ ଫେରୁ ଫେରୁ ନାନା ଅବାର୍ଯ୍ୟ
ଠୁଳ ପଥେ, ଘରେ ଯେତେକ କାର୍ଯ୍ୟ
ମନ୍ତ୍ରୀ ନ ହେଲେ କି କାମ ସାଧ୍ୟ
ହୋଇପାରେ ଏ ଦେଶରେ !
ଦେଶଟା ତ ଖାଲି ମୂର୍ଖରେ ଭରା,
କି'ଟା ହେବ କା' ହାତରେ ! । ୩ ।

''ଜଗନ୍ନାଥ ହେ ଓଡ଼ିଆର ଭାତ
ଖାଇ ଯେ ବସିଛ, ଟେକି ଚାରି ହାତ,
ତବ କରୁଣାରେ ନଇଁଆସେ ମାଥ
ଓଡ଼ିଆ ବାପୁଡ଼ା ପାଇଁ,
ମନ୍ତ୍ରୀ କେତୋଟି ଦେଲ ବୋଲି ସିନା,
ଓଡ଼ିଆର ଧାନ ହୁଏ ବିକାକିଣା,
କେତେ ସେ ହାକିମ ଦେଖେ ଉଡ଼େ ବେଟା,
ଓଡ଼ିଶା ମାଟିରେ ଥାଇ ! । ୪ ।

ଯା କିଛି ଧର୍ମ, କର୍ମ, ବୁଦ୍ଧି
ବଚନେ ବିଚକ୍ଷଣତା, ଶୁଦ୍ଧି,
ମନ୍ତ୍ରୀ କେତୋଟି ମଥାରେ ପୁଞ୍ଜି
ଥିବାରୁ, ଜଗନ୍ନାଥ,
ହୁଏତ ଦେଶଟା ରହିଅଛି ଠିଆ
ନ ହେଲେ ତ ଖାଲି ଚାଲୁଥାଁତେ ଛିଆ,
ଥାଆଁତା ଖାଲି ବା ଘାସ ଆଉ କିଆ,
ଗାଈ, ଘୁଷୁରିର ହାଟ'' । ୫ ।

ଲେଖକ, କବି ବା ଅଜ୍ଞାତ କେ ସେ
ଆସିଛ, ମନ୍ତ୍ରୀ ଭେଟିବ ନିମେଷେ ?
ବ୍ୟବସ୍ଥା କିଛି କରିବେ ଅବା ସେ,

(ସବୁ ଡୋରି ଯାଇ ତାଙ୍କଠି ଶେଷେ) !
"– କିଏ ଅଛ ଚପ୍ରାସୀ !
କହ, ବେଳ ନାହିଁ ରାଜଭବନରେ
ଭୋଜି ବେଳ ହେଲା ଆସି" । ୬ ।

ଗୁରୁ, ଲଘୁ ଜ୍ଞାନ ନାହିଁ ଏ ଦେଶରେ !
କବି, ଗୁଣୀ ଗଣା ମନ୍ତ୍ରୀ ପାଶରେ ?
ଜଳିଯିବେ ନିକି ପ୍ରତାପ ଧାସରେ ?
ପୃଥିବୀର ଭାରା ଝୁଲେ ଯା' କେଶରେ
ତାହାର ସମୟ କାହିଁ,
ଛୋଟ ଲୋକ ଛୋଟ କଥା ଶୁଣି ଶୁଣି
ନଷ୍ଟ କରିବା ପାଇଁ ? । ୭ ।

ଘନ ଘନ ଶୁଭେ ଫୋନ-ନିକ୍ୱଣ
ହାକିମ-ଦଳର ଧାରା ଆଗମନ,
ଡିନର୍-ଲଞ୍ଚ-ମୟ ସେ ଜୀବନ,
ମନ୍ତ୍ରୀର ବେଳ କାହିଁ ?
କବି, ଲେଖକ ବା ଇତର ଓଡ଼ିଆ
ମୁଣ୍ଡରେ କିଛି ଦିଅ ହେ ପିଡ଼ିଆ,
ଏକ ଚିଜ ନୁହେଁ କୋଳି ଓ ନଡ଼ିଆ,
ମନ୍ତ୍ରୀ ଯେ ନୁହେ ତମ ଆମ ପରି ।
ସ୍ମରଣ ରଖ ହେ ଭାଇ * । ୮ ।

## ମୋ ପିଲାଙ୍କ ଭବିଷ୍ୟତ

"କିଛି ତ ବୁଝିଲନି" – ବୋଇଲେ ପତ୍ନୀ
"ପିଲାଙ୍କ ପାଇଁ କେବେ ନୋହିଲ ଯତ୍ନୀ,

* ଲେଖକ ଥରେ କୌଣସି ମନ୍ତ୍ରୀଙ୍କୁ ଦେଖାକରିବାକୁ ଯାଇ, ଖବର ଦେଇ ଓ ବହୁ ବେଳ ଅପେକ୍ଷା କରି ନୈରାଶ୍ୟରେ ଫେରିବା ପରେ ଏହି କବିତାଟି ଲେଖା । ମନ୍ତ୍ରୀ ହେବା ପୂର୍ବରୁ ମହାଶୟଙ୍କ ସହିତ ଲେଖକର ବହୁକାଳର ପରିଚୟ ଥିଲା । ଏହି ମନ୍ତ୍ରୀଙ୍କ ପାଖେ ଆଉଥରେ ଦେଖା କରିବାକୁ ଯାଇ ଲେଖକ ଶୁଣିଲା ଯେ ମନ୍ତ୍ରୀ ଆଦେଶ ଦେଇଛନ୍ତି ତାଙ୍କ ଅଫିସ-କକ୍ଷର ୫୦ ଗଜ ଭିତରକୁ କେହି ଯେପରି ନଆସନ୍ତି । ଘଟଣା କ'ଣ ? କୁହାଗଲା ଯେ ମନ୍ତ୍ରୀ ଓ ତତ୍‌କାଳୀନ ପବ୍ଲିକ୍ ସର୍ଭିସ୍ କମିଶନ୍ ସଭାପତି ଗୋପନୀୟ କଥୋପକଥନରେ ରତ ।

ବନ୍ଧୁଏ ବଡ଼ଲୋକ ହେଲେ ଯେଝାରେ
ମୋ ସାଙ୍ଗେ ମଧ ଚଳୁଛନ୍ତି ମଜାରେ,
ମୁଁ ଏକା ମଲି ତମ ଘରକୁ ଆସି
ମରନ୍ତି ହେଲେ ମହାନଦୀରେ ଝାସି;
ପିଲାଙ୍କ ମୁହଁ ଚାହିଁ ବଞ୍ଚିଛି ଯାହା
ଦେଖିବା ପାଇଁ କିଛି ତାଙ୍କରି ରାହା ।
ସାଙ୍ଗେ ତ ବଡ଼, ତାଙ୍କ ପିଲେ ବି ବଡ଼
ତଳରେ ସଦା ତମେ, ପିଲେ ତମର ।
କାହାନ୍ତକ ମୁଁ ସହୁଥିବି ଏମାନ
କିବା ଜୀବନ, ଯହିଁ ନାହିଁ ସମ୍ମାନ !
ପିଲାଙ୍କ କଥା ଟିକେ ବୁଝ ହେ ଭଲା
ଚିନ୍ତା ନାହିଁ କି, କିଏ ଜିଇଁଲା, ମଲା !''
କହିଲି, – ''କହୁଛ ଯା ନେବ ସମୟ
କରିବି ସମ୍ଭବ ଯା', କିପାଁ ଅଥୟ ?
ପିଲାଙ୍କ ଲାଗି ଦୁହେଁ ନିଶୀଥେ ବସି
କରିଛେ ହୃଦ ଲଘୁ ଅଶ୍ରୁ ବରଷି ।
ସେ କଥା କିପାଁ କ୍ରୋଧେ ହୁଅ ବିସ୍ମର,
ଅଧୈର୍ଯ୍ୟେ କାହିଁ ମିଳେ ଯୋଗ୍ୟ ଉତ୍ତର ?
କେଉଁ ପିଲାର କଥା କହୁଛ କିସ ?
ନାଆଁ ବା କଟିଲା କି ନଦେଉଁ ଫିସ୍ ?''
କହିଲେ ନମ୍ର ହୋଇ ଦୁଃଖିନୀ ମାଆ
''ଫିସ୍, ମୁଁ ଦେଇଅଛି ଯାହାର ଯାହା;
ଫିସ୍ ଖାଲି ସେ ସାନ ପାଇଁ ଯା ପଢ଼େ,
ସେ କଥା କି ଖିଆଲ ନାହିଁ ମନରେ ?
କହୁଚି ମୁହିଁ ବଡ଼ ଦିହିଁଙ୍କ କଥା;
ବଡ଼ ତ ବସେ ହାତେ ଦେଇଣ ମଥା –
ଛଅ-ଛଅଟା କିସ କରିଲା ପାସ
ଚାକିରି ଖୋଜି ଖୋଜି ହେଲା ନିରାଶ ।
ଅକର୍ମା ହୋଇ ବସିରହିଲା ଘରେ
ଭେଟାଅ ହେଲେ କେଉଁ ସାଙ୍ଗ ପାଖରେ –
ଅଛନ୍ତି ଯେ ଆସନେ; କାହାର ପ୍ରାଣେ
ଦୟା ହୋଇବି ପାରେ ଶୁଣି, କେ' ଜାଣେ !

ଶୁଣୁଛି ଏବେ ପାଠ କରୁନି କାଟ,
ଗୋଷ୍ଠୀ, ପୃଷ୍ଠପୋଷକ ଏକହିଁ ବାଟ ।
ତମେ ତ ଜାଣୀଗାଇ ଏକୁଟୀ ବାର୍ତ୍ତା
କିଏ ସେ ମୋ ପିଲାଙ୍କୁ କହିବ, ଆହା !''

କହିଲି, ''ଶୁଣ ସଖି, ଆମ ଦେଶରେ
ଶାସ୍ତ୍ର କହୁଛି ଲୋକେ ଜ୍ଞାନପଥରେ,
ଉଠିବ ଯେତେ ଉଚ୍ଚେ ସେ ଅନୁପାତେ,
କର୍ମର ଭାରା ଖସି ପଡ଼ଇ ବାଟେ ।

କର୍ମ ତେଜିଲେ ଏଠି ମିଳେ ଈଶ୍ୱର,
କର୍ମରେ ବ୍ୟସ୍ତ ଖାଲି ମୂଢ଼ ସକଳ ।
ପୁଅ ତ ଡିଗ୍ରୀ ଆଣି ହୋଇଛି ଜ୍ଞାନୀ,
ହେବ ଅ-କର୍ମୀ ଦେଶ-ସଂସ୍କୃତି ଜାଣି !

ନିତାନ୍ତ ଯଦି ଚାହ କରିବ କିଛି,
ଇସ୍କୁଲ-ମାଷ୍ଟ୍ର କାମ ପଡ଼ିରହିଛି ।
ଗଣନ୍ତି ନାହିଁ କର୍ମ ବୋଲି ତାହାକୁ,
ଆମ ଶାସନେ, ସେଟା ହୁଏ ତୁଚ୍ଛାକୁ ।''

''ବୁଝି ମୁଁ ନାହିଁ ପାରେ'' କହିଲେ ସତୀ,
''ଜ୍ଞାନ-କର୍ମର ଭେଦ ଗହନ ଅତି ।
ବୁଝ ତ ହେଲେ କଥା ମଝିଆଁଟାର
ସେ ତ କବିତା, ଚିତ୍ର କଲାଣି ସାର ।

କି କରେ ଚିତ୍ର, ଲେଖେ କିବା ଯେ ପଦ୍ୟ
ମିଳିବ କିବା ତହୁଁ ତା ପେଟଖାଦ୍ୟ ?''
ବୁଝାଇ କହିଲି ମୁଁ, ''ଜାଣ ନାହିଁକି,
ଘୁଷୁରି ରଖିଛି ମୁଁ କାହା ପାଇଁକି ?

ଆମ ଦେଶର କବି, ଚିତ୍ରକ ପାଇଁ
ସେଇ ତ ଯୋଗ୍ୟ ପେଶା, ଭାବନା କାହିଁ ?''
ହସି କହନ୍ତି ସତୀ, 'ସବୁକୁ ଥଟା,
ଜଞ୍ଜାଳେ ହେଉଥାଏ ମୁଁ ହଟହଟା ।
ବଡ଼ ବା ଯାହା ହେବ — ବେଳକ ଥାଉଁ
ସାନକୁ ଦେଖ ଭଲା, ଇସ୍କୁଲେ ଯାଉ ।

କେବଳ ଫିସ୍ ଦିଆହେଉଛି ସାର,
ନାହିଁ ପଢୁଛି ପାଠ, ଖାଉଛି ମାଡ଼ ।
ଦିନକୁ ଦିନ ତା'ର ବଢ଼େ ବଜାତି
ବଢୁଛି ବଜାରିଙ୍କ ସଂଗତେ ମାତି ।''

କହିଲି, ''ଆହା, ମୁଁ ଯେ ଏତେ ନିଶ୍ଚିନ୍ତ
କେବଳ ତା'ରି ଯୋଗୁ; ବୃଥାରେ ଚିନ୍ତ
କିପାଁ ହୁଅ ତା ଲାଗି ? ଦେଖୁଛି ତା'ର
ଲକ୍ଷଣ ଫୁଟିଉଠେ ମନ୍ତ୍ରୀ ହେବାର !
ନପଢୁ ପାଠ, ମିନିଷ୍ଟର ସେ ହେବ,
ନହେଲେ ହେବ ପବ୍ଲିସିଟି ସାହେବ ।
ନିତାନ୍ତ ପକ୍ଷେ ହେବ ନେତା ତ ଜଣେ,
ଦେଶ ସ୍ୱାଧୀନ ହେଲା କି ଶୁଭ କ୍ଷଣେ !
ସ୍କୁଲ-କଲେଜୁ ଧକ୍କା ଖାଇ ଯେ ଗଲେ,
ବେକାର ହେଉଥିଲେ ପୂର୍ବ ଅମଳେ,
ମହାତ୍ମା ତାଙ୍କ ପାଇଁ କଲେ ସୁବିଧା
ହେବେ ସେ ମନ୍ତ୍ରୀ, ନେତା ସହଜ ସିଧା ।
ମୂର୍ଖ-ଜନନୀ ବୋଲି ନକାନ୍ଦ ସତୀ,
ସ୍ୱାଧୀନ ଦେଶେ ତମେ ସୌଭାଗ୍ୟବତୀ ।''

## ମନ୍ତ୍ରୀ ବିଶ୍ୱନାଥ ନନ୍ଦ

### (୧)

କଲେଜେ ଯେବେ ଛାତ୍ର ଥିଲି
ଶ୍ରେଣୀରେ ଥିଲା ସାଥୀ,
ମିତ୍ର ନୁହେଁ, ବନ୍ଧୁ ନୁହେଁ ମନ୍ଦ,
ଶ୍ରୀମାନ୍ ବିଶ୍ୱନାଥ ନନ୍ଦ !
ଆମେ କେତୋଟି କାଟୁ ଯେ ଥାଉ
ଦିବସ ଆଉ ରାତି,
କେବଳ ସେଇ ବୋକା ଲୋକର କର୍ମେ —
ରସ ଖୋଜିବା ଶୁଷ୍କ ପୁସ୍ତକର
ଲିପି-ଗହନ ମର୍ମେ ।

ଥିଲା ଆମର ଯୁକ୍ତ ଅପଖ୍ୟାତି –
ସଂସାରରେ ଦ୍ୱିତୀୟ ମୂର୍ଖ ଏପରି କି ଥାନ୍ତି !
ନାହିଁ ତାସ୍ ପଶା,
ନାହିଁ ବିଡ଼ି, ପାନ,
ନାହିଁ ଖେଳ, ନାହିଁ ଖାନା, ମଜଲିସ୍, ଗାନ,
କିଛି ହିଁ ନାହିଁ, କେବଳ ଖାଲି
ପାଠ, ପାଠ, ପାଠ,
ରୋମାନ୍ସର ଗନ୍ଧ ନାହିଁ,
କେବଳ ଶୁଖିଲା କାଠ ।

ମୋଟ ଉପରେ ଏପରି ପ୍ରାଣ କରେ ଅପସନ୍ଦ
ଅନ୍ତତଃ ମୋ ଶ୍ରେଣୀର ବୁଦ୍ଧିମାନ୍
ବନ୍ଧୁ ଶ୍ରୀମାନ୍ ବିଶ୍ୱନାଥ ନନ୍ଦ !
ପଛ ଆଡ଼ିକି ଯଦିଓ ଥିଲା ନଗଣ୍ୟ ତା' ସ୍ଥାନ,
ବିଶ୍ୱନାଥର ଗର୍ବ ଥିଲା ତା'
ଖଦଡ଼ ପରିଧାନ !
ତା'ପରି କରି ଦେଶର ସେବା
ଆମେ ଯେ ସବୁ ଇସ୍କୁଲ୍ ଛାଡ଼ି, ହୋଇନଥିଲୁ ଫେଲ୍,
ସେ ଲାଗି ଥିଲା ଆମଠି ତା'ର
ତାଚ୍ଛଲ୍ୟର ତୀକ୍ଷ୍ଣ ଅଭିମାନ !
ପାଉଥିଲୁଁ ଯା ବୃତ୍ତି,
ବିଶ୍ୱନାଥ ବ୍ୟଙ୍ଗେ ବେଳେବେଳେ,
– ସେ କେବଳ ଦେଶଦ୍ରୋହୀର କୃତି !
ଏ ସବୁ ତା'ର ଦୂରରେ ଥିଲା ନାହିଁ –
ଦେଶ-ମା' ପାଇଁ ଏ ସବୁ ସିନା କେୟାର କରିନାହିଁ !
ସେ ସବୁ ତେଣୁ କରଇ ଅପସନ୍ଦ
ବୁଦ୍ଧିମାନ୍ ବିଶ୍ୱନାଥ ନନ୍ଦ !

(୨)

ଜୀବନ ପଥେ ପାଥେୟ ରୂପେ ଏକଇ ପରେ ଏକ,
ଡିଗ୍ରୀମାନେ ଭାରାକ୍ରାନ୍ତ, ଲଜ୍ଜାକ୍ରାନ୍ତ କରି
ଦରିଦ୍ର ଏ ବେକ,
ଧାଇଁଲି ଯେବେ ଭ୍ରାନ୍ତ ହୋଇ ଭିନ୍ନ ଭିନ୍ନ ପଥେ

ମିଳିବ କେଉଁମତେ
ଚାକିରି – ହେଉ ପଛକେ ଯେତେ ଛୋଟ,
ଭାଗ୍ୟବାନର ରେଶମ୍, ପଶମ୍ ଥାନେ,
ଦରିଦ୍ର କି ନାହିଁ ଆଦରେ ଝୋଟ ?
କରୁଣ ଯେଉଁ ଜୀବନ-ସଂଗ୍ରାମେ
ପାଶୋରିଦେଲେ ପୂର୍ବ ବନ୍ଧୁମାନେ,
ହାକିମ ହେଲେ, ଚଢ଼ିଲେ ମୋଟରକାର୍,
ହୋଇଲେ ଦେଖା ଅକସ୍ମାତେ
ଅଜଣା ପରି ପକ୍ଷ୍ମପାତେ
ଜଲ୍‌ଦି ରାସ୍ତା ପାର୍ !
ଅବସ୍ଥା ମୋ ଏପରି ଯେବେ ମନ୍ଦ,
ହଠାତ୍ ଦିନେ କଟକ ଇଷ୍ଟେସନେ
ସାକ୍ଷାତ୍ ହେଲେ ଶ୍ରେଣୀର ପୂର୍ବ ସାଥୀ
ବିଶ୍ୱନାଥ ନନ୍ଦ !
କେଉଁଠି କେବେ ବିଶ୍ୱନାଥ ଯାଇଛି ଗୋଠ ଛାଡ଼ି,
ମନେ ଇ ନାହିଁ, ଲଜ୍ଜାକଥା ଭାରି,
କିନ୍ତୁ ସେଇ ଆତ୍ମ-ଘାତୀ ଚାକିରି-ସଂଗ୍ରାମେ
କିଏ କେଉଁ ସ୍ଥାନେ,
ପଡ଼ିଛି ଯାଇ ଭାବିବା ପାଇଁ ନଥିଲା ଅବକାଶ,
ଆପଣାର ଏ ଜଂଜାଳରେ ଯେବେ ମୁଁ ଅଣଶ୍ୱାସ;
ବହୁତ ଖୁସି ଲାଗିଲା ତେଣୁ କଟକ ଇଷ୍ଟେସନେ
ତୃତୀୟ ଶ୍ରେଣୀର ମୁସାଫେରୀଖାନେ
ଦେଖିଲି ଯେବେ ''କିମିତି ଅଛ'' ପୁଛଇ ହସି ମନ୍ଦ,
ପୂର୍ବ ସାଥୀ ବିଶ୍ୱନାଥ ନନ୍ଦ !

ପରସ୍ପର କୁଶଳ ପ୍ରଶ୍ନ ପରେ
ନନ୍ଦ ମୋର ଶୁଣିଲେ ସବୁ ମହା ଗାମ୍ଭୀର୍ଯ୍ୟରେ –
ଗୋଟାକୁ ଗୋଟା ଡିଗ୍ରୀ ନେଇ ଶେଷେ
ପେଟ ଯା ପୋଷେ ସୁଦୂର ପଲ୍ଲୀଗ୍ରାମେ
ଅବଧାନର ବେଶେ !
ଶୁଣିଲେ ନିସ୍ପନ୍ଦ,
ପୂର୍ବ ବଂଧୁ ବିଶ୍ୱନାଥ ନନ୍ଦ !

ତା'ପରେ ଯେତେ ତାଂକ କାର୍ଯ୍ୟକ୍ରମ
ପ୍ରଶ୍ନ କଲି; ତୂଷ୍ଣୀ ରହି କ୍ଷଣ
ନନ୍ଦ ତ୍ୱରା ଉଠିଲେ ନିଜ ସ୍ଥାନୁ
(ମୋ ଆନେ ମୁହିଁ ବସିଛି ହୋଇ ସ୍ଥାଣୁ)

ମୋ ଆଗେ ଉଭା ହୋଇ ସେ ଧରି ଉପଦେଷ୍ଟାର ଭାବ,
ଭାଷଣ ଦେଲେ – ''ଆମ କଥା କି ତମରି ପରି ଭାବ ?
ତମେ ତ ହେଲ ପୋଥୀର କୀଟ, ଚାକିରି ଖାଲି ଲକ୍ଷ୍ୟ
ସ୍ୱାଧୀନ ଆମେ, ଦେଶସେବକ
ବିସ୍ତାରିତ ଆମର ଗ୍ରହ-କକ୍ଷ ।

କରୁଛି ଯଦିଓ ଏଇ ବର୍ତ୍ତମାନ
କୂଅଖୋଳାର କଣ୍ଟ୍ରାକ୍‌ଟରୀ
କେଉଁ ସଙ୍ଗରେ କଟାଇ ଦିନମାନ,
ଆଇ.ଏ.ଟା ବି ରହିଲା ଅନାୟତ୍ତ,
ମନ ଅବଶ୍ୟ ହୁଅଇ ହନ୍ତସନ୍ତ –
କିଛିନା କିଛି ହୋଇବ ସୁବ୍ୟବସ୍ଥା
ଆପଣା-ଛାଏଁ ଛାଏଁ,
ସୁବିଧା ଯଦି କିଛିବା ନାହିଁ ପାଏ,

ହେବି ତ ମନ୍ତ୍ରୀଟାଏ ?'' –
ହଠାତ୍ ହୋଇ ବନ୍ଦ,
''ଆସିଲା ଏଇ ଟ୍ରେନ୍ ମୋର,
ବିଦାୟ ହୁଏ ଭାଇ ।''
ଏଇଆ କହି କ୍ଷିପ୍ର ଯାଏ ଧାଇଁ,
ଚିନ୍ତା ମୋର ହଠାତ୍ କରି ବନ୍ଦ
ପୂର୍ବ ସାଥୀ ବିଶ୍ୱନାଥ ନନ୍ଦ ।

(୩)

ବିଂଶ ବର୍ଷ ପରେ
ପୁଣି ଯେ ଦେଖା ନନ୍ଦ ସଂଗତରେ !
ନନ୍ଦ ଏବେ ସତକୁ ସତ ମନ୍ତ୍ରୀ,
ମୋଟରକାରେ କେବଳ ଚାଲେ
ଉଡ଼ାଇ ବଇଜୟନ୍ତୀ ।

ରାଜଭବନରେ ଖାଏ ସେ ବାଂକ୍ୱେଟ୍
ଖବରକାଗଜରେ
ପ୍ରାତ୍ୟହିକ ବାହାରକରେ ବୋଲ୍ଡ ହରଫରେ
ଲମ୍ବା ଲମ୍ବା କେବଳ ଷ୍ଟେଟ୍‌ମେଣ୍ଟ ।
ମୋହର ସେହି ପୂର୍ବ ବନ୍ଧୁବର
ଜିଲା ବୋର୍ଡର କୃଅ-କଣ୍ଟ୍ରାକ୍ଟର
ମନ୍ତ୍ରୀ ନନ୍ଦ ଆଜି ମୋ ବାପା-ମାଆ
କାବିନେଟ୍‌ରେ ଶିକ୍ଷା-ମନ୍ତ୍ରୀ
ଏକାଇ ଚଉବାହା ।
ପୂର୍ବତନ ସକଳ ପରିଚୟ
ମନରୁ ପୋଛି ରହିଛି ଭୟ-ଭୟ,
କଥାବାର୍ତ୍ତାରେ କେବଳ 'ସର୍' 'ସର୍'
ସବୁଠୁ କିନ୍ତୁ ସରମ ସଙ୍କୋଚର
କାରଣ ଏଇ ଡିଗ୍ରୀ ଯେତେ ମୋର ।
ବୋକାମି ଓ ମୂର୍ଖତାର ପ୍ରତୀକ ଏଇ ମାଥେ
ବହି ମୁଁ କେହ୍ନେ କହିବି କଥା ପୂର୍ବ ବନ୍ଧୁ ସାଥେ –
ଡିଗ୍ରୀବିନା ପ୍ରତିଭାବନ୍ତ, ପ୍ରଭାବଶାଳୀ, ଚଣ୍ଡ
ପାଉଆରରେ ଅନ୍ଧ,
ବିଶ୍ୱନାଥ ନନ୍ଦ !

(୪)

ହଠାତ୍ ଦିନେ ଅକସ୍ମାତେ ହେଉ ଏକାନ୍ତେ ଦେଖା,
କହିଲି ନନ୍ଦେ ସାହସ କରି, ପାଇ ମୁଁ ତାକୁ ଏକା –
"ଦେଶର ଭାଗ୍ୟ, ସାର୍, ଏଇ ମନ୍ତ୍ରିତ୍ୱର କ୍ଲେଶ
ବରଣ କଲେ । କରୁଛି ଆଶା ଉଦ୍‌ବିଗ୍ନରେ ଦେଶ,
ଭବତ୍ ପାଶୁ ଶିକ୍ଷା ପ୍ରଥାର ଆମୂଳ-ସଂସ୍କାର;
ଏଇ ଯେ ଅତ୍ୟାଚାର
ଇଉନିଭର୍‌ସିଟି ଡିଗ୍ରୀ, ଡିପ୍ଲୋମାର –
ଇଏ ସବୁରେ କଇବା ଦରକାର ?
ଆପଣ ସ୍ୱୟଂ ଦୃଷ୍ଟାନ୍ତ ତାହାର !
ଭବତଃ ଯେଉଁ ପ୍ରବଳ ଅଭିଜ୍ଞତା,
ସେ ଅନୁଯାୟୀ, ଯାଆଁତୁ ଗଢ଼ି
ଜନକଲ୍ୟାଣେ ଶିକ୍ଷାର ବ୍ୟବସ୍ଥା ।

ସମଗ୍ର ସେ ଆମ କାଳର କଲେଜ୍ ଶ୍ରେଣୀ ଦଳେ
ଦୂରଦ୍ରଷ୍ଟାହିଁ ଆପଣ ଥିଲେ ଏକା,
ବୁଝିଛି ବହୁ ପରେ,
ଗୋଟାକ ପରେ ଗୋଟାଏ ଖାଲି ଡିଗ୍ରୀ ନେଇ ନେଇ,
ଖାଇଲୁ ବେଶ୍ ଠେଁଖା ।
ରକ୍ଷାକର ଦେଶକୁ ଏବେ ସେହି ସେ ମହାଭ୍ରମୁ,
ଗାଦିରେ ଥାଇ ଥାଇ –
ଏଇଥି ପାଇଁ ରହିଛି ଦେଶ ଚାହିଁ !''
ପ୍ରଫୁଲ୍ଲ ଚିତ୍ତରେ
ବିଶ୍ୱନାଥ କହିଲେ ହସି –
''ଯୋଜନା ସବୁ ଅଂକ କଷି
ସେ ଅନୁଯାୟୀ ହେଲାଣି ଥୁଆ,
ଦେଖ୍, କଅଣ କରେ . . .
ଗୋଟାଏ କଥା, ଜାଣିଥା ଆଚାର୍ଯ୍ୟ,
ଡିଗ୍ରୀ ଆଉ ନେକ୍‌ଟାଇ, ଆଉ ବିଶ୍ୱବିଦ୍ୟାଳୟ,
ଚିରକାଳ ପାଇଁ ଗଲେ !''
କହି ସେ ଫୋନ୍ ଧରେ !

(୪)

ପ୍ରତିଭାବାନ୍ ବିଶ୍ୱନାଥର ମୂଲ୍ୟବାନ୍ ମୁହୂର୍ତ୍ତକୁ ଡରି
ବିଦାୟ ନେଇ ଆସିଲି ଆପେ ଚଳି,
ଚିନ୍ତା କ୍ରମେ ହୋଇ ଆସଇ ମନ୍ଦ,
ସ୍ମରି-ସ୍ମରିକା ପୂର୍ବର ସେ ଆଇ.ଏ. ଫେଲ୍ ସାଥୀ
ସାଂପ୍ରତିକ ବିରାଟ କର୍ତ୍ତା,
ଅନରେବଲ୍ ନନ୍ଦ !

# ପ୍ରାଦେଶିକ

(ଏକ)

ପଣ୍ଡିତ ଗୋପବନ୍ଧୁ ଓ ମଧୁସୂଦନ ଦାସ,
ଓଡ଼ିଶା ଦେଶ ଗଢ଼ି ଯେ ଥିଲ
ଜୀବନଟାକୁ ସମଗ୍ରେ କରି ନ୍ୟାସ,

ଢାଳି ଢାଳି ଅଶ୍ରୁ
ଦେଇଣ ନିଜନିଜର ରକ୍ତ ମାଂସ,
ଜୀବନଟାକୁ କରିଗଲ ଯା ଏକଇ ଦୀର୍ଘଶ୍ୱାସ !

ଆସ ହେ ଥରେ ଦିନକ ପାଇଁ ପ୍ରେତ-ଜଗତ ଛାଡ଼ି
ଦେଖିବ ତମର ଉତ୍ତରାଧିକାରୀ
ଯେଉଁଠି ତମେ ବୁଣିବ ବୋଲି ଧାନ
କରିଯାଇଥିଲ ଗଭୀର କରି ଚାଷ,
ଉଠେଇଛନ୍ତି କି ପଣ୍ଡ ଯତ୍ନରେ
କେତେ ସୁନ୍ଦର ଅଡୁଆ ତଡୁଆ ବଣୁଆ ଗହଳ ଘାସ !

ମି. ଦାସ ଓ ପଣ୍ଡିତ ଗୋପବନ୍ଧୁ,
ଆମେ ଜାଣୁ ତମର ନିଜର ବୋଲି କେହି ନ ଥିଲେ
ଶଳା, ସମ୍ବନ୍ଧୀ, ସଢୁ, ପୁତୁରା,
ନିଜର ବା ଘରଆଡ଼ର ପିଲେ ।
ତଥାପି ତମେ ଛାଡ଼ିପାରିଲନି
ପ୍ରାଦେଶିକତା କଣ୍ଟୁ,
ଓଡ଼ିଶା ଦେଶଟାକୁ ହିଁ କରିଲ ନିଜର ବନ୍ଧୁ !
ସେ କ୍ଷୁଦ୍ରତା ଆମ ନିକଟରେ ଅସହ୍ୟ
ଆମେ ଜାଣୁ କ'ଣ ବର୍ଜ୍ୟ ଓ କ'ଣ ଗ୍ରାହ୍ୟ,
ତେଣୁ ଏବେ ସାରା ଷ୍ଟେଟ୍‌ର ସର୍କିଟ୍ ହାଉସ୍‌ମାନଙ୍କର
ସଫା ପାଣିରେ
ଦେହଟାକୁ ଆମର ପୋଛେଇନେଉଛୁ ବିକଟ ଓଡ଼ିଆ-ଗନ୍ଧୁ ।

ପଣ୍ଡିତ ଗୋପବନ୍ଧୁ ଦାସ,
କେବଳ, ନିଖୁରା ଚୂଡ଼ା ଥିଲା ତମର ଦୈନନ୍ଦିନ ଗ୍ରାସ,
ନାହିଁ ମିଳୁଥିଲା ଭାଗ୍ୟେ ସାମାନ୍ୟ ଚିନି,
ଆମେ କିନ୍ତୁ ଏବେ ନିତ୍ୟ ଖାଉ ବାଁକ୍ୱେଟ୍
ପଗଡ଼ି-ପିନ୍ଧା ଖାନସମା ଆସି ସଜାଇ ଥୋଇଯାଏ
ଗୋଟାକ ପରେ ଗୋଟାଏ ପ୍ଲେଟ୍ ।

ପଣ୍ଡିତ ଗୋପବନ୍ଧୁ ଦାସ,
ଓଡ଼ିଆ ପାଇଁ ମାଗିମାଗିକା ଧଇଲା ତୁମର ଶ୍ୱାସ !
ଦେଖନ୍ତ କି ଆସି ଓଲଟ ପୁରାଣ,
ଦାତା ଭାବରେ ଓଡ଼ିଆ ଜାତିର କି ଆଜି ସମ୍ମାନ !

ପଞ୍ଜାବରୁ ବେଙ୍ଗଲ, ଆଉ ହିମାଳୟରୁ କୁମାରିକା
ସବୁଠୁଁ ଆଜି ଲୋକ ଭର୍ତ୍ତି, ହାତରେ ଧରି ଏକ ଏକ ଶିକା,
ଦେଉଛୁ ଆମେ ଭୋଜ୍ୟ ତାଙ୍କୁ, କରୁଛୁ ପୁଣି ଚାକିରି ବନ୍ଦୋବସ୍ତ
(ନିମ୍ନସ୍ତର ବିଚାର ନାଇଁ,
ଅଧିକାଂଶ ହିଁ ଉଚ୍ଚସ୍ତ ।)
ତମକୁ ବୁଝିବାକୁ ଲାଗିପାରେ ଧୋକା,
ବୋକା ପଣ୍ଡିତ ଗୋପବନ୍ଧୁ ଦାସ,
ଜୀବନ ତମର ଭିକ୍ଷାରେଇ ବୃଥାରେ ଗଲା କଟି,
ଜାଣିଲ କେବେ ଦାତା ହେବାର ବିଳାସ ?
ପଣ୍ଡିତ ଗୋପବନ୍ଧୁ ଓ ମି. ଦାସ,
ଲଢ଼ି ଲଢ଼ି ଗଢ଼ିଦେଇଗଲ ଯା ଏଇ ଓଡ଼ିଆ ପ୍ରଦେଶ,
(ଓଡ଼ିଆଙ୍କର ନିଜର ବୋଲି ଜାଗାଟିକେ ଥାଉ, ଅଲଗା ।)
ଆଜି ଯଦି ଦିଅନ୍ତ ପୁଣି ଓଡ଼ିଶା ମାଟିରେ ପାଦ
କ୍ଷୁଦ୍ର-ଭାବ-ଚିତ୍କାରର ପାଇଯାନ୍ତ ସ୍ୱାଦ !
ମୁହଁରେ ଦେଇ ବଲ୍‌ଗା
ବିଚ୍ ଦାଣ୍ଡରେ ମାରନ୍ତୁ ଆମେ ଚାବୁକ,
ଆମେ ମହାଭାରତୀୟ ଭାବୁକ ।
ଗୋପବନ୍ଧୁ, ମି. ଦାସ ଓ ପାରଳା ଗଜପତି,
ଆପଣମାନେ ଯେ ଏ ଦେଶଟା ଗଢ଼ିଯାଇଛନ୍ତି,
ଭାବ ହେ ଥରେ କି ସ୍ୱାର୍ଥ-ଭାବ ଥିଲା ତା ପଛରେ –
ଭାବିଥିଲେ ନା ରାଜା ହେବେ ବୋଲି ଏଇ ଘରେ !
ମାନୁଛୁ ଆମେ, ଥିଲେ ଆପଣେ ସିଂହ
ଥିଲା ବୁଦ୍ଧି, ଥିଲା ସେଇପରି ଐତିହ୍ୟ;
ତେବେ, ବଣରୁ ଖଣ୍ଡେ କରିନେଇ ନିଜ ବାରି
ବନରାଜ ହେବ ବୋଲି ବା ଥିଲ ଯା ବିଚାରି,
ତା ଆମେ ଆଉ କରାଇଦେବୁନି ଗଣତନ୍ତ୍ରର କାଳେ
ଏବେ ଆଉ ବାଘ ହାତୀର ଯୁଗଇ ନାହିଁ,
ଭେରେଣ୍ଡାହିଁ ସବୁ କାମ କରିପାରେ ।
ବାଘ ହାତୀ ଆମେ ରଖାଇଦେବୁନି, ସାମ୍ୟହିଁ ଆମର କାମ୍ୟ,
ଦେଶବାସୀ ଯେତେ ସମସ୍ତେ ହେବେ ଗ୍ରାମ୍ୟ,
ବାଘ ହାତୀ ଯଦି ହେବେ କେବେ ଦର୍କାର
ବାହାରୁ ଆଣିବୁ ବୁଝିବେ ଯିଏ ଆମର କଦର, ଆମର ଅକ୍ତିଆର;

ଅଥବା ଆମେଇ ହାତୀ ବାଘ ସାଜି ବସିବୁ ସିଂହାସନେ,
ନିର୍ବିକାର ମନେ ।

ଗୋପବନ୍ଧୁ ଓ ମଧୁସୂଦନ ଦାସ,
କାହିଁ ଗଲା ତମର ରକ୍ତ-ଅଶ୍ରୁ-ମାଂସ ?
ପ୍ରାଦେଶିକତାର ଅପରାଧ ପାଇଁ
ଓଡ଼ିଆ ବେହେରାକୁ ଡାକିବାରୁ 'ଭାଇ',
ତମ ଦିହିଁଙ୍କ ହାଡ଼
ଖାଏ ଖରା-ବର୍ଷାର ମାଡ଼,
ଆଉ, ଭେରେଣ୍ଡା ହେଲେହେଁ ଶୁଣ ଆମ ଜୟଜୟକାର
ମହୋଦାର,
ନିଜେ ଥାଉଁ ଅପାଂକ୍ତେୟ ପଛେ,
କରୁଥାଉ ଅନ୍ୟର ପ୍ରଚାର ।

(ଦୁଇ)

ଉତ୍କଳର ବୁଧଜନ ଅବଧାନେ ଆସୁ
ପ୍ରାଦେଶିକ ପାଲା,
ଜଗନ୍ନାଥ-ଭୂମି ଏଇ ପବିତ୍ର ଉତ୍କଳ
ମହା ପାନ୍ଥଶାଳା ।
କାହାର ଏ ଭୂଇଁ ସତେ କେହି ନ ଜାଣଇ
ଜାଣେ ଜଗନ୍ନାଥ,
ଓଡ଼ିଆ ମେଣ୍ଢାର ନୁହେଁ, ସବୁ ପଣ୍ଡିତଙ୍କୁ
ଜଣା ଏହି ବାତ୍ ।
ପୃଥିବୀ ତ ଏକ ହୁଏ, ଧରିତ୍ରୀ କୁଟୁମ୍ବ
ସର୍ବେ ଏକାକାର,
ଏ ମାଟିଟା ମୋର, ଆଉ ସେଇ ନଈଟା ତାର
ଅଜ୍ଞର ଚିତ୍କାର ।
'ମୋର' ବୋଲି କହିବାଟା ଅନର୍ଥ ଏ ଥର,
ସବୁ 'ସକଳ'ର;
ମାଆ କହିବେନି ଆଉ ଏ ପିଲାଟା 'ମୋର' –
ନିଜେ ସେ 'ସର୍ବ'ର ।
ମୋର ବୋଲି କହିବାଟା ସାଜିପାରେ ଅବା
ବଡ଼ ଜାତି ମୁହେଁ,

ଇଂରେଜ, ରୁଷିଆ, ଜାପ୍, ବଙ୍ଗାଳୀ, ବିହାରୀ –
ସେ ପରିକା ପୁଏ ।
କିନ୍ତୁ ଏ ଓଡ଼ିଆ ମାଙ୍କୀ, ବେହେରା କହିବ
ଏ ଦେଶ ମୋହର,
ଅସହ୍ୟ ସେ ମିଥ୍ୟାକଥା – ଓଡ଼ିଆ, ଓଡ଼ିଶା
ଗାଈ ଓ ଗୋଚ଼ର ।
ସେ କେବଳ ଘାସ ଚରି ବଡ଼ ଜାତି ଜନେ
ଦେବେ ଦୁଗ୍ଧ, ସର,
ଚରା ଭୂଇଁଟାକୁ ଗୋରୁ କହି କି ପାରଇ
ଏଇଟା ମୋହର ?
ସେନାପତି (୧) କହିଥିଲେ କୁକୁରର କିଆଁ
ଘର ଦରକାର,
ପର ଖଲି ଚାଟି ଚାଟି ପୂରିବ ତା ପେଟ
କଟିବ ତା କାଳ ।
ନିଜ ବଡ଼ଲୋକଙ୍କର ସେ ମହା ବଚନ
ନ ଭୁଲ ଓଡ଼ିଆ,
'ନିଜର' ଭାବିଲେ ମିଶିଯିବ ହେ ହୋଇଛ
ଯେ ମାଟିରେ ଠିଆ ।
ନିଶ୍ଚିନ୍ତରେ ଯଦି ତୁମେ ରହିବାକୁ ଚାହଁ,
ଅତିଥି ଚରଣେ,
ଦିଅ ଭୂଇଁ, ଖାଦ୍ୟ, ବସ୍ତ୍ର 'ତୁମରି ଏ' କହି
ଭୟଭୀତ ମନେ ।

(ତିନି)

ଦିନେ ଏକ ପକ୍ଷୀ ଏକ ବୃକ୍ଷରେ କହିଲା,
''ପାଜି ପ୍ରାଦେଶିକ ତୁହି ଯେତେ ତୋର ପିଲା ।
ଯେଉଁଠି ଜନ୍ମିଲୁ, ରହିଥାଉ ସେହିଠାରେ,
ବିରାଟ ବିଶ୍ୱର କଥା ନ ଭାଳୁ ତୁ ବାରେ ।
ଦେଖ ମତେ, ମୋର ସିନା ଏଇଠାରେ ବସା,
ନିର୍ବାଧରେ ବୁଲି ଆସିପାରେ ସାରା-ରସା ।
ତୋପରି ମୁଁ ନୁହେଁ କ୍ଷୁଦ୍ର, ନୀଚ ପ୍ରାଦେଶିକ,

(୧) ସେନାପତି – ଫକୀରମୋହନ ସେନାପତି ।

ମୁଁ ଉଦାର, ମୁଁ ମହାନ୍, ମୁଁ ଆନ୍ତର୍ଜାତିକ।''
ବୃକ୍ଷ ଶୁଣେ ପରିହାସ – ବିନୀତରେ କହେ,
''ସତ ତୋର ବିଶ୍ୱଭାବେ ମଥା ମୋର ନଏଁ।
କିନ୍ତୁ ମତେ ଯେଉଁ ମାଟି ଦେଇଛି ଜୀବନ
କରିଛି, କରୁଛି ପ୍ରତି ଅଙ୍ଗ ମୋ ବର୍ଦ୍ଧନ
ତାକୁ ଭଲପାଏ ମୁହିଁ– ସେ କି ଅପରାଧ ?
ଚେର ନାହିଁ, କାହୁଁ ଅବା ପାଇବୁ ସେ ସ୍ୱାଦ ?
ମାଟିକୁ ମୁଁ ଭକ୍ତିକରେ, ମାଟି ଦିଏ ରସ,
ମାଟିର ସୀମାରେ ପାଏ ଅସୀମ ପରଶ।

ଗନ୍ଧବହ ବୋହିନିଏ ଗନ୍ଧ ମୋ ଅଙ୍ଗର
ରବି. ଚନ୍ଦ୍ର ପରଶନ୍ତି ନିତ୍ୟ ମୋ ଶିଖର,
ତୁମପରି ଆଶ୍ରିଛନ୍ତି ଯେତେ ଯେତେ ପକ୍ଷୀ,
ଭୋଗି ଛାୟା, ସଖ୍ୟ, ବାସ, ଫଳ, ରସ ଭକ୍ଷି,
ମିଳଇ ସେ ସବୁ ମୋର ପ୍ରାଦେଶିକ ଦୋଷୁଁ
ଆନ୍ତର୍ଜାତିକ ହେ ପକ୍ଷି, କେତେଟା ତୁ ପୋଷୁଁ ?''

ଏଇଠାରେ ପାଲା ଶେଷହେଉ ସଭାଜନେ
ପ୍ରାଦେଶିକ ପାଲା ଏହି, – ଉତ୍କଳର କର୍ଣ୍ଣେ
ଶୁଣାଇଲି ଯାହା ମୋର ଜୀର୍ଣ୍ଣ କଲମରୁ
ଯେ ଯାହା ପାରିଲା ନେଉ ଭାବାର୍ଥ ଏଥିରୁ। ✶

## ମାଟିଆବୁରୁଜରେ ଓଡ଼ିଆମାନଙ୍କର ଐତିହାସିକ କୀର୍ତ୍ତି

ଐତିହାସିକ ଓଡ଼ିଆ ଜାତିର ପ୍ରତିନିଧି ଶତ ପାଁଚ,
ମାଟିଆବୁରୁଜେ ବସା କରିଛନ୍ତି ଖାଆଁତି ଇଲିଶି ମାଛ।

---

✶ ସର୍ବଭାରତୀୟ ଐକ୍ୟ ଲେଖକର ପରମ କାମ୍ୟ। କିନ୍ତୁ ଦୁର୍ବଳତା ସମତାର ଜନକ ନୁହେଁ। ରାଷ୍ଟ୍ର-ପୁନର୍ଗଠନ ଆନ୍ଦୋଳନରେ ଓଡ଼ିଆଙ୍କ ଛଡ଼ା ବାକୀ ସମସ୍ତେ ନିଜନିଜର ଦାବି ହାସଲକଲେ। ପରନ୍ତୁ ଅନ୍ୟ କୌଣସି ଭାରତୀୟ ରାଜ୍ୟ, ଓଡ଼ିଶା ପରି ଶାସନର ସକଳ ବିଭାଗରେ ଅପ୍ରାଦେଶିକ ହାକିମମାନଙ୍କଦ୍ୱାରା ପରିଶାସିତ ନୁହେଁ। କୌଣସି ତଥାକଥିତ ସାଧୁ ଗାନ୍ଧିବାଦୀଙ୍କ ମୁଖ୍ୟମନ୍ତ୍ରିତ୍ୱ ବେଳେ ଏ ପରିବେଶ ଏପରି ଅସହ୍ୟ ହୋଇଉଠିଥିଲା ଯେ ଲେଖକର ଲେଖନୀ ଏଇ ପାଲା ଲେଖିବାକୁ ବାଧହୋଇଥିଲା।

ଜାତିଆଣ ତମେ ଛାତି ଫୁଲିଉଠେ
ପାଇକ ଖଣ୍ଡାଏତ,
ସାଁଗିଆରେ ମିଳେ ପୂର୍ବ-ପୁରୁଷ
ଗୌରବ-ସଂକେତ ।
ବଳିୟାର୍‌ସିଂ, ଦଳାଇ, ପ୍ରଧାନ
ନାୟକ, ଶତ୍ରୁଶଲ,
ଦକ୍ଷିଣକବାଟ, ଚମ୍ପତିରାୟ,
ବାହୁବଳେନ୍ଦ୍ର, ମଲ୍ଲ ।
ସାଁଗ୍ୟାଟିମାନ ସାର ଖାଲି,
ଝୋଟ କାରଖାନା କୁଲିଗିରି,
ସେଇଥିରୁ ଆସେ ଭୋକିଲା ପିଲାଁକ
ଲୁଗାପଟା, ପିଠା, ଖିରି ।
ଦରିଦ୍ର ସେହି ଅଧଃପତିତ
ପାଇକ ଐତିହାସୀ,
ମହାନଗରୀର ମହାଜନତାରେ
କଳ ମାଳେ ବଡ଼ ଚାଷୀ ।
ଭୁଲିଛି ତାହାର ପରଂପରାରେ
ତୋଷାଳି, କୋଣ୍ଡାବିଦୁ
ଉଠିପାରିନାହିଁ ବାପୁଡ଼ା ଏଯାଏଁ
ଗୋହିରିଟିକରା ନିଦୁଁ । *
ତନ୍ଦ୍ରାଜଡ଼ିତ ଖଣ୍ଡାଏତ ସେ
ଭାବଇ କେବଳ ନିଜେ,
କୁଲି ହେବା ପାଇଁ ଜାତ ଏ ଜଗତେ
ସିଏ ଓ ତାହାର ପିଲେ ।

(୨)

ସାଂପ୍ରଦାୟିକ ଦଙ୍ଗା ଚାଲିଛି, –
ହିନ୍ଦୁ, ମୁସଲମାନ,
ପାଗଳେ ଖୋଜଇ ଏକ ଆରେକର
ରକ୍ତ-ଉଷ୍ମ-ଘ୍ରାଣ ।

---

* ଗୋହିରିଟିକରାରେ ମୁକୁନ୍ଦଦେବଙ୍କ ମୁଣ୍ଡ ସହିତ ଓଡ଼ିଆର ଗୌରବ ଯେ ଖସିପଡ଼ିଥିଲା – ଆଉ ଉଠିନି ।

ମନିଷ ହୋଇଛି ରାତାରାତି
କଲିକତା ନଗରୀରେ
ବନ୍ୟପଶୁ ସେ, – ରାକ୍ଷସ ତାର ଏଇ
ଜାଗ୍ରତ ଧମନୀରେ ।
ବୃଦ୍ଧ, ରୁଗ୍‌ଣ, ବାଳିକା, ରମଣୀ
ଶାବକ ସ୍ତନ୍ୟ-ଜୀବୀ,
ମହାକାରୁଣିକ ଆଲ୍ଲାର ନାମେ
ହୁଅଁତି ଧର୍ମ-ହବି ।
ହିନ୍ଦୁ ସେପରି ଖୋଜେ ପଥେ ପଥେ
ରକ୍ତ ମୁସଲମାନୀ,
ରାଜ୍ୟ ଏ ହେବ ହିନ୍ଦୁର, ନାହିଁ
ରହିବେ ମ୍ଳେଚ୍ଛ ପ୍ରାଣୀ ।
କାଲିକାର ସେଇ ଭାଇ ଭାଇ, ଆଜି
ଧର୍ମ-ଅଫିମ ଖାଇ,
ମ୍ଳେଚ୍ଛ, କାଫେର୍ ରୂପେ ଗଡ଼ାଗଡ଼ି
ହୁଅଁତି ରକ୍ତ ପାଇଁ ।
ସାମ୍ପ୍ରଦାୟିକ ଅନ୍ଧ ଘୃଣାରେ
ହିନ୍ଦୁ, ମୁସଲମାନ,
ମହାନଗରୀରେ ଖୋଜେ ଅନ୍ୟୋନ୍ୟ
ରକ୍ତ-ଉଷ୍ମ-ଘ୍ରାଣ ।

(୩)

ଘାତକ ଡାକିଲେ ମାଟିଆବୁରୁଜେ
"ବାହାର କାଫେର୍ ଦଳ,
ହୁଅ ମସ୍‌ଲେମ, ଅଥବା ଶୀଘ୍ର
ଜାହାନ୍ନମରେ ଚଳ ।"
ମୁଷ୍ଟିମେୟ ସେ ସଜ୍ଜିତାସ୍ତ୍ର,
ନିରସ୍ତ୍ର ଓଡ଼ିଆଏ, –
କିବା ଏ ଯୁଦ୍ଧ, କି ଦୋଷ ତାଁକର
ଏକକୁ ଆରେକ ଚାହେଁ !
ମୁସଲମାନ ବା ଶତ୍ରୁ ତାଁକର
ହୋଇବ କାହିଁକି ସତେ ?

ସେ ତ ଆସିଥିଲେ ପେଟ ପୋଷିବାକୁ
ଶ୍ରମ କରି କେଉଁ ମତେ !
ପିଲାପିଲି ତେଣେ ଚାହିଁରହିଥିବେ,
ହରାଇଲେ ଏଥି ପ୍ରାଣ,
ଛୋଟ ସେ ନିରୀହ ଅରକ୍ଷ୍ୟ ଦେବ
ଏ ଭବେ କିଏ ସେ ତ୍ରାଣ !
ସାତ ପାଁଚ ଭାବି ଓଡ଼ିଆ ସେ ହେଲେ
ସଂକଟେ ମୋହଗତ,
ଭୀରୁ ପ୍ରାଣ ପାଇଁ ଶତ୍ରୁରେ କଲେ
ସଭିଏଁ ଦଣ୍ଡବତ ।
''ଛାଡ଼ିଦିଅ ବାବୁ'' କାକୁତିରେ କହେ
ପାଁଚ୍‌ଶ'ରୁ କେହି ଜଣେ,
''କିଛି ଅପରାଧ କରିନାହୁଁ ଆମେ
ପେଟ ପୋଷୁଁ ନିଜ ଶ୍ରମେ ।''
ନିଠୁର ଘାତକ ଉତ୍ତରେ ଧରେ,
ଓଡ଼ିଆ ଶ୍ରମିକ ବେକ,
''ହିନ୍ଦୁ ତୁ – ତୋର ସେଇ ଅପରାଧ,
ଏଇ ତାର ଫଳ ଦେଖ ।''
ଭୀରୁ ଓଡ଼ିଆର, ଦୁଃଖୀ କୁଲିର
ଶୋଣିତ ଲିପ୍ତ ମଥା,
ସହସା ପଡ଼ିଲା ମାଟିଆବୁରୁଜେ
ନାହିଁ ପାରି କହି କଥା ।

(୪)

ସତ୍ୟରେ ସେ କି କୁଲି ମାତ୍ରକ ? –
ବିନା ଲଢ଼େଇରେ ପ୍ରାଣ
ତା'କୁଳେ କି କେବେ ଦେବା ଶୁଣାଥିଲା ?
ଏ ସରମ ହୀନିମାନ ?
ଓଡ଼ିଆ ପାଇକ ବଂଶଧର ସେ
ପାଶୋରିଛି ଇତିହାସ,
ଦାରିଦ୍ର୍ୟ ଆଉ କୀର୍ତ୍ତନ ତାର
କରିଛି ସର୍ବନାଶ ।

ସେ ଏବେ କେବଳ ହୋଇଛି ଗୋଟିଏ
ଭୀରୁ, ଦୀନ, ମଜଦୂର,
ଯେ କେହିର ଲାଠି ଛୁରୀ ତେଣୁ ତାକୁ
ସହଜରେ କରେ ଚୂର।
ପାଁଚ୍‌ଶ’ ଓଡ଼ିଆ ଗୋଟି ଗୋଟି କରି
ନିରୀହ ଛାଗଳ ପରି,
ସାମ୍ପ୍ରଦାୟିକ ଯଜ୍ଞରେ ହେଲେ
ସହଜଲଭ୍ୟ ବଳି।
ଏକତ୍ର ହୋଇ ପାଁଚ୍‌ଶ’ ଓଡ଼ିଆ
ହୁଂକାର ଥିଲେ ଛାଡ଼ି,
ଘାତକ ପଳାଁତା, ମରିଥାଁତେ ଅବା
ଦୁଇପଟୁ ଦୁଇ ଚାରି।
ଏକତା, ସାହସ, ବୀର୍ଯ୍ୟ ଅଭାବୁ
ମଲେ ସେ କି ହୀନିମାନେ,
ଆକ୍ରାନ୍ତ ହେଲେ ପଶୁ ବି ଏହାଠୁ
ମରେ ବେଶୀ ସମ୍ମାନେ।

(୫)

ନେତାଏ ନୀରବ, ମନ୍ତ୍ରୀ ନୀରବ
ନୀରବ ଲେଖକ, କବି,
‘ବୀର ଓଡ଼ିଆ’ର ଜୟଜୟକାରେ
ଆକାଶୁ ଖସେ ବା ପବି !
ସରମ କି ତମ ଅଭିଧାନେ ନାହିଁ ?
ଉନ୍ନତ ଟେକି ମଥା
ଗାଆ ନିଜ ଯଶ, ମନେପଡ଼େନାହିଁ
ମାଟିଆବୁରୁଜ କଥା ?
ଓଡ଼ିଆ ଜାତିର କବି କିନ୍ତୁ ମୁଁ
ଜାତିର ଏ ଅପମାନ
ପାରିବିନି ଭୁଲି, ତେଣୁ ମୁଁ ଗାଉଛି
ଲଜ୍ଜାକୁଳ ଏ ଗାନ।
ମୁଁ ଚାହେଁ କିପରି ଏ ସରମ ଲୋକ-
ସ୍ମରଣୁଁ ଲୁପ୍ତ ହେବ,

ସବୁଠି ଓଡ଼ିଆ ସକଳ ଯୁଦ୍ଧେ
ଜବାବ କିପରି ଦେବ ।
ଫୁଟେ ମୋ ଶିରାରେ ଖଣ୍ଡାଏତର
ଶୋଣିତ-ପରଂପରା,
ଲକ୍ଷ୍ମଣାବତୀ, ଓ୍ୟାରାଙ୍ଗଲର
ସ୍ମରଣ ଜଗାଇ ତ୍ୱରା ।
ଦୁଃଖବିମୃଢ଼ କବି ଡାକେ ତେଣୁ –
"ହେ ମୋର ପତିତ ଜାତି,
କେତେ ମୁଁ ଶୁଣିବି କହ ତ ତୋହର
ଚାରିଆଡ଼େ ଅପଖ୍ୟାତି !
ଏ ଲେଖନୀ ସିନା ହୁଅଁତା ଧନ୍ୟ
ଗୌରବ ତୋର ଗାଇ,
ସବୁଆଡ଼େ ତୋର ନିନ୍ଦା ଶୁଣିଲି
କି ଅଛି ଲେଖନୀ ପାଇଁ ?
ମାଟିଆବୁରୁଜେ ଶେଷେ ତୋ ଭୀରୁତା
କରିଛି ମୁହ୍ୟମାନ,
ସେ ସରମ କଥା ଜାଣି ବଖାଣୁଛି, –
ହେବୁ ବା ଚେତନବାନ ।
ଦରିଦ୍ର ପଛେ ଥାଆ ରେ ଓଡ଼ିଆ
ଜୋର୍ କର ତୋ ବିଧା,
ମନିଷ ପରି ତୁ ହୁଅ ରେ ମନିଷ,
ମେରୁହାଡ଼ କର ସିଧା ।
ପୂର୍ବପୁରୁଷେ ଜିଣି ଶାସିଥିଲେ
ବିରାଟ ରାଜ୍ୟମାନ
ମାଟିଆବୁରୁଜ ପରି ତୁ ଏବେ ରେ
ସବୁଠାରେ ହୀନିମାନ !
ମନିଷ ହୁଅ ରେ, ସାହସୀ ହୁଅ ରେ
ଯୋଦ୍ଧା ହୁଅ ରେ ଭାଇ,
ଭୀରୁ, ନିରୀହର ହିଂସ୍ର ଧରାରେ
ଥାନ ନାହିଁ, ମାନ ନାହିଁ ।

## ବନ୍ୟା ଓ ଗୋପବନ୍ଧୁ *

ପୁଣି ଭାସେ ବନ୍ୟାଜଳେ ପ୍ରିୟ ସେ ଉତ୍କଳ,
ଦେଶର ପୁରୁଷକାର ପୁଣି ନିଃସହାୟ,
ସ୍ୱର୍ଣ୍ଣଭୂଷା ପୁରବାଳା ତେଜି ନେତ୍ର-ଜଳ,
ପଥେ ମାଗେ ଅନ୍ନ, ଦେଇ ସରମେ ବିଦାୟ ।

ତମେ ଆଜି ମନେପଡ଼ କରୁଣାର ଧାର
ଗୋପବନ୍ଧୁ, ଦେଶେ ଆଜି ନାହିଁ ଜଣେ ପରା
ବୁଲାଇ ଦୟାର ହସ୍ତ ଦେହେ ଜନତାର
ସମକ୍ଲେଶେ ଦୁଇକଥା କରିବ ପଚ଼ରା ।
ଦେଖୁଛୁଁ ପଁଝାଏ ମନ୍ତ୍ରୀ ବ୍ୟସ୍ତ ଅକାରଣ
ଭାଷ ତାଂକ ଭରିଉଠେ ଖବରକାଗଜେ,
ଜନ-ଦୁଃଖେ ବ୍ୟଥୀ କିନ୍ତୁ କହ କେଉଁ ଜନ
କରୁଣ, କଲ୍ୟାଣ-ଅଶ୍ରୁ ନୟନୁ ବରଜେ ?
ଜନଦୁଃଖେ କ୍ଷୁବ୍‌ଧ କବି ତେଜି ଅଶ୍ରୁଧାର
ଗୋପବନ୍ଧୁ; ତୁମକୁ ହିଁ ସ୍ମରେ ବାରମ୍ବାର ।

## ଯଦୁ ସ୍ୱାଇଁର ଗାଥା

(୧)

ହୀରାକୁଦ ବନ୍ଧ !
ଦେଖିବା ଲୋକେ ହୋଇଯାଆନ୍ତି ବିସ୍ମୟରେ ଅନ୍ଧ !
ରାତାରାତି ସୃଷ୍ଟି ହେଲା ବିପୁଳ ଜଳାର୍ଣ୍ଣବ,
ବନ୍ଦକରି ମହାନଦୀର ଛନ୍ଦ,
କଂକ୍ରିଟରେ ବିକଳ କରି ପର୍ବତର ଗଣ୍ଡ,
ହୀରାକୁଦ ବନ୍ଧ !

ଦେଶ-ବିଦେଶୁ ଧାଇଁ ଆସଁତି ବନ୍ଧବିଦ୍‌ଗଣ,
ମନ୍ତ୍ରୀ, ନେତା ଆସଁତି ଘେନି ମୁଗ୍‌ଧ ପାର୍ଶ୍ୱଜନ;
ଅତିଥିଶାଳେ ଡିନର୍ ଖାଇ
ମଟକରକାରେ କ୍ଷିପ୍ର ଧାଇଁ

* ୧୯୫୫ର ସମଗ୍ର ଉତ୍କଳବ୍ୟାପୀ ଅଭୂତପୂର୍ବ ବନ୍ୟା ସମୟରେ ଲିଖିତ ।

ଉଲ୍ଲାସରେ ସାମ୍ବାଦିକେ ଦିଅଁତି ସମ୍ଭାଷଣ; –
''ଭାରତ ଆଜି ଧନ୍ୟ ହେଲା,
ସମୃଦ୍ଧିର ବିରାଟ ଭେଳା
ବନ୍ଧ ଏଇ, – ଦୁଗ୍‌ଧ, ମଧୁ
ଉତ୍କଳର କୋଟିଏ ବଧୂ
ଭରିନିଅଁତୁ କୁମ୍ଭ କୁମ୍ଭ ଯାହାର ଯେତେ ମନ,
ପ୍ରାପ୍ତ ହେବ ଏତେ ଦିନକେ
ଅଳ୍ପ ଶ୍ରମେ, ସର୍ବକାମ୍ୟ ଧନ ।
ଏକତ୍ରରେ ଭୋଜ୍ୟ, ଭୋଗ, ମତ୍ସ୍ୟ, ଶସ୍ୟ, ଦୀପ
ପହଁଚ଼ିଯିବ ଆପେ ଇ ଆସି
ନୂତନ ସାଧବ ବୋଇତେ ଭାସି,
ରିକ୍ତ, ଦୀନ, ବୁଭୁକ୍ଷିତ,
ଆଦିମ, ଅଜ୍ଞ, ଅତି-ପତିତ
ଦୟାର ଅବା ଘୃଣାର ପାତ୍ର ଏଇ
ଓଡ଼ିଆ ଦ୍ୱାରେ, ଆଲୋକ-ବିବର୍ଜିତ !
ଏଇ ଦେଶର ସକଳ ଘରେ
ବିତ୍ତ, ଭାଗ୍ୟ, ସ୍ତରେ ସ୍ତରେ
ଉଠିବ ଫୁଟି ପ୍ରାବୃଟରେ
ଫୁଟଇ ଯେହ୍ନେ ପୁନ୍ନାଗ ଓ ନୀପ !''
ପହିଲି ଏଷ୍ଟିମେଟି,
ପଇଁଚ଼ାଳିଶ କୋଟି,
ଯଦିଓ ଗଲା ସ୍ତର ସ୍ତରକେ ଶହେ କୋଟିକି ଉଠି,
ଯଦିଓ ଦିନେ ଦୀନ ଓଡ଼ିଶା
ଅସ୍ଥି-ସାର, ଅର୍ଦ୍ଧଭୁକ୍ତ ପୃଷ୍ଠେ,
ବୋହିବ ଅକୁଣ୍ଠେ,
ସସୁଧ ଏଇ ବିରାଟ ଋଣର ବୋଝ,
ଶୁଷ୍କ ଜିହ୍ୱାର ନିଷ୍ଠୀବନ ଢୋକି;
ତଥାପି ହୁଏ ରୋମାଞ୍ଚିତ ଗାତ୍ର
ଭାବି, ଯା କଲେ ଇଣ୍ଡିୟାନ୍ ଏ ଇଂଜିନିୟର୍ ଦଳ,
(ବିନା ସାହାଯ୍ୟେ ସ୍ଥାନୀୟ ଲୋକଙ୍କର) –
ଧନ୍ୟବାଦର ପାତ୍ର ସେମାନେ,
କୃତଜ୍ଞତାର ପାତ୍ର !

(୨)

ଯଦୁ ସ୍ୱାଇଁ ତା' ଜୀବନ କାଟେ ସୁଦୂର ଗଞ୍ଜାମରେ
ଦୁଇଟି ହାତେ ଛଅଟି ମୁଖେ ଅନ୍ନ ଦେଇ ନିତି,
ନିଜେଇ ଆହା ଜାଣେନା ଜନ୍ମ-ଦୁଃଖୀ
ବଁଚି ରହିବା ଆଭାସ ମାତ୍ର ତଳେ,
କେବଳ ସେ ଯେ ମରେ, ମରେ, ମରେ !
କେବେ ତା ପେଟ ଜାଣିଛି ପୂରା ଗ୍ରାସ ?
ପଶୁର ଗୁହା ନୁହେଁ କି ତାର ବାସ ?
ବର୍ଷ, ଦିନ, ମାସ
ଖଟିଖଟିକା ଦିବସ, ରାତ୍ରି, ବର୍ଷା, ଗ୍ରୀଷ୍ମ, ଶୀତେ
ଜାଣେନା ଯଦୁ ମନିଷ ହୋଇ
        ଅଧିକା କିସ କରିପାରେ ସେ ଆଶ ।
ଚଉଠେ ଅବା ଅଧେ ହିଁ ମାତ୍ର ବଁଚି
ଖୁସିରେ ଥାଏ ତଥାପି ଯଦୁ ସ୍ୱାଇଁ
ଅନ୍ନ, ବସ୍ତ୍ର, ଯୋଗାଡ଼ି ବହୁ କଷ୍ଟେ ତିର୍ଲା, ପିଲା ପାଇଁ ।
ମଳିନ-ବସ୍ତ୍ର, ଅର୍ଦ୍ଧ-ଭୁକ୍ତ ଚିର,
ନିରୀହ, ମୂଢ଼, ମୁଖରେ ନାହିଁ ଗିର,
ସେହି ସେ ପୁଣି ଗାଆଁରେ ତାର ଯାତ୍ରା ହେଲେ ଠିଆ
ଦୁଆରୀରୂପେ ନବଜ କରି
ହସାଏ ତାର ଛୋଟ ଗାଆଁର କ୍ଷୁଦ୍ର ସେ ଦୁନିଆ ।
ଦୁଃଖ ଭୋଗି, ଜଗତ୍ରେ ହସାଇ
ଗଞ୍ଜାମର ଗ୍ରାମେ ଥାଏ ଯଦୁନାଥ ସ୍ୱାଇଁ ।

ଏ କାଳେ ତାର କର୍ଣ୍ଣେ ବାଜେ ହୀରାକୁଦ ବନ୍ଧ,
ଲକ୍ଷଯାକେ ଶ୍ରମିକ ଲୋଡ଼ା, ମଜୁରି ନୁହେଁ ମନ୍ଦ ।
ଦିନକୁ ଯଦି ଚାରିଟା ଅଣା ବଁଚ଼ଇ କେଉଁ ମତେ
ବିଚ଼ାର କଲା ଯଦୁଆ ଅନ୍ତର୍ଗତେ,
ଭାରିଯା ହାତେ ଦେଇପାରଁତା
        ରସର ହେଲେ ଦୁ'ଦୁଇ ପଟ ତାଡ଼,
ଝିଅର ନାକେ ସୁନାର ଗୁଣା, –
        କାନକୁ ନୋଳି ଛାଡ଼ ।
ଅଧିକା ଯଦି ବଳଇ ପୁଞ୍ଜି କିଛି

ପେଟକୁ ତାର ଖେଁଚି,
କିଣିବ କିଛି ଭୂମି,—
ହେଉ ପଛେ ତା ସାମାନ୍ୟ,
କେତେକାଳ ସେ ଦେହର ଝାଳେ ଅନ୍ୟ ଜନ କ୍ଷେତ୍ରେ
ଫଳାଉଥିବ ଧାନ୍ୟ ?
ବିଶାଳ ପୃଥିବୀରେ,
ଏ ମାଟିଟିକ 'ଆମର' ବୋଲି ଦିନେ ତ କେବେହେଲେ
କହିବେ ତାର ପିଲେ !

(୩)

ଗଞ୍ଜାମରୁ ତିନିଶ କ୍ରୋଶ ଦୂରେ
ମହାନଦୀର କଙ୍କରିତ କୂଳେ,
ପତ୍ର-କୁଟା-ଡାବଲ-ଟିଣ-ଡାଙ୍ଗ-ବିରଚିତ,
ବନ୍ୟ-ଜନ୍ତୁ-ଗୁହାଠୁ ଯାହା ଅଧିକ ଅବାଞ୍ଛିତ
ଏପରି ଏକ ତଥାକଥିତ 'ଘରେ',
ଡେଙ୍ଗା, ମୋଟା, ସୁସ୍ଥ ଯଦୁ ବର୍ଷ, ମାସ ଧରି
ଅଗଣ ଶ୍ରମ-ଜୀବୀର ସାଥେ ଭାଗ୍ୟ ତାର ବରି
ରହିଛି ନିର୍ବିକାରେ,
ନୀରବେ ଦୁଃଖ ବହି ତା' ଦୃଢ଼ ଓସାର ଛାତି ତଳେ ।

ବର୍ଷ, ଦିନ, ମାସ
ଗ୍ରୀଷ୍ମ, ବର୍ଷା ପ୍ରକୋପ ସହି, ସହିଣ ଶୀତ ତ୍ରାସ,
ମହାନଦୀର ରୁକ୍ଷ ବକ୍ଷପରେ
ଉଠେ ଯେ ସେତୁ ଲୁହା-ପଥର-
ସିମେଣ୍ଟ-କଂକ୍ରିଟରେ —
କଠୋର ସ୍ତରେ ସ୍ତରେ
ଆକାଶ ଭଗ୍ନ କରି,
ସେଇଠି ଯଦୁ କରଇ କାମ ସକାଳୁ ସଞ୍ଜଯାଏଁ
ବୃହଦାକାର ପିପୀଲିକାଟି ପରି !
ପଥର ମୋଟା ମୋଟା
ଆସ୍ତେ ଆସ୍ତେ ବନ୍ଧ-ପୃଷ୍ଠେ ଉଠାଇ ଗୋଟା ଗୋଟା,
ଅର୍ଦ୍ଧଭୁକ୍ତ ମାତୃ-ଦତ୍ତ ମାଂସପେଶୀ ତାର
ଉଠଇ କ୍ଳେଶେ ଥରି ।

ତଥାପି ଯଦୁ ଗ୍ରୀଷ୍ମେ, ଶୀତେ ସକାଳୁ ସନ୍ଧ୍ୟା ଯାଏଁ
ଯନ୍ତ୍ର ପରି ପଥର ଧରି ଉଠେ ଓ ଖସୁଥାଏ,
ଦିନରେ ଥରେ ସନ୍ଧ୍ୟା ପରେ
ଆପଣା ହାତେ ରାନ୍ଧି ଏକ ବଖତ ଖାଏ ।
ପତ୍ର କୁଡ଼ିଆରେ
ଯଦୁଆ ଯେବେ ସ୍ୱହସ୍ତରେ
କରଇ ପାକ ଧୂମ ଚୁଲିଧାରେ
ନିତ୍ୟ ତାର ପଡ଼ଇ ମନେ ପତ୍ନୀ-ପୁତ୍ର କଥା
ଦ୍ୱିତୀୟ ପ୍ରାଣ କାହିଁଛି ଏଥି ଶୁଣିବ ମନୋବ୍ୟଥା !
ଭାବର ଆତିଶଯ୍ୟେ
ରୂକ୍ଷ ତାର ବକ୍ଷତଳେ ତରଳିଯାଏ ଲୁହ
ଭୋଜନ-କର୍ମ ମଧ୍ୟେ !

(୪)

ଦୁଇଟି ବର୍ଷ ଧରି
ଘଣାର ପଶୁ ପରି
ଏଇଠି ଯଦୁ କଟାଇଲାଣି କୁଲିର ଭାଗ୍ୟ ବରି !
ଭାବୁଛି ଏବେ ଗାଆଁକୁ ଥରେ ବୁଲିଆସିବ ଯାଇ
ପିଲାପିଲି ଓ ବନ୍ଧୁଜନେ
ଦେଖିବା ପାଇଁ ବ୍ୟଗ୍ର ମନେ,
ପରାଣ ଖୋଲି ଆସିବ ହସି ପୁଣି
ଦୁଆରୀ-ଗୀତ ଗାଇ !
ମମତାହୀନ ପଥର, ଲୁହା, କଂକ୍ରିଟର ବଣେ
ପରାଣ ଖୋଲି ହସିବା ପାଇଁ ସାଥୀ ସୁଯୋଗ କାହିଁ ?
ଆହା ସେ ତାର ଛୋଟିଆ ଗ୍ରାମ,
ତୋଟା, ପୋଖରୀ, ପାହାଡ଼, ବିଲ ଘେରା
ମାଉସୀ, ଖୁଡ଼ୀ, ଅଜା, ପିଇସା ମେଳେ
କେଡ଼େ ସୁଖର ଧାମ !
କ୍ଷୁଦ୍ର ତାର କୁଡ଼ିଆ ଚାଳେ ଲାଉ, କଖାରୁ ଲଟା,
ଅଗଣା କୋଣେ ଦୁଇ ଚାରିଟା ଝଟା,
ସଜନା ଗଛ ଦୋ'ଟି,
ବରାବର ତ ଥାଏ –

ସନ୍ଧ୍ୟା ହେଲେ ପତ୍ନୀ ତାର ତୁଳସୀ ବୁଦାମୂଳେ
ପ୍ରଣାମ କରି ବତିଟି ରଖିଯାଏ ।
ଝୁଁପୁଡ଼ିବାସୀ (୧) ଚାଷୀ ଯଦୁର
ଗଭୀର ଚିତ୍ତତଳେ
ପଲ୍ଲୀ-ଜୀବନ ପାଇଁ କି ଯାହା
ମମତାଟିକ ଥରେ,
ହୀରାକୁଦର କେଉଁ ସେ ଇଞ୍ଜିନାର
କେଉଁ ସେ କାନ୍‌ଟରାଟି
କେଉଁ ବା ନେତା, କେଉଁ ବା ମନ୍ତ୍ରୀ ଆହା
ବୁଝିବା ପାଇଁ ଚେଷ୍ଟା କଲେ ଥରେ !
ଯଦୁକୁ କିନ୍ତୁ ଗାଆଁଟି ତାର ଡାକେ,
ଡାକେ ଗାଆଁର କଇଁଫୁଲିଆ ସରୋବରର ପାଣି,
ଡାକେ ଯେପରି ଧାନ-କିଆରିମାନ
''ଫେରିଆ ବାପ, ମାଟିକି ପୁଣି,
ଫେରିଆ ଅଭିମାନୀ ।''
ଭାବଇ ଯଦୁ ସୁବିଧା ଯଦି ହୁଏ
କିଣିବ ସେହି କିଆରିମାନ୍ତୁ ଗୋଟେ,
ପ୍ରାଣର ପ୍ରିୟ ସେହି କାଦୁଅ ମାଟି
ତା'ର ଯେ ଆହା ନାହିଁ ବି ଟିକେ ମୋଟେ !

(୪)

ଗଞ୍ଜାମର ସୁଦୂର ସେହି ଗ୍ରାମେ
ଯଦୁ ସ୍ୱାଇଁର ବଡ଼ ପୁଅର ନାମେ
କିନ୍ତୁ ହଠାତ୍ ଚିଟାଉ ଏକ ଆସେ;
ଅଜ୍ଞାତ କେ ବନ୍ଧୁଠାରୁ –
ଯାହାର ସେହି ପ୍ରଥମ ସଙ୍ଖୋଳାରେ,
ଯଦୁର ପରିବାର ଦୁଃଖ-ଜଳେ ଭାସେ ।

---

(୧) ଝୁଁପୁଡ଼ି – ହୀରାକୁଦ ଡାମ୍ ତିଆରି ବେଳେ ଇଂଜିନିୟର ଓ ଅଫିସରମାନେ ପ୍ରାସାଦରେ ରହୁଥିଲେ । କିନ୍ତୁ ସହସ୍ର ସହସ୍ର ଶ୍ରମିକ କାଠି, କୁଟା, ଖଣ୍ଡିଆ ଟିଣ, ଛିଣ୍ଡାଅଖା ପ୍ରଭୃତି ନେଇ, କେବଳ ଗୁରୁଣ୍ଡି-ପଶିବା-ଭଳି ଯେଉଁ କୁଡ଼ିଆ ସବୁ ନିଜେ ନିଜେ ଠିଆ-କରେଇଥିଲେ, ସେ ସବୁକୁ ସେଠାରେ ଝୁଁପୁଡ଼ି କୁହାଯାଉଥିଲା । ବସ୍ତୁତଃ, ପ୍ରତ୍ୟକ୍ଷ ଦେଖିଥିବା ସେହି ବୀଭତ୍ସ ମାନବିକ ନିର୍ଯାତନା ଓ ଅପମାନହିଁ ଏହି କବିତାର ମୂଳ ପ୍ରେରଣା ।

ଲେଖିଛି କେଉଁ ସାଙ୍ଗ କୁଲି ଟଂକା-ଟଂକା ଲିପି,
ନ ଥାଉ ପଛେ ବନାନ, ବ୍ୟାକରଣ,
ବର୍ଣ୍ଣନାଟି ଥରାଇ ଦିଏ ଛାତି –

'ବଂଧ ପରୁ ଓହ୍ଲାଇଲା ବେଳେ
ହଠାତ୍ ଗୋଡ଼ ଖସି,
ଯଦୁଆ ଭାଇ ପଡ଼ିଲା ବନ୍ଧତଳେ –
ପଥରେ ବାଜି ମୁଣ୍ଡ ଗଲା ଫାଟି !
ହାସ୍ପାତାଳେ ନଉନଉକା ପରାଣ ଗଲା ଉଡ଼ି,
ପିଲା ତିରିଲା ନାଆଁଟିମାନ
ଉଚ୍ଚାରି ଉଚ୍ଚାରି,
ଶେଷ ନିଶ୍ୱାସ ଯଦୁର ଗଲା
କରିକରିକା ପାଟି ।
କାଲହିଁ ବଳିଆର
ଦୁଃଖ କରି କି ଲାଭ, ସିଏ ସେଇଠି ସିନା ମରେ
ଯେଉଁଠି ଯିଏ କିଣିଥାଏ ତା' ମାଟି ।'

(୬)

ଯଦୁ ସ୍ୱାଇଁର ହତଭାଗିନୀ ନାରୀ,
ଅର୍ଦ୍ଧଭୁକ୍ତ, ନଗ୍ନ, ରୁଗ୍‌ଣ, ପିଲା ଚାରିଟି ଧରି,
ରୋଦଇ ତଳେ ଗଡ଼ି ।
ଛୋଟ ଗ୍ରାମର ଥରାଏ ହିଆ କରୁଣ ଶୋକ ତାର,
ବହୁ ଲୋକର ନେତ୍ରୁ ଖସେ ବିକଳ ଅଶ୍ରୁଧାର ।
ଠିକ୍ ସେତିକିବେଳେ
ପାଟମନ୍ତ୍ରୀର ଷୋଡ଼ଶ ପୂଜା ପାଇଁ
ଅତିଥିଶାଳେ ସଜଡ଼ା ହୁଏ ଖାନା;
ପୋଷାକପିନ୍ଧା ବେହେରା-ବବୁର୍ଚ୍ଚିର
ଚାଲିଛି ଧାଆଁଧାଇଁ !

ଅତିଥିଶାଳେ ଆତ୍ମାରାମେ ଦିବ୍ୟ ଭୋଜ୍ୟ ଖାଇ
ଅସାଧାରଣ ରସନା-ସୁଖ ଉଦର-ପୂର୍ତ୍ତି ପରେ,
ପଞ୍ଚମନ୍ତ୍ରୀ, ପଞ୍ଚଇଂଜିନାରେ
ପ୍ରଶଂସାରେ ମୁଗ୍‌ଧ ପରସ୍ପରେ,

ହୀରାକୁଦର ସୁଗୁଣରାଶି ଅବାସ୍ତବ ଅଂକେ
ମୁକ୍ତକଣ୍ଠେ ଗାଇ !

କିନ୍ତୁ ହାୟ, ଗ୍ରୀଷ୍ମତାପେ ଚଣ୍ଡ ଭାନୁ ତଳେ,
ମନ୍ତ୍ରୀ ଆଉ ଇଞ୍ଜିନାରେ ସୁସଜ୍ଜିତ ଘରେ
କାଟୁଥାଆଁତି ସମୟ ଯେବେ ତଡ଼ିତ୍-ଶୀତଳ ଛାୟେ,
ପଥର-ଭାର ଟେକି ଉଠାଇ ଅର୍ଦ୍ଧଭୁକ୍ତ କାୟେ,
ସ୍ୱେଦ-କ୍ଷୁଧାରେ ହନ୍ତସନ୍ତ ପ୍ରାଣ,
ଅଗ୍ନିମୟ ଆକାଶ ଯେବେ, ଶରୀର ଦହ୍ୟମାନ;
ସେତିକିବେଳେ ସକଳ କଷ୍ଟ ନିର୍ବିକାରେ ସହି
ପତ୍ନୀ-ପୁତ୍ର ଦୂରରେ ଛାଡ଼ି ପ୍ରାଣର ଦୂର ଗ୍ରାମେ,
ଏକ-ଭୋଜନେ କରିଲେ ଯେହୁ ରାକ୍ଷସର କାମ,
ସେ ଯଦୁ ଆଉ ତାହାରି ସମସ୍ଥାନ
ପ୍ରକୃତରେ ହୀରାକୁଦର ନିର୍ମାତାର ଦଳ
ହାୟରେ ଆଜି ହୋଇଲେ ନାହିଁ
କାହାରି ହେଲେ ଯୋଗ୍ୟ ସ୍ମରଣର !
ବାସ୍ତବରେ ଯିଏ ସେ ନିର୍ମାତା –
ଜୀବନରେ ସେ ରହିଲା ଆହା ତୁଚ୍ଛ ଅପାଂକ୍ତେୟ,
ଆକସ୍ମିକ-ଅବଜ୍ଞାତ-ମରଣେ ଆହା ପୁଣି
ସାଙ୍ଗ ହେଲା କରୁଣ ତା'ର ଗାଥା !

(୭)

ସର୍ବେ ଶୁଣ, ସର୍ବେ ଶୁଣ,
ଯେ ଅଛ ଦେଶେ ଯହିଁ,
ଗାଥାଟି ତା'ର ସାଙ୍ଗ ହୋଇନି ଭାଇ,
ମରି ମଧ୍ୟ ହେ ମରିନି ଯଦୁ ସ୍ୱାଇଁ ।
ଯାହାର ସୁର୍କି ଯଦୁ ସ୍ୱାଇଁର ଝାଳରେ ହେଲା ବନା,
ପ୍ରତି ଶିଳାରେ ଶୋଣିତେ ଲେଖା
ରହିଛି ଯା'ର ନିଠୁର ନିର୍ଯାତନା,
ସେହି ଯଦୁର ଅଶ୍ରୁ-ତପ୍ତ-ଶ୍ୱାସ
ବିଳାସ-ତୁଷ୍ଟ, ଭୋଜ୍ୟ-ପୁଷ୍ଟ-ମନ୍ତ୍ରୀ-ଇଂଜିନାରେ
କରଇ ଉପହାସ !

କାଳଚକ୍ରର ସହଜ ବିଘୂର୍ଣ୍ଣନେ
ଆଜି ସେ ଅଛି ଦମ୍ଭେ ଉଚ୍ଚାସନେ
କାଲି ହେବ ସେ ନିଶ୍ଚିହ୍ନ ଓ ଲୁପ୍ତ,
ସମାଧି-ଦେଶୁ (୧) ଥାଇ କି ପାରେ ଶକ୍ତି,
ପବ୍ଲିସିଟିର ରଂଜିତ ପୃଷ୍ଠାରେ,
ହୀରାକୁଦର ସତ୍ୟ ନିର୍ମାତା କେ
ରଖିବା ପାଇଁ ଅପାଂକ୍ତେୟ, ଗୁପ୍ତ ?

ସେଇ ଦିନ ଏ ମୌନ ହୀରାକୁଦ,
ନିଜେ ସେ ଦେବ ଦାରୁଣ ଏଇ କୃଷ୍ଣ ଇସ୍ତାହାର –
''ନିର୍ମାତା ଏହାର,
ପ୍ରକୃତରେ ନିୟୁତ ସେଇ ଦୁଃସ୍ଥ କୁଲିଦଳ,
ବର୍ଷ ବର୍ଷ, ଖରା, ବର୍ଷା, ଶୀତ ଓ ହେମନ୍ତରେ,
ଡାଙ୍ଗ-ତାମ୍ବି-ପତ୍ର-ଗଢ଼ା ଜୀର୍ଣ୍ଣ କୁଟୀତଳେ
କାଟିଥିଲେ ଯେ ସଂଗହୀନ ଦୁର୍ବିସହ କାଳ,
ସେଇ ଯଦୁ ସ୍ୱାଇଁର ମାଳ !

ସେତେବେଳେ ଯେ ପୃଥୁଳ-ଭତ୍ତା, ଉଞ୍ଚା ଦରମାହାର
ସାହେବ-ସମାହାର,
ଅୟସ୍ ସହ ଆବାସ ଥିଲେ କରି,
ନିରନ୍ନ ସେ ନିର୍ଯାତିତ ଜନତା ସାମନାରେ,
ଗଣଦେବରେ ଏପରି ଯିଏ ଦେଲେ ହେ ଅପମାନ,
ନଗ୍ନ ଗଣର ଅର୍ଥେ ଭୋଗି ବିଳାସ, ଯାନ୍, ମାନ୍, –
ବଂଧ ଯେହୁ ପ୍ରକୃତରେ ରଚ଼ିଲେ ରକ୍ତଧାରେ,
ରଖିଲେ ତାଙ୍କୁ ଜାଣିଜାଣିକା
ଜନ୍ତୁଠାରୁ ଘୃଣ୍ୟ ଅବିଚ଼ାରେ,
ଡକାଅ ସେହି ମନ୍ତ୍ରୀ, ଇଂଜିନାରେ ।
ବିଚ଼ାର ପୁନର୍ବାର,
କରାଅ ତାଙ୍କ ବିଚ଼ାର ପୁନର୍ବାର,
ହେ ଦେଶବାସୀ, ମର୍ମ-କଥା
ଏଇ ମୋ ଇସ୍ତାହାର !
ମୋହର ଏଇ କଠିନ ପିଣ୍ଡ ତଳେ

(୧) ସମାଧି-ଦେଶୁ – ମୃତ୍ୟୁରାଜ୍ୟରୁ

ଥରିଉଠୁଛି ଯଦୁ ସ୍ୱାଇଁର ଦାରୁଣ ନିର୍ଯାତନା,
ବିକଳ ଆର୍ତ୍ତ ଧ୍ୱନି ତାହାର ଅଶାନ୍ତ ଆତ୍ମାର !''

## ଭୁଲ୍ ଓ ଭିଲେନୀ *

ଭୁଲ୍ କିଏ କରେ, ଅବା କିଏ କରେ ନାହିଁ ?
ଭୁଲ୍-ଭୋଳା କବି ଜଣେ, ପ୍ରଶ୍ନ କରେ ମନେ
ଭୁଲ୍-ମୟ-ଜୀବନର ଅର୍ଥ କିବା ଧାୟି –
ଥାଏ କି ନ ଥାଏ ଭୁଲ୍-ମୂଲ୍ୟ, ଏ ଜୀବନେ ? ୧ ।

ସେମାନେ ମହତ ନିଶ୍ଚେ, ଧନ୍ୟ, ମାନନୀୟ,
ଭୁଲ୍ ଯିଏ ନକରନ୍ତି ଆଦଉଁ ଜୀବନେ,
ଆମ ପରି ସାମାନ୍ୟଙ୍କ ନିତ୍ୟ ବରଣୀୟ,
ନିଶ୍ଚୟ ତାଙ୍କର ସର୍ବ ପନ୍ଥା, ଏ ଭୁବନେ । ୨ ।

ଦେଖ, ଭୁଲ୍ କରନ୍ତିନି ଗୋରୁ ଓ ଛାଗଳ,
ଇଟା, ମାଟି, ଗୋଡ଼ି, ପଙ୍କ, ଅବା ଗଛପତ୍ର,
ଘାସ ବି କରେନା ଭୁଲ୍ ଅଥବା ପଥର,
ଭୁଲ୍ କରେ ନାହିଁ ଜୋତା, ବୋତାମ ବା ଛତ୍ର । ୩ ।

ମନ୍ତ୍ରୀ, ମାରୁଆଡ଼ି ମଧ ନ କରନ୍ତି ଭୁଲ
ସେହିପରି, ପୁଣି ଯେତେ କୁର୍ଶିମନ୍ତ କର୍ତ୍ତା,
ସେମାନେ ଦେବାରୁ ସିନା ନ୍ୟାୟର ତଉଲ,
ପେଟେ ଅନ୍ନ ପାଆନ୍ତି ଏ ଦେଶର ଜନତା ! ୪ ।

ମଦ୍ୟପ କି ଭାଇ, କେବେ ଶୁଣ୍ଢିର ଦୋକାନେ
ଯିବାକୁ କରିବ ପଥ-ଚିହ୍ନିବାରେ ଭ୍ରମ ?
ଜଜ୍ ଚାହେ ଯଦି ଦଣ୍ଡ ଦେବ କେଉଁ ପକ୍ଷେ,
ଦଫା ଖୋଜିବା କି ତାର ହେବ ପଣ୍ଡ-ଶ୍ରମ ? ୫ ।

ଭୁଲ୍ ଖାଲି କରିଥାନ୍ତି ଇତର ଜନତା,
ଭୁଲ୍ କରେ କବି, ଶିଳ୍ପୀ, ଭାବୁକ, ଲେଖକ,
ଯେତେ ବୈଜ୍ଞାନିକ ପୁଣି; – ଏମାନଙ୍କ ପନ୍ଥା
ଦେଖିଛ କି କେବେ ଯାଇଥିବାର ସଳଖ ? ୬ ।

---

* ଭିଲେନୀ – ଇଂରାଜୀ ଶବ୍ଦ – ଅର୍ଥ, ବଦ୍‌ମାସି । ଅନ୍ୟର ଅନିଷ୍ଟ କରିବା ଯାହାର ଆନନ୍ଦ ବା ସେପରି ଯେ କରେ, ଇଂରେଜୀରେ ତାକୁ କୁହାଯାଏ ଭିଲେନ୍ । କୌଣସି ଶିକ୍ଷାମନ୍ତ୍ରୀ ଓ ଦୁଇଜଣ ହାକିମଙ୍କର ମିଳିତ ବଦ୍‌ମାସିର ପରିଚୟ ପାଇଲା ପରେ ଏ କବିତାଟି ଲେଖା ।

କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ, ଗାନ୍ଧି, ନବୀ (୧) ମହମ୍ମଦ,
କି ମହାତ୍ମା ଏମାନେ ହେ ? କେତେ ଭୁଲ୍ ଭ୍ରାନ୍ତି
ଏଗୁଡ଼ାଙ୍କ ଚରିତ୍ରରେ ! – ଏମାନଙ୍କ ପଥ
ମୂର୍ଖ, ବୋକାଗୁଡ଼ା ସିନା ଖୋଜି ବୁଲୁଥାନ୍ତି ? ୭ ।

ଥିବାରୁ ଦେଶରେ ଖାଲି ନ୍ୟାୟପରାୟଣ
ଜଣ କେତେ ମନ୍ତ୍ରୀ, ବଡ଼ ହାକିମ, କେମନ୍ତେ
ବଁଚିଛୁ; ନ ହେଲେ କି ହେ ଆମେ ବା ଆପଣ,
ମଜା କରୁଥାନ୍ତେ ଏଇ ହତଭାଗ୍ୟ ଦେଶେ ? ୮ ।

ଏମାନେ କୁର୍ଶିରେ ବସି ପାରୁଥାନ୍ତି କରି
ପ୍ରତିଦିନ ଅପରାଧ, ଅନ୍ୟାୟ ଭୀଷଣ,
'ଭୁଲ୍' ତାହା କେ କହିବ ବକ୍ଷେ ଦମ୍ଭ ଧରି ?
ଭୁଲ୍ କରନ୍ତି କି କୁର୍ଶିମନ୍ତ ମହାଜନ ? ୯ ।

କ୍ରାଇମ୍ (୨) କରିବା ଭାଇ, ମନ୍ତ୍ରୀ, ପଦସ୍ଥର
ବିଧିଦତ୍ତ ଦୈନନ୍ଦିନ ପୁଣ୍ୟ ଅଧିକାର,
ଅକ୍ଷମ୍ୟ ସାମାନ୍ୟ ଭୁଲ୍ କିନ୍ତୁ ନିମ୍ନସ୍ଥର,
ବଡ଼ ଛଡ଼ା ଦାବି କା'ର ଠିକ୍ କହିବାର ? ୧୦ ।

ନ୍ୟାୟନାମେ, ଆମରି ହିଁ କଲ୍ୟାଣର ନାମେ,
ଆମରି-ଲୋତକ-ରକ୍ତ-ଆର୍ଦ୍ର-ରଥ-ଚକ୍ର
କର୍ତ୍ତାଙ୍କର, ଘୂରି ଚାଲିଥିବ ଅବିରାମେ
ଆମେ ଖାଲି ଶୋଇଯିବା ପିଠିକରି ବକ୍ର । ୧୧ ।

ହେ କୃଷ୍ଣ, ହେ ବୁଦ୍ଧ, ଖ୍ରୀଷ୍ଟ, ଆରବ-ରସୁଲ,
କାହା ପଥେ ଯିବି ତେଣୁ, ଚିନ୍ତା ମୋର ଅତି,
ତବ ଭ୍ରାନ୍ତି-କୀର୍ଣ୍ଣପଥେ ଅଥବା, ନିର୍ଭୁଲ
କୋଟି-ଭାଗ୍ୟ-ଧର ମନ୍ତ୍ରୀ, ବ୍ୟୁରୋକ୍ରାଟ୍ (୩) ପଥୀ ? ୧୨ ।

ପ୍ରିୟ ମୋର କୃଷ୍ଣ, ଖ୍ରୀଷ୍ଟ, ବୁଦ୍ଧ, ମହମ୍ମଦ,
ପୁଣି ମହାକବି, ଋଷି, ମହାତ୍ମା ସମସ୍ତେ,

---

(୧) ନବୀ – ଈଶ୍ୱରଦୂତ ।
(୨) କ୍ରାଇମ୍ – ଇଂରାଜୀ ଶବ୍ଦ; ଅର୍ଥ ଅପରାଧ, ବେଆଇନି କାମ, ଅତ୍ୟାଚାର ।
(୩) ବ୍ୟୁରୋକ୍ରାଟ୍ – ଇଂରାଜୀ ଶବ୍ଦ, ସାଧାରଣ ଅର୍ଥ ବିଭାଗୀୟ ପ୍ରଧାନ କର୍ମଚାରୀ; କିନ୍ତୁ ଯେଉଁମାନେ ନିଜର ହାକିମି ସଂବଂଧରେ ଗଭୀର ଭାବରେ ସଚେତନ, ସେହିମାନଙ୍କ ପ୍ରତି ବିଶେଷ ଭାବରେ ପ୍ରୟୋଗ କରାଯାଏ । ମାନବିକତାଶୂନ୍ୟ କର୍ମଚାରୀଙ୍କ ପ୍ରତି ଏହାର ସାଧାରଣ ପ୍ରୟୋଗ ।

ହେ ଧରା-ଆଲୋକ ସବୁ, ତବ ବକ୍ର ପଥ
ଚିରକାଳ ଆକର୍ଷଣ କରିଅଛି ମତେ । ୧୩ ।

ହେ ଧରାର ଜ୍ୟୋତି ସବୁ, ଏତିକି ମୁଁ ଜାଣେ –
ତମ ନେତ୍ରେ 'ଭୁଲ୍' ମାତ୍ର 'ସତ୍ୟ'ର ସୋପାନ
ପ୍ରମାଦ, ପ୍ରଜ୍ଞାର ଦୂତ – ତବ ଦିବ୍ୟ-ଜ୍ଞାନେ,
ଝୁଣ୍ଟିବା ଖଞ୍ଜତ୍ୱ ନାହିଁ କରଇ ପ୍ରମାଣ । ୧୪ ।

ତମେ ସବୁ ସ୍ୱୟଂ ଶେଷେ ପାଇଛ ଆଲୋକ
ଭ୍ରମି ବହୁ ଅବାଟରେ, ପ୍ରମାଦେ, ଅନ୍ଧାରେ,
ତେଣୁ ଆଶା ବଁଚିଅଛି ସିନା ଏହି ଲୋକେ ?
ତାରାରେ ଯା' ଲକ୍ଷ୍ୟ, ସେ'ତ ଯିବ ଅମଡ଼ାରେ ? ୧୫ ।

ତେଣୁ ପ୍ରଭୁ ବୁଦ୍ଧ, କୃଷ୍ଣ, ଖ୍ରୀଷ୍ଟ-ମହମ୍ମଦ
ନିଅ ମତେ ତୁମ୍ଭରି ସେ ଅମଡ଼ା ପଥରେ,
ଭୁଲ-ଭ୍ରମ-କଣ୍ଟକରେ ଫୁଟୁ ପଛେ ପଦ
ଭେଟିବି ଜୀବନାଲୋକ, ଯାହାର ପ୍ରାନ୍ତରେ । ୧୬ ।

ଚଳାଅ ସେ ପଥେ ମତେ – ଆଲୋକ-ସଂଧାନୀ,
ଅମୃତ-ଆଶାୟୀ ମୁଁ ଯେ ବିଶ୍ୱ-ଅନ୍ୱେଷକ;
ମନ୍ତ୍ରୀ ଓ ହାକିମ ହୋଇ ବିବିଧ ଭିଳେନୀ
କରି, ମୋର ଇଚ୍ଛା ନୋହିବାକୁ ପ୍ରତାରକ । ୧୭ ।

ଚଳାଅ ସେ ପଥେ ତବ, ଭୁଲ - ଭ୍ରମାକୀର୍ଣ୍ଣ,
ଯହିଁ ମୋର ପ୍ରତି ସ୍ୱେଦ, ଅଶ୍ରୁ, ହୋଇ ମୋତି
ଝଟକିବ ଚିରକାଳ – ମନ୍ତ୍ରୀ ଓ ହାକିମ
ହୋଇଥିବେ ଯେବେ କାଳ-ପଙ୍କ ତଳେ ପୋତି । ୧୮ ।

ମୋ ପଥର ଶେଷ ନୁହେଁ ମନ୍ତ୍ରୀର କୁରୁଚି
ଅଥବା ସମ୍ମାନ ରାଷ୍ଟ୍ରପାଳ ଦରବାରେ,
ମୋର-ନର-ପ୍ରାଣ ଲୋଡ଼େ ଦେବତାର ଶୁଚି
ଯା ପାଇଁ ନିର୍ଦ୍ଦେଶ ନାହିଁ ଲୋହିତ-ଫିତାରେ (୧) । ୧୯ ।

---

(୧) ସରକାରୀ ନଥିପତ୍ରକୁ ଇଂରାଜୀରେ ରେଡ୍-ଟେପ୍ କୁହାଯାଏ, କାରଣ ନାଲି-ଫିତା ଥିବା ଫାଇଲରେ ସରକାରୀ କାଗଜପତ୍ର ସାଧାରଣତଃ ରଖାଯାଇଥାଏ । 'ଲୋହିତ-ଫିତା' ଏଠାରେ ସେହି ରେଡ୍-ଟେପ୍‌ର ଅନୁବାଦ । ନାଲିଫିତା ମଧ୍ୟ ବ୍ୟୁରୋକ୍ରାଟ୍ ଶବ୍ଦ ପରି ନିର୍ମମତା, କଳ୍ପନା-ହୀନତା ଓ ଅମନୁଷ୍ୟତା ସୂଚିତ କରିଥାଏ ।

ଅନ୍ତର ମେଲାଇ କରେଁ ପାଦେ ନିବେଦନ,
ତେଣୁ ପ୍ରଭୁ, ଏଇ ଯେବେ ମନ୍ତ୍ରୀ ଓ ହାକିମ,
ମିଳି କରନ୍ତି ମୋ ପୃଷ୍ଠେ ଚାବୁକ ବର୍ଷଣ,
(ପ୍ରଚାରିବା ପାଇଁ ନିଜେ କି ମହାମହିମ !) — । ୨୦ ।

କେବେ ତ ଭାବିନି ପଂକହୀନ ଏ ଜୀବନ
ଭାବିଛି ମୋ ପଂକ ପୋଛିନେବେ ଅନ୍ତର୍ଯ୍ୟାମୀ,
ସେ ସୁଖ ପାଇଁ ବା ଦେଲ ଘୋର ନିର୍ଯାତନ,
ଭେଟାଇଲ ପଥେ କ୍ରୁର, ହିଂସ୍ର ଜୀବ ଜାଣି ! ୨୧ ।

## ଡିଗ୍ରୀ ଓ ଗାଉନ୍

ସମ୍ବଲପୁରର ପ୍ରଦ୍ୟୁମ୍ନ ସୂପକାର,
ପରମ ସ୍ୱପ୍ନ ଜୀବନେ ଯାହାର,
ହେବ ସେ ଲେକ୍‌ଚରର୍ —
(ଅବଶ୍ୟ ତା ଓଡ଼ିଆରେ,
ଯେଣୁ ସହଜତର ସିଦ୍ଧି
ତାଆଠୁ ଆଉ ଭାବି ନ ପାରେ କୌଶଳ ସ୍ରଷ୍ଟାର !) ।

ଓଡ଼ିଆ ଏମ୍. ଏ.ର ଆଠଟି ପେପର ବାଦେ,
ଅ-ସିଲାବସୀ ନବମ ପତ୍ରଟାରେ,
ଅକୁଣ୍ଠିତେ ଢାଳିଦେଇ ସେ ଧ୍ୟାନ,
ଗଢ଼ିଥିଲା ସେ ତରୁଣ ଚିତ୍ତେ ଗନ୍ଧର୍ବ-ନଗରୀ,
ଫାଷ୍ଟକ୍ଲାସ୍ ଫାଷ୍ଟ ପରେ ସୁନା ପଦକର ମାନ ।

କିନ୍ତୁ ଅଛି କଅମ୍ ବେଶି, ଯଜ୍ଞ, ତପସ୍ୟାର —
ଗୀତାରେ ପୁଣି ଭଗବାନ୍ ଶ୍ରୀକୃଷ୍ଣ,
ମନିଷେ ଦେଇ ଶ୍ରମରେ ମାତ୍ର ପୂର୍ଣ୍ଣ ଅଧିକାର
ଆପଣା କୋଟ୍ ଭେଷ୍ଟ ପକେଟ୍ ମଧ୍ୟେ
କର୍ମ-ଫଳର ଚାବିଟି ଦେଲେ ଯେ ରଖି
—କେଡେନା ହୁସିଆର !

ସେଇ ଚାଲାକି ଧରି ନାହିଁ ପାରିଥିଲା
ସମ୍ବଲପୁରର ପ୍ରଦ୍ୟୁମ୍ନ ସୂପକାର !

ଫଳରେ ଯେବେ ରେଜଲ୍ଟ ହେଲା
କାଗଜରେ ବାହାର
ସମ୍ବଲପୁରର ଝାଡ଼ୁଆପଡ଼ାର ଓଡ଼ିଆ ଏମ୍. ଏ. ଛାତ୍ର,
ଶ୍ରୀମାନ୍ ପ୍ରଦ୍ୟୁମ୍ନ ସୂପକାର,
ଖୋଜିଲା ବାଟ କେଉଁ ପରି ସେ ଚେଜିବ ନିକାଂଚନେ
ଅଭିମାନର ଉଷ୍ଣ ଅଶ୍ରୁଧାର !
ଯାଇ ନ ପାରି, ବେହୋସ ହୋଇ
ଟଳିପଡ଼ିଲା ଖରେ, ବଡ଼ ସଡ଼କ ପରେ ।
କଅଣ ଆହା ନ ହୋଇଥାଁତା
ନଥାଁତା ଯଦି ସାଥେ,
ବଂଧୁ ତାହାର, ସୁରେନ୍ଦ୍ର ବହିଦାର !
ସାନ୍ତ୍ୱନା ଦିଏ ତା'ର
ସେହି ବଂଧୁ ବହିଦାର
"ପ୍ରଦ୍ୟୁମ୍ନରେ, ଛତ୍ରଭଙ୍ଗ ଦେବାର କି କାରଣ ?
ସାହାସ୍ ଧର, ସେକେଣ୍ଡ କ୍ଲାସ୍ ପାଆଁତି କେତେ ଜଣ ?
ତୃତୀୟ ଶ୍ରେଣୀ ମାତ୍ର ପାଇ ଯୋଗାଡ଼-ଯନ୍ତ୍ରି-ପଣେ
ଓଡ଼ିଶା ଦେଶେ ପ୍ରତିଭାବାନ୍ ସାଜଁତି ବହୁ ଜନେ
ପାରଁତି ହୋଇ ବ୍ରହ୍ମା, ବିଷ୍ଣୁ, ରୁଦ୍ର କେତେ କ'ଣ !
ହେବୁ ତୁ ଲେକ୍‌ଚରର୍
ଧୈର୍ଯ୍ୟ, ସାହସ ଧର୍ ।"

ମୋହୋତ୍‌କ୍ରାନ୍ତ ପ୍ରଦ୍ୟୁମ୍ନ କହେ ଧୀରେ –
"ସେଇ ନବମ ପତ୍ରଟାରେ
ରହିଲା ଭାଇ, ଅଭାବ କିଛି ଯୋଗାଡ଼-ଯନ୍ତ୍ରର,
ନହେଲେ କି ସେ ବାହାରି ଛାତ୍ର, ଅଜଣା ମିସ୍ ଲେଁକା,
ଦେଇପାରଁତା ଏତେ ଲୋକର ଉଚ୍ଚାଶାରେ ଚେଁକା !"

ତଥାପି ଆଜି ପ୍ରଦ୍ୟୁମ୍ନ ସୂପକାର
(ଯା ଧମନୀରେ ଶୋଣିତ ବହେ ସୁରେନ୍ଦ୍ର ସା'ର୍)
କନ୍‌ଭୋକେଶନେ ଅକୁତୋଭୟେ ଆସିଛି ଆଜି ନେବ
ଗାଉନ୍ ପିଁଧି ନିଖିଳ ନେତ୍ର ଆଗେ,
ଜୀବନରେ ଏ ଶେଷ ଡିଗ୍ରୀଟି ତା'ର ।

ଲେକ୍‌ଚରର୍ ହେବାର ପୂର୍ବ ଆଶା
ନ ପାଏ ଆଉ ପୂର୍ବ ପରି ସ୍ୱପ୍ନ-ମଧୁର ଭାଷା,

ସଁପି ଦେଇଛି ସେକାଳୁ ତାହା ମିସ୍ ଲେଁକାର ପାଦେ,
(ନାରୀ-ପ୍ରଗତିର ଏ ଯେଉଁ ଯୁଗ –
ପୌରୁଷ କି ତରୁଣେ ଆଉ ସାଜେ ?)
ଏବେ ତା' ଆଶା ଡ଼ଁକେଇଲାଣି ପ୍ରୌଢ଼-ଶିକ୍ଷା ଆଢ଼େ,
ସଚିବାଳୟ ନିମ୍ନସ୍ତରେ, ଅଥବା ପ୍ରଜାତନ୍ତ୍ର-
ରବିବାସର-ସଂସ୍କରଣର ବନ୍ୟ ସ୍ତମ୍ଭମାଳେ ।
ଏ ସବୁ ପାଇଁ ଥାଟ ତ ଚାହି ?
ଗାଉନ୍‌ପିଁଧା ଫଟ,
କିଛି ନ ହେଲେ, ଦେଖେଇବ ସେ ଦଶର ଆଗେ କେବେ,
ମୁହୂର୍ତ୍ତକୀ ନବ୍ୟ ଏଇ ଘଟ !
ଜୀବନରେ ସେ, କିଛି ବା ହେଲା ନାହିଁ,
ଆଜି ଏ ଦିନେ, ଏଇ ପୋଷାକେ
ସୁମିତ୍ରା ତ ଥରେ,
କଜଳ-କଳା ଆଖିରେ ତା'ର,
ଦେବ ତ ଥରେ ଚାହିଁ !

## କଟକ ମ୍ୟୁନିସିପାଲିଟି

ପ୍ରିୟ ମନମୋହନ (୧)
'ମନିଷ-ପାଲଟି' ଯାହା ତମ ସଂସ୍ଥା ନାମ,
'ଘୁଷୁରି-ପାଲଟି' ହେଲେ ହୋନ୍ତା ଭଲ କାମ ।
ଯେତେ ଚେଷ୍ଟା କଲେ ସଭ୍ୟ ହୋଇ ବଁଚିବାରେ,
ତମେ ଆଣି ପହଁଚାଅ ଘୁଷୁରିତ୍ୱ ଦ୍ୱାରେ ।
ପୁଷ୍ପ-ରମ୍ୟ କୁମାରୀଙ୍କ ବିଦ୍ୟାଳୟ ପାଶେ (୨)
ପାଇଖାନା ଆବର୍ଜନା ନିର୍ଭୀକେ ବିକାଶେ ।

---

(୧) ଉତ୍କଳର ଜଣାଶୁଣା ରାଜନୈତିକ କର୍ମୀ ଓ ବୁଦ୍ଧିଜୀବୀ ଶ୍ରୀଯୁକ୍ତ ମନମୋହନ ମିଶ୍ର । ସେ କଟକ ମ୍ୟୁନିସିପାଲିଟିର ପ୍ରଥମ ଥର ଚେୟାରମାନ ଥିଲାବେଳେ ତାଂକ ଉଦ୍ଦେଶ୍ୟରେ ଏ ପତ୍ର ଲେଖାଯାଇଥିଲା ।

(୨) କଟକର ମ୍ୟୁନିସିପାଲ୍ ଉଚ୍ଚ ବାଳିକା ବିଦ୍ୟାଳୟକୁ ଝିଅମାନ ପ୍ରତ୍ୟହ ଆସିଲାବେଳେଇ ମ୍ୟୁନିସିପାଲିଟିର ବୀଭତ୍ସ ଓ ଦୁର୍ଗନ୍ଧ ଆବର୍ଜନାର ଶତ ଶତ ଟୋକେଇ ଓ ଗାଡ଼ି ଠିକ୍ ସେଇ ବାଟ ଦେଇ ଅଦୂରର ଡ଼ଂପିଙ୍ଗ୍ ଗ୍ରାଉଣ୍ଡକୁ ଯାଏ ।

ଘରୁ ବାହାରିଲେ ଆମ ପ୍ରଥମ ଦର୍ଶନ,
ଭାରନତା ମେଥରାଣୀ ଗଂଧ ଓ ବଦନ ।
'ସେସ୍' ନେଇ ଏ ବିଶେଷ ଦିଅ ପ୍ରତିଦାନ,
ଘରେ ଓ ବାହାରେ ମନୁଷ୍ୟତା-ଅପମାନ ।

ବାଟଟିଏ ପାଇଁ ଏତେ ଘାଟେ କଲି ଦେଖା,
ହକ୍ ପ୍ରାପ୍ୟ ପାଇଁ ଏତେ ପିଟିଶନ୍ ଲେଖା !
ଜାଣି ନ ପାରନ୍ତି କି ଯେ ଭୋଗେ ପୁରଜନ,
ହା ପୁରେଶ, କମ୍‌ରେଡ୍ ଶ୍ରୀ ମନମୋହନ !

## ଆତ୍ମାବତରଣ

''ଯାଉଛୁଁ ନିର୍ଦ୍ଦେଶ ପାଇ ନିମ୍ନେ ଧରାତଳ,
ଆମେ ଏକ କିଂକର୍ତ୍ତବ୍ୟମୂଢ଼ ଆତ୍ମାଦଳ ।
ଯାତ୍ରାର ପୂର୍ବରୁ ଆମେ କରିଥାନ୍ତୁ କିଛି ଅବା ଜଣା,
ଧରାର ଜୀବନ ପାଇଁ ମାଗିଥାନ୍ତୁ କିଛି ବା ମନ୍ତ୍ରଣା ।

ହେ ସ୍ରଷ୍ଟା, ହେ ବିଧାତାପୁରୁଷ,
ଉଠ ଉଠ, ନିଦ୍ରାଳସ ଉଠ ।

ଧରା-ଅଭିମୁଖୀ ଆମେ ଆତ୍ମା ଏକ ଦଳ
କରୁଛୁଁ ଏ ପ୍ରଶ୍ନ ନିବେଦନ,
ସାମାନ୍ୟ ଶ୍ରବଣ, ଦିଅ ଆହେ ବିଶ୍ୱକର୍ଣ୍ଣ ।
ଲକ୍ଷ ଲକ୍ଷ କୋଟି ସମ୍ବତ୍ସର,
ଅନଳସ ରହି ସୃଷ୍ଟି କରି ନିୟନ୍ତ୍ରଣ,

କାଳର ମଝିରେ, ଏହି ମୂଢ଼ ବର୍ତ୍ତମାନେ
ହଠାତ୍ କିପାଇଁ ତମେ ହୃଷୀକେଶ, ହେଲ ତନ୍ଦ୍ରାପର ?
ଉଠ ଉଠ, ଭଗବାନ, ଦିଅ ଆମ ପ୍ରଶ୍ନ-ଆପତ୍ତିରେ
କ୍ଷଣେ ହେଲେ କ୍ଷୀଣ ଅବଧାନେ ।
ଆମରି ଏ ଏକ ପ୍ରଶ୍ନ, ଶୁଣ ନାରାୟଣ –
ଅଛି କି ସେ ତବ ପୃଥିବୀରେ,
ନର ବୋଲି ସେ ଜୀବର ଆବିର୍ଭାବେ,
ସଂବର୍ଦ୍ଧନେ ଅବା କିଛି ପ୍ରୟୋଜନ ?

ସ୍ନେହ ମମତାର, ଭ୍ରାନ୍ତି ଓ ପ୍ରଜ୍ଞାର
ସ୍ୱପ୍ନ ଓ ଚିନ୍ତାର, ଛୋଟ ଅବତାର
ନିଜ ପ୍ରତିବିମ୍ବରୂପେ ଧରାପରେ ଯାହାରେ ନିବେସି
କରିବାକୁ ଚାହିଁଥିଲ ଘାସ-ମାଟି-ଶିଳା-ଜଙ୍ଗଲର,
ସେ ଗ୍ରହରେ, ବୈକୁଣ୍ଠର ପାଖ ପ୍ରତିବେଶୀ;
ଯାହାପାଇଁ ଗୂଢ଼ କରୁଣାରେ
ଅବତରି ଅଛ ବାରମ୍ବାରେ,
କାନ୍ଧେ ରଖି ହାତ,
ଭୋଗି ତାର କୁଟୀରର ସହସ୍ର ସଂଘାତ
ଚାଲିଅଛ ସେ ହୀନର ମିତ୍ର ହୋଇ ମରମୀ ମହତ୍ୱେ
ଧରଣୀର ଧୂଳିମୟ ପଥେ, –
ସେ ମନୁଷ୍ୟ ନଷ୍ଟ ଆଜି; ନଷ୍ଟ ଯେହ୍ନେ ବହୁ ମହାପ୍ରାଣୀ
ହେଲେ ଦିନେ ଧରାପୃଷ୍ଟ, ଥାଇ ବଳ, ପ୍ରାଣ ଅପ୍ରମିତ,
ସେ କେଉଁ ଆଦିମ ଯୁଗେ, କେମନ୍ତେ କେଜାଣି –
ଛାଡ଼ିଯାଇ ପୃଥିବୀର ମାଟିତଳେ ମାତ୍ର କେତେ କଂକାଳର ବାଣୀ ।

ବୁଦ୍ଧିମାନ୍, ସ୍ନେହଶୀଳ, ସରଳ ସେ, ସ୍ୱାଭାବିକ ମନୋଜ୍ଞ ମନୁଷ୍ୟ,
ଲୁପ୍ତ ଅବା ଲୀୟମାନ ଧରାପରୁ ଆଜି,
ଦୃଶ୍ୟମୟ ବିଚିତ୍ର ସଂସାରେ,
ଅତି-କ୍ଳେଶ ଦୃଶ୍ୟ ।
ମୃତ ବା ମୁମୂର୍ଷୁ ପୁଣି ସତ୍ୟ, ନ୍ୟାୟ, କରୁଣା, ମମତା
ଶୁଦ୍ଧ-ସ୍ୱପ୍ନ-ଲୋକେ ଉଠି ସୁନ୍ଦରର ସୃଜନ କ୍ଷମତା –
ଏପରି ସେ ନବତନ, ନିରାନନ୍ଦ ନିଷ୍ଠୁର ଧରାରେ,
ଯିବା ପାଇଁ କିପାଁ ଏ ବାଧତା ?

କୋଟି କୋଟି ଯୁଗଧରି ଜାଗରିତ ରହି, ଆଜି ତମେ,
ହେ ଚିର ଅତନ୍ଦ୍ର,
ଊନବିଂଶ ଶତାବ୍ଦୀରେ ହେଲ କି ହେ ସତେ ଶଯ୍ୟାଗତ,
ଛାଡ଼ିଦେଇ ଅନ୍ୟ ହାତେ ପୁରାଣ ଏ ଧରା
ଶାସିବାକୁ, ଶୋଧିବାକୁ, ସୃଜିବାକୁ ଅବା
କ୍ରୀଡ଼ନକ ନବ-ତାରା, ଚନ୍ଦ୍ର ? (୧)

---

(୧) ବୈଜ୍ଞାନିକମାନଙ୍କର ନୂତନ ଯାଦୁକ୍ରିୟା ସ୍ପୁଟ୍‌ନିକ୍‌ଆଦିକୁ ଲକ୍ଷ୍ୟକରାଯାଇଛି ।

ଛତୁଫୁଟା ଛତ୍ରପତିଗଣେ
ମନୁଷ୍ୟର ଭାଗ୍ୟପତି କରିଦେଇ ଗଲ ଭଗବାନ,
ଅଳଂକୃତ କରିବାକୁ ଦମ୍ଭେ, ତବ ପରିତ୍ୟକ୍ତ ସ୍ଥାନ ?
ତବ ବାଣୀ ତୁଷ୍ଣୀ ଆଜି ସାରା ଧରିତ୍ରୀରେ
ଏଇ ଯେତେ ଦଳପତି ଗିରେ,
ସାଇବେରିଆର ହିମୁ, ସିଂହଳର ଶ୍ୟାମ କୁଞ୍ଜେ କୁଞ୍ଜେ,
ଆମାଜନ୍ ଘନାରଣ୍ୟେଁ ଆମୁର୍‌ର ଶୈଳାକୀର୍ଣ୍ଣ ତୀରେ,
ନରକଦମ୍ବିତ ଏଇ ବିପୁଳା ଧରଣୀ,
ପ୍ରଚାଳିତ ଦେଖ ଦେଖ ତ୍ରାସେ,
ଦଳପତି ଖିଆଲରେ କଣ୍ଟକିତ, ମୁହୁର୍ମୁହୁଃ ଆକ୍‌ଟ, ଅର୍ଡ଼ିନାନ୍‌ସେ ।
ଆତ୍ମରକ୍ଷା ଆଶେ
ପଳାତକ ଯେତେ ବାକ୍ୟ ଋଷି ଦେବତାର,
ମନୁଷ୍ୟହିଁ ଏଇ ଦେଖ ଦିଶେ ଦିଶେ ଭୟେ ଲୁକ୍‌କାୟିତ,
କେଉଁ ମତେ ରଖିବାକୁ ମାନ ଆପଣାର ।
ଶୁଣ ତେଣୁ ଭଗବାନ,
ଧରାକୁ ଫେରିବୁ ଆମେ ଯେବେ ବର୍ତ୍ତମାନ,
ହେବୁ କି ଈଶ୍ୱର-ପୁତ୍ର ଗର୍ବୋନ୍ନତ ନର,
ହେବୁ ଅବା କମ୍ୟୁନିଷ୍ଟ, ଡିମୋକ୍ରାଟ୍, ପି.ଏସ୍.ପି., କଂଗ୍ରେସୀ
ସଭ୍ୟ କେଉଁ ଗୋଷ୍ଠୀ ବା ଦଳର ?
କଉଣସି ଅବା କଉଣସି
ଦଳପତି-କର-ଦୃଢ଼-ରଶି
ନ ହୋଇଲେ ଉପବୀତ ପ୍ରତ୍ୟେକର କ୍ଷୁଦ୍ର ଗ୍ରୀବାତଟେ,
କେ ରଖିବ ଆମ ପ୍ରାଣେ, ଦିବା ରଜନୀର
ବ୍ୟାପକ ସଙ୍କଟେ ?
ଆମେ କି ପାରିବୁ ବଞ୍ଚି ଲୋକ ହୋଇ ଧରା-ସମାଜର ?
ଦଳ ଦଳପତି ଆଜି ସବୁମନ୍ତେ ପ୍ରାଣପତି, ଜନମତପତି
ସ୍ୱାମୀ ହେ ତୁମର,
ହେ ଜଗଦୀଶ୍ୱର ।
ଶିଳ୍ପୀ, କବି, ସତ୍ୟ-ଶିବ-ସୁନ୍ଦର-ପୂଜାରୀ
ଆମେ ପୁଣି ଅଛୁଁ କେତେ ଜଣ; –

କାହିଁକି ଠେଲୁଛ ଧାତା, ଜାଣି ବରିବାକୁ ଜୀବନ୍ତ ମରଣ ?
ଜାଣି ଜାଣି କରିବୁ କି ନିନ୍ଦା, ଦୁଃଖ, କାରା-ଲାଞ୍ଛନାର
ବନ୍ଧୁ-ନିମନ୍ତ୍ରଣ ?
ନର ନାହିଁ ନାହିଁ ଆଉ, ନାହଁ ତମେ ନିଜେ ନାରାୟଣ,
ଅଛି ମାତ୍ର ଯହିଁ ଖାଲି ନେତା, ଆଉ ଦଳ ସଂଗଠନ,
ଫୁଟୁ ଫୁଟୁ ଯହିଁ
ଚିନ୍ତା ଓ ମତର ହୁଏ ମସ୍ତକ-କର୍ତ୍ତନ,
ଶିକ୍ଷା-ମନ୍ତ୍ରୀ-ଦପ୍ତରର ହୁକୁମ ଅମାନ୍ୟେ,
ଭୋଗ ଯହିଁ ନିର୍ଯାତନା, ଅ-ଭୋଜନ; ଶେଷରେ ମରଣ
ବୀରଚକ୍ର ପଦ, ପୁରସ୍କାର
କିଛି ନାହିଁ ଆମ ଦରକାର,
ବଂଚିବାକୁ ଯଦି ନାହିଁ ପନ୍ଥା ତବ ସେହି ଧରା ପରେ,
ସତ୍ୟ-ସ୍ନେହଶୀଳ ଖାଣ୍ଟି ମନୁଷ୍ୟ ରୂପରେ,
ଶୁଣ ଭଗବାନ,
କବି, ଚିତ୍ରକରେ ଆଉ ଧରଣୀରେ ନୂଆ ପଠିଆଇ
ନାହିଁ ଦିଅ ତମ ନିଜ ପରମ ବ୍ୟକ୍ତିତ୍ୱେ
ଜାଣି ଜାଣି ମୂଢ଼ ଅପମାନ ।''

ଆମ୍ଭାଦଳ ଏଇପରି ଡାକେ ଭଗବାନେ,
ଡାକେ, ଡାକେ, ଡାକେ —
ସ୍ୱର୍ଗର ଏପାଖେ, ମାଓ-ଚାଉ, ନାସେର ପ୍ରମୁଖ
ଦେଶେ ଦେଶେ ଯେତେସବୁ ଛୋଟ ବଡ଼ ନରଷଣ୍ଢଦଳ,
ଦୁର୍ଦ୍ଧର୍ଷ ଉତ୍ସାହେ କରେ ଧରା ଟଳମଳ,
ଧରାରେ କରିବାପାଇଁ ଭୂସ୍ୱର୍ଗ ସ୍ଥାପନ
ଜୀବନର ମନ୍ତ୍ର ଯହିଁ ଖାଲି ଅନ୍ନ, ଖାଲି ଉତ୍ପାଦନ,
ନରତ୍ୱ-ଘାସର କରି ସର୍ବଶେଷ ଚେର ଉତ୍ପାଟନ,
ନିଜର ମୁଠାରେ ରଖି ନିଖିଳ ଲୋକର ଭାଗ୍ୟ ନିୟନ୍ତ୍ରଣ ।
ଚାରିଆଡ଼େ ନେତୃପୂଜା, ଦଳ-ଜୟକାର
ଛତ୍ରଭଙ୍ଗ ବ୍ୟକ୍ତି-ବ୍ୟକ୍ତ ଶବଳିତ ମାନବ ଆମ୍ଭାର,
ସତ୍ୟ, ସ୍ନେହ, ନ୍ୟାୟ, କରୁଣାର, —
ଫାଶି, କାରାଗାର, ନର, ବିଧାତାର ।

# ନୂତନ ପଞ୍ଚକ ✶

## (୧) ଚାଲେଞ୍ଜ୍

ପରୀକ୍ଷା ମୁଁ ଦେଇଛି,
କେଉଁ ଡିଭିଜନ୍‌ରେ ପାସ୍ ?
ସେ କେବଳ ପୁସ୍ତକ-କୀଟର ପ୍ରଶ୍ନ,
ପ୍ରଗତିଶୀଳର ପ୍ରଶ୍ନ ତା' ନୁହେଁ ।
ପ୍ରଗତିଶୀଳର ଶ୍ରେଣୀ ନାହିଁ,
ସେ ଚାହେ ଶ୍ରେଣୀହୀନ ପାସ୍,
ଯେପରି ସେ ଚାହେ ଶ୍ରେଣୀହୀନ ସମାଜ ।
ଏଇ ଯେ ଅଧ୍ୟାପକମଣ୍ଡଳୀ,
କେବଳ କେତୁଟା ପିଲାଙ୍କୁ
ଯେ ଫାଷ୍ଟ ଡିଭିଜନରେ ରଖିଦିଅନ୍ତି,
କି ତାଙ୍କ ମତଲବ୍ ?
କିଇବା ତାଙ୍କର ଲକ୍ଷ୍ୟ ?
କିପରି ୟା ଦ୍ୱାରା ଦେଶ ଆଗେଇବ ?
ପ୍ରକୃତ ପ୍ରଗତି ନୁହେଁ କି ଦେଶର
ଯଦି ସମସ୍ତେ କରନ୍ତେ ପାସ୍ ?

---

✶ ଖୁବ୍ ସମ୍ଭବତଃ ୧୯୬୦ରେ ଉତ୍କଳ ସାହିତ୍ୟ ସମାଜ 'ନୂତନ କବିତା' ଉପରେ ତାତ୍ତ୍ୱିକ ଆଲୋଚ଼ନା ପାଇଁ ଏକ ସଭାର ଆୟୋଜନ କରିଥିଲେ । ବକ୍ତା ଥିଲେ ଲବ୍ଧ-ପ୍ରତିଷ୍ଠ 'ନୂତନ କବିତାର କବି' ଶ୍ରୀଯୁକ୍ତ ଅନନ୍ତ ପଟ୍ଟନାୟକ । ଖୁବ୍ ଉତ୍ସାହର ସହିତ ମୁଁ ଯାଇଥିଲି ସେହି ବକ୍ତୃତା ଶୁଣିବାକୁ । କିନ୍ତୁ ଦୁଃଖର ବିଷୟ, ମୋଟାବୁଦ୍ଧିରେ କିଛି ଗ୍ରହଣକରିହେଲାନି ।

କିନ୍ତୁ ସେହି ସଭା-ଦିନର ସକାଳେ ମୁଁ ନିଜକୁ ବାରମ୍ବାର ପଚ଼ାରିଥିଲି – କ'ଣ ଏ 'ନୂତନ କବିତା' ? ପାଞ୍ଚ ହଜାର ବର୍ଷର ମାନବିକ ସଭ୍ୟତାରେ ପୃଥିବୀର ସହସ୍ର ଭାଷାରେ ଅଗଣିତ ପ୍ରକାଶ-ଭଙ୍ଗୀର ପରୀକ୍ଷା ଘଟିଯାଇଛି; କିନ୍ତୁ ସେସବୁ 'ଗବିତା' ବୋଲି ଧରାଯାଉଛି । ଆଉ ଏଇ 'ନୂତନ କବିତା'ହିଁ କେବଳ କବିତା ଓ ଶ୍ରେଷ୍ଠ କବିତା ! ଜୀବନଟା ତେବେ ବ୍ୟର୍ଥ ହୋଇଗଲା କେବଳ ଗୁଡ଼ାଏ ଅପଦାର୍ଥ 'ଗବିତା'ର ଖତଗଦା ସୃଷ୍ଟି କରି ! ଏକାବେଳେ ନିଶ୍ଚିହ୍ନ ହୋଇଯିବା ଅପେକ୍ଷା ଗୋଟାଏ ହେଲେ ''ମଡ଼ର୍ଣ୍ଣ ପୋଏଟ୍ରି'' ସୃଷ୍ଟି କରି ଓଡ଼ିଆ ଭାଷାର କବିସମାଜର ସବା ତଳେ ହେଲେ ନାଁଟା ରହିଯାଇପାରେ, ଏଇ ଆଶାରେ ଏଇ କେତୋଟି 'ନୂତନ କବିତା' ସାଙ୍ଗେ ସାଙ୍ଗେ ସେଇ ସକାଳେ ଲେଖିପକାଇଥିଲି । ସଶଙ୍କ ଚିତ୍ତରେ ବହୁକାଳ ପରେ ପାଠକମାନଙ୍କ ଆଗରେ ତାହା ପରିବେଷଣ କରୁଛି ।

କେବେ ହେବ ଏ ଦେଶରେ ସାଧାରଣତନ୍ତ୍ର ଶାସନ,
ଯେବେ ନାହିଁଥିବ ଫାଷ୍ଟ ବା ଥାର୍ଡ଼ ଡିଭିଜନ,
ସମସ୍ତେ ହେବେ ସମାନ,
ବାରମ୍ବାର ଫେଲ୍ ହୋଇ ମଧ୍ୟ,
ଜଣେ ଆଶା କରିପାରେ
ମୁଖ୍ୟମନ୍ତ୍ରୀ
ହେବ ସେ ଦେଶର ।
କେବେ ଆସିବ ସେ ସ୍ୱର୍ଣ୍ଣଯୁଗ ?
ଉଠିଯିବ ଯେବେ ସବୁ ଭେଦାଭେଦ,
ଫେଲ୍ ହେଲେ ମଧ୍ୟ,
ମୁଁ ଖାଲି ମଟର କାର୍‌ରେ ବସି
ଦେବି ଖାଲି ଅଡ଼ର୍,
ଅନ୍ୟମାନେ ସବୁ କାମକରୁଥିବେ
ସେଇମାନେ, ଯିଏ ଫାଷ୍ଟ ଡିଭିଜନରେ କରିଥିଲେ ପାଶ୍ ।
କେବେ ତା ଘଟିବ ?

## (୨) ରୂପକଥା

ସୁନାଗିନା ଭରି ଅଶ୍ରୁ-ମୁକୁତାଜାଳ,
ଜାଞ୍ଜିବରର ନାରିକେଳ ଫୁଲ ସମ,
ରୂପ-କାହାଣୀର ରାଜବାଳା ଦେଲା ଦେଖା
ମେରୁରେ ଯେପରି ଅରୋରାବୋରିଆଲିସ୍ ।
ଅଳକାପୁରୀରେ ବିରହୀ ଯକ୍ଷ-ବାଳା
କୁଟଜ କୁସୁମେ ବନ୍ଦଇ କାମଦେବ,
ମଲ୍ଲୀ ପାଖୁଡ଼ା ଝଡ଼ିପଡ଼େ କଳା କେଶୁ
ହଂସ ମିଥୁନ ଆଁକିବ କିପାଇଁ ସ୍ତନେ ?
ଗ୍ରାମ-ସୀମାତଳେ କକଡ଼ାଶୃଙ୍ଗୀବନ,
ଅଭିସାରିକାର ଲୋତକର ଗାନ ଉଠେ,
ପୋଖରୀ ତୁଠରେ ଗ୍ରାମଣୀ ଜ୍ୟେଷ୍ଠ ପୁଅ,
ଏକା ଗାଇ ଚାଲେ ଭଞ୍ଜର ରସ-ଗାଥା ।
ଅଗନାଅଗନି ବନସ୍ତେ ରଜାପୁଅ,
ଦେଖିଲା ଶୋଇଛି ଘୁମନ୍ତ ରାଜବାଳା,

ଅସୁରୁଣୀ ବୁଢ଼ୀ ଯାଇଛି ମନିଷ ଖାଇ
ଗଣ୍ଡେ ତାହାର ଦେଲା ଚୁମ୍ବନମାଳା ।
ପହିଲି ଉଷାର ଶିଶିର-ପଖଳା ଘାସେ,
ସାଧବ ବୋହୂ ଯେ ଯାଉଛି ନଈର ଘାଟେ,
କାହା ମନକଥା ମନରେ ବିଚାରେ ସେହି,
କାଞ୍ଚଲା ତା'ର ଜାଣେ କି ତା' ଛାତି ବଥା ?

## (୩) ଅହଲ୍ୟା ପ୍ରଧାନ

ମୌସୁମୀର ବର୍ଣ୍ଣ ଘେନି
ଚୌରଙ୍ଗୀର କାମନା ଅରଣ୍ୟେ
ଚନ୍ଦ୍ର ଯେବେ ଉଇଁଥିଲା
ଛେନାଛିଣ୍ଡା ମେଘର ଉଢ଼ାଳେ,
ଚମ୍ପକର ସେହି ବେଣୁବନେ
ଦେଖିଥିଲି ଦିନେ ତାକୁ ହଠାତ୍ ସପନେ
ପୂର୍ବପରିଚିତା ମୋର ଅହଲ୍ୟା ପ୍ରଧାନ,
ଆମ ଗାଆଁ ଚାଟଶାଳୀ ଅବଧାନ ଝିଅ,
ମାଆ ଯା'ର କୁଟୁଥିଲା ଧାନ ।

ଟ୍ରାମ୍ ବସ୍ ଚାଲିଥିଲା, ଚାଲିଥିଲା ରିକ୍ସା ଓ ମୋଟର,
ହୃତ୍‌ପିଣ୍ଡରୁ ଯେଉଁପରି ସ୍ନାୟୁଦେଇ ଧାର ଶୋଣିତର
ଧାଏଁ ତରତର,
ଅହିଫେନ ଗିଳିଦେଇ ମାରୁଆଡ଼ି ଢୁଳାଏ ଦୋକାନେ
ବଙ୍ଗାଳୀ କିରାନି ପଢ଼େ ଚାକିରିର ବିଜ୍ଞାପନରାଜି,
ସମାଚାର ପତ୍ରିକା ଓ ନିଉ ଷ୍ଟେଟସ୍‌ମାନେ,
ରେଡ଼ିଓରୁ ଉଠୁଥିଲା ବୀଣାବାଦ୍ୟ ତିରୁମଲ୍ଲ ଭେଙ୍କଟ ରାଓର,
ଏ ସମୟେ ବୁଝିଲି ମୁଁ ଅହଲ୍ୟା ପ୍ରଧାନ
ମୋ ଉପରେ ରଖିଛି ତା' ନୟନ ବିଲୋଳ ।

ରାଜ୍ୟପାଳ ଗାଡ଼ି ଗଲା, ପାଇଲଟ ଯାଏ ଆଗେ ଆଗେ
ଆଙ୍ଗ୍ଲୋଭାରତୀୟ ତନ୍ୱୀ ଓଷ୍ଠ ଧୋଇ ଲିପ୍‌ଷ୍ଟିକ୍ ରାଗେ,
ଯାଏ ଚାଲି ଫୁଟ୍‌ପାଥେ, ଚଳମାନ ରୋଡ଼ୋଡ୍ରେଣ୍ଡ୍ରନ ସେ
ଅଥବା ସାମ୍ପେନ ପାତ୍ର,
ଅବା ଏକ ରେଖା ଜ୍ୟାମିତିର,
ଅବା ଏକ ମାନିଫାଷ୍ଟୋ ଲେନିନିର ଲୋହିତ-ପାର୍ଟିର ।

ହୀରକର ମତ୍ସ୍ୟ ଚାଲେ ସ୍ୱର୍ଣ୍ଣପଦ୍ମଭରା ମାନସରେ
ଜାଜ୍‌ର ଅର୍କେଷ୍ଟ୍ରା' ଛାଡ଼ିଦେଇଛନ୍ତି ମତ୍ତ ପଙ୍ଗପାଳେ,
ଘାସର ପ୍ରାନ୍ତରେ ।

ଆକାଶର ସିଲଟରେ ପ୍ରବେଶିକା ପରୀକ୍ଷା ପାଇଁ ବା
ତାରାଗଣ କାଟୁଛନ୍ତି ନାନା ଅଙ୍କ ବୀଜଗଣିତର,
ତଳେ ଶତ ବାତାୟନୁ ଦେଖାଯାଏ ମୋନାଲିସା ସ୍ମିତ
ତିକ୍ତ ମନୋହର ।

ଘଣ୍ଟାରେ ହେଲାଣି ବେଳ ନଅଟା ପନ୍ଦର;
ମେଏସ୍‌ରେ ରେଡ଼ି ହୋଇଯିବଣି ଡିନର ।
ଏଇ କାଳେ ଅହଲ୍ୟା ପ୍ରଧାନ
ଚଷମାର ପଛପଟୁ ଜଣାଗଲା ଦିଏ ମତେ ଧ୍ୟାନ ।
ପଚାରିଲି 'ଏଠି ତମେ କିପରି ଗୋ ?' – କହିଲା ଉତ୍ତରେ,
''ଚାଟଶାଳୀ ପରେ,
ବହୁ ଦିନ ପରେ ଦେଖା । ଇତିହାସ କିମ୍ପାଇ ପଚାର ?
ବହୁ ତୁଠେ ପାଣି ଖାଇ ଏବେ କରେ ପି.ଏସ୍.ପି. ପ୍ରଚାର ।''

ଆସିଯାଇଥିଲା ମୋର ଟ୍ରାମ୍,
ଉଠିଗଲି ତରତରେ, ଯଦିଓ ସେକାଳେ,
ନାହିଁ ଥିଲା ଅତି ବେଶି ଜାମ,
ଫୁଟ୍‌ପାଥେ ରହିଗଲା ଅହଲ୍ୟା ପ୍ରଧାନ ।
ଭଲହେଲା, କଥାବାର୍ତ୍ତା ବେଶି ହେଲା ନାଇଁ,
ପଚାରି ତ ପାରିଥାନ୍ତି, ବଞ୍ଚୁଛ କିପରି ?
ଲାଲ୍ ଝଣ୍ଡା ଉଡୁଛି କି ନାହିଁ ?

## (୪) ତାରତୀର୍ଥ

ଚକିତ ଚଇତ ଚିହିଁକାର ଦେଲା
ଛାଇ ନିଦମଡ଼ା ଛପନେ,
ଚଇତନ ସ୍ୱାଇଁ ଗାଆଁ ବିଲମାଳେ
ଚତୁର କାକର ସକାଳ ପଖାଳେ
ଡାକିଲା କୁହାଟି ସପନେ ।
ଗାଇଆଳ ପରା ଗହନ ଗଗନେ
କଇଁଫୁଲ ମାଳା ଗୋଟାଏ,

ଗହମ କିଆରି ଢେଉ ଖେଳିଯାଏ
ପାଗଲା ବାଦଲ ରେଶ୍‌ରେ ଧାଏଁ
ଶ୍ରମିକ ବଧୂରେ ମତାଏ ।
କଟକ ନଗର ମହାନଦୀ ଘାଟେ
ମୋଟରର ମେଳା
ମୋଟରର ମେଳା
ମୋଟରର ମେଳା ଦେଖେ କେ,
ଟେଲିଗ୍ରାଫ୍‌-ତାର-ବୀଣା ସଙ୍ଗୀତେ
ମନ୍ତ୍ରୀଦଳର ମଦ-ଇଙ୍ଗିତେ
ଗ୍ରାମଗୋଷ୍ଠୀର ଯୋଜନା କାବ୍ୟ ଲେଖେ କେ ?

## (୫) ବେଦାନ୍ତ

ଚାଲ ଚାଲ ଉଠ ସେଇ ଏକଣା ପିଣ୍ଡାରେ
କୁକୁରର ତାଡ଼ନାରେ ଧାଏଁ ଯେହ୍ନେ ତ୍ରସ୍ତ ମେଷଦଳ,
ଯାହାର ହେଉନା କିଆଁ – କ୍ଷୁଧାତୁର ବୁଲାଷଣ୍ଢ କେବେ
ପଢ଼ାରେ କା'ର ଏ ଘାସ, ନଡ଼ା ଅବା ପରିବା ପସରା ?
ଚାଲ ଚାଲ ପିଣ୍ଡା ପରେ – ଭିନ୍ନ ଖାଲି ଥିବା ନଥିବାର
ସର୍ବମୟ ବ୍ରହ୍ମ ବୋଲି କହନ୍ତିନି ବେଦାନ୍ତୀ ପଣ୍ଡିତେ ?
ସେଇ ପଣ୍ଡିତର ଘର ପିଣ୍ଡା ସେଇ, ଚାଲ ଯିବା ସେଠି,
ନଈପାଣି ମାଡ଼ିଯାଏ ବିଲେ ଯେହ୍ନେ ଆଷାଢ଼ ଜୁଆରେ ।
ଚାଲ ଚାଲ ପିଣ୍ଡା ପରେ – ଥୁଅ ଆଗ ଗଣ୍ଡିଲିଟିମାନ,
ଧୁଅ ଆଗ ଧୂଳି ପାଦ, କାଢ଼ ତମ ବଟୁଆ କୋଥଳି,
ଏଇ ଦେଖ 'ସମାଜ'ରେ ବାହାରିଛି କେରଳ ରାଜ୍ୟରେ
ହାତ ଭର୍ତ୍ତି କଲେ କେହ୍ନେ କଉଶଳେ ନେହ୍ରୁ-ପ୍ରସାଦ ।

## (୬) ନିନ୍ଦା କେ କରେ ?

ନିନ୍ଦା କେ କରେ ?
କି ନିନ୍ଦା କରେ ?
ଜଗତ ନିନ୍ଦା କରେ କି ?
ମା ଭୈ, ପଥିକ,
ଠିଆହୁଅ ଏକା
ସହସ୍ର ଶର, ସହସ୍ର ଟେକା
ମାରିଲେ ପାହାଡ଼ ଟଳେ କି ? ୧ ।

ପାହାଡ଼ ପରିରେ ରହ ଅବିଚ଼ଳ,
ପୂର୍ଣ୍ଣ, ଆପଣା ପୀଠରେ
ନିଜ ଅନ୍ତରୁ ପିଇ ଅମୃତ,
ନିଜ ଚିତ୍ତର ଗୀତି ଅ-ଶ୍ରୁତ,
ଶୁଣି ଚାଲ ନିଜ ପଥରେ । ୨ ।

ତମେ ଆଉ ତମ ଭଗବାନ –
ଭାଇ, ଦ୍ୱିତୀୟ ଆଉ କେ ନାହିଁରେ,
ଅବାନ୍ତର ସେ ଲୋକମୁଖ-ବାଣୀ,
ନୀଚ ଈର୍ଷାର ସେ କୋଟି' କାହାଣୀ,
ତା'ପାଇଁ ଭାବ କିପାଇଁ ରେ ? ୩ ।

ମୂକ ସେ,
କିନ୍ତୁ ଅଦ୍‌ଭୁତ ତାର ବଚ଼ନ,
ଯେ ଥାଏ ମରମେ,
ସେହି ମୂକ ସାଥେ କଥୋପକଥନ,
ସେ ଅଜଣା ସାଥେ ମରମ ମିଳନ
କରି, ଆନନ୍ଦମୟ କର ନିଜ ଜୀବନେ । ୪ ।

ପଥିକ ତମର ପଥ-ଶେଷ କାହିଁ ?
ପଥେ ଆଳସ୍ୟ କର ଯେ,
ସବୁ କରତାଳି, ନିନ୍ଦାର ତଳେ
ମୂଳ ଲକ୍ଷ୍ୟକୁ ଜାଳି ହୃଦୟରେ,
ସତ୍‌-ତମେ ଥାପି ନିଜ ସତ୍ତ୍ୱରେ
ନଗଣ ଅବାନ୍ତର ଯେ । ୫ ।

ନିନ୍ଦା କେ କରେ ?
କି ନିନ୍ଦା କରେ ?
ଜଗତ ନିନ୍ଦା କରେ କି ?
ନଦିଅ ଶ୍ରବଣ
ନକର ମନନ
ଆପଣା ପ୍ରଦୀପେ ଦେଖ ଏ ଭୁବନ,
ନାହିଁ ବିକଶିବ
ତେବେ ସୁନ୍ଦର
କମଳ ଆପଣା ସରେ କି ? ୬ ।

---

# ଗୀତ-ରେଣୁ

## ଫଗୁଣ ସକାଳ

ଫଗୁଣ ସକାଳେ ଚିତ୍ତ ଦୁଆରେ
କର କିଏ ମାରେ କିପାଇଁ,
ସୁନେଲି କିରଣ ଗଛ ଶିଖେ ଶିଖେ
ଶାନ୍ତ ଆଲୋକ ଭାସେ ଦିଶେ ଦିଶେ
ବହେ ଦକ୍ଷିଣା, ମଲ୍ଲିକା-ବାସ ଭସାଇ ।
ଧରଣୀ-ବଧୂର ମରମ ସ୍ୱପ୍ନ ସମାନ
ପଲାଶ କରିଛି ଫଗୁମୟ ନଭ ବିତାନ,
କୋକିଳ କୁହୁରେ ଧରା-ପ୍ରାଣ ଉଠେ ବଥାଇ ।
ଫଗୁଣ ପ୍ରଭାତେ ଏଇ ଆନନ୍ଦ ବଜାରେ
ଶ୍ରବଣେ କେ କହେ ଆ'ଆ ତୁହି ପ୍ରାଣ ମଜାରେ,
ଜଞ୍ଜାଳ ତୋର ଜାଣି ଜାଣି ଦେ'ରେ ହଜାଇ ।

## ହେମନ୍ତ ନିଶାନ୍ତ

ହେମନ୍ତ ନିଶାନ୍ତ –
ମନ୍ଦ ବହେ ବାତ, ଶାନ୍ତ, ହିମ-ସ୍ନାତ
କାନ୍ତ ଜୋଛନାରେ, ଧରା ମୃଦୁ ଆବୃତ,
ଘାସ-କୁମାରୀକୁଳ ଶିଶିର-ଚୁମ୍ବିତ,
ଶୀତଳ, ଅନାକୁଳ ଗଗନେ ତାରାଦଳ,
ବିମଳ, ପ୍ରଶାନ୍ତ – ହେମନ୍ତ ନିଶାନ୍ତ ।
ବିଜନ ବାଟଘାଟ – ହୋଇନାହିଁ ପ୍ରଭାତ,
ଏକାକୀ କେଉଁ ବଧୂ ନୟନ ଅବନତ,
କୁମ୍ଭ କାଖେ ତାର, ସଧୀର ପଦପାତ
ସରସୀ ଘାଟେ ଚଳେ ଲଜ୍ଜାନତ ମାଥ,
ବକ୍ଷେ କି ଭାବନା ଚିତ୍ତେ କି ଗଣନା
ଭ୍ରାନ୍ତ ନା କାନ୍ତ ? ହେମନ୍ତ ନିଶାନ୍ତ !

## ସବୁ ଥାଇ କିଛି ନାହିଁ

କାହିଁ ପାଇଁ ଅଶାନ୍ତ ଚଞ୍ଚଳ
ପ୍ରାଣ ମୋର, ହତାଶ-ଜର୍ଜର ।
ସବୁ ଥାଇ କିଛି ନାହିଁ ପରା
ହସ ତଳେ ଲୁହ ନେତ୍ରଭରା
ମିଳିବାର ହାତୁ ପଡ଼ିଗଲା,
ଏ ଜୀବନ କରୁଣ, ନିଷ୍ଫଳ ।

ଚିରକାଳ ଉଠେ ହାହାକାର,
ନିଜେ କରେ ନିଜରେ ଧିକ୍‌କାର,
ଦଳିତ ମୋ ସବୁ ଅହଙ୍କାର,
ନାହିଁ ଭାଗ୍ୟେ ସୁଖ ବା ମଙ୍ଗଳ ।

ଡାକେ ପ୍ରଭୁ, ହେ ଜୀବନନାଥ
କହ ଥରେ ଅଛି କାହିଁ ବାଟ
ଆନନ୍ଦରେ କରିବି ସାକ୍ଷାତ
ଭୁଲିବି ଏ ବୃଥା କୋଳାହଳ ।

## ଦୁଃଖ ଦିଅ

ଦୁଃଖ ଦିଅ, ଦୁଃଖ ଦିଅ ପୋଡ଼ି ମୁଁ ହୁଏ ଶୁଦ୍ଧ ସ୍ୱର୍ଣ୍ଣ,
ଅଶ୍ରୁ ଦିଅ, ଅଶ୍ରୁ ଦିଅ, ଦେଖାଉ ଧୋଇ ତୁମରି ବର୍ଣ୍ଣ,
ହେ ନାଥ, କରେ ଚରଣତଳେ
ନିଖିଳ ଆତ୍ମା ସମର୍ପଣ ।
ତୁମେଇ ଦିଅ, ତୁମେଇ ନିଅ,
ବୃଥା ଏ ଜୀବର ଅହଙ୍କାର,
ବିଶ୍ୱଲୀଳାର ଦୁଷ୍ଟ ଶିଶୁ
ତୁମକୁ କରେ ନମସ୍କାର ।
ନମସ୍କାର ଚରଣ ତଳେ,
ଅର୍ଘ୍ୟ କେବଳ ଅଶ୍ରୁଧାର ।
ଆଜି ଏ ବିପଦ ଅନ୍ଧକାରେ ଅନ୍ଧୀଭୂତ ଦୃଷ୍ଟି ଯେବେ
ଅନ୍ଧଯଷ୍ଟି ଛଡ଼ାଇନେଲେ, କିପରି ବାଟ ଚାଲିବି ତେବେ ?

ଦିଅ ହେ ଦେଖା ପରମ ଜ୍ୟୋତି
ଦୁର୍ଦ୍ଦିନରେ ଖୋଜୁଛି ଏବେ,
ଦୁଃଖେ ଖୋଜାର ଅଶ୍ରୁ ଯେତେ,
ତୁମରି ପୂଜା ଦ୍ରବ୍ୟ ସେ ଯେ ।

## ହେ କରୁଣ ପିତା !

ଯା ପାଇବା ମୋର ଉଚିତ, ଦେଇଛ
ଯେହ୍ନେ ଯାହା ପ୍ରୟୋଜନ,
ଅବୁଝାରେ ସିନା କରିଅଛି ପଦେ
ନୀଚ ନିନ୍ଦା ଉଦ୍‌ଗିରଣ ।
ବିପତ୍ତିକି ଭେଟି ଭାବୁଥିଲି ଏ କି,
ଜଗତରେ ନାହିଁ ନ୍ୟାୟ ?
ଏବେ ମୁଁ ଦେଖୁଛି ନେତ୍ର ନୀର ପୋଛି,
ହୋଇଛି ତା' ସୁଖ-ବାହ ।
ବନ୍ଧୁର ପଥରେ ଚଳାଇ କ୍ଳେଶରେ
କ୍ଷତ-ପଦ କଲ ଯାହା,
ଅବନ୍ଧୁ ପାଇଁକି ମଧ୍ୟ ପ୍ରତି କ୍ଷତେ
ଅଙ୍କୁରି ଉଠଇ ମାୟା ।
ସହସ୍ର କଶାରେ ଦାରୁଣ ଦଶାରେ
ଗଢ଼ିଲ ଯା' ମାରି, ପୋଡ଼ି,
ପ୍ରତିଟିହିଁ ଆଜି ଭାବୁଛି ଆଶିଷ
ପୂର୍ବ ସହ ପର ଯୋଡ଼ି ।
ଭ୍ରାନ୍ତିରୁ ଯେ କର ଉଦ୍ଭବ ସତ୍ୟର,
ପ୍ରମାଦରୁ ଜ୍ଞାନ-ବୀଜ,
ହେ କରୁଣ ପିତା ଲାଜେ ଆଜି ହେଜେ,
ସବୁଠାରୁ ତୁମେ ନିଜ ।

## ଖୋଜରେ ତା'ରେ

ବନେ ବନେ, କାହାକୁ ଖୋଜେ ରେ ବାୟୁ
ମନେ ମନେ ।

ଖୋଜଇ ଆଲୋକ କା'ରେ,
ଏ ଧରାର ଧାରେ ଧାରେ,
ଫୁଲ କା'ରେ ଖୋଜି ଫୁଟି ହସେ ରେ,
କାହାରେ ଖୋଜେ ଏ ମାଟି ପିନ୍ଧି ଶ୍ୟାମ ଦୂବ ଶାଢୀ
କି ଲାଗି ମାଟିରେ ପ୍ରାଣ ପଶେ ରେ ।

କି ଲାଗି ଜୀବନଧାରା ଫୁଟି ଉଠେ ଆତ୍ମହରା,
ଏ ଧରାର ପ୍ରତି କଣେ କଣେ ।
ନିଜେ ଧରା ଖୋଜେ ତା'ରେ, ଘୂମି ଘୂମି ବ୍ୟୋମ ପାରେ
ଘେନି ଭେଟି ଋତୁର କୁସୁମ,
ଖୋଜେ ରବି ବିଧୁ ତାରା ଭ୍ରମି ଅନ୍ତରୀକ୍ଷ ସାରା
ଘେନି ଜ୍ୟୋତି-ପ୍ରଦୀପ-କୁଙ୍କୁମ ।

ହେ ପ୍ରାଣ, ଖୋଜ ରେ ତା'ରେ, ଲୁଚିଛି ଯେ ସବୁଠାରେ
ହୃଦ-ଧ୍ୱନେ ଯା' ପଦ ପତନେ ।

## ପରମ ସଖା

ବିପଦ ଯେବେ ବୁଦ୍ଧି-ମନ
ଭ୍ରାନ୍ତ କରେ, ଅ-ଶାନ୍ତ କରେ,
ତୁମକୁ ଯେହ୍ନେ ପରମ ସଖା,
ମରମୁଁ ନାହିଁ ତାଡ଼ନ କରେ ।
ଦୁଃଖ ଯେବେ ପୁଞ୍ଜୀଭୂତ
ବନ୍ଧୁ ନାହିଁ କେହି,
ସେତିକି ବେଳେ ବିଶ୍ୱ ମୋର
ଯେହ୍ନେ ହେ ମୋର ହୃଦୟ-ଚୋର,
ଗଢ଼େ ମୁଁ ତତେ ନେଇ,
ଅ-ନିଜ ବୋଲି ନାହିଁ ମୁଁ ଦୂରେ ତଡ଼େ ।
ତୁମକୁ ନାହିଁ ଜାଣିଲା ପରି
ନ କର କେବେ ଅନ୍ଧ,
ବିରକ୍ତିରେ ନ କରେ କେବେ,
ତୁମର ଲାଗି, ଦୁଆର ମୋର ବନ୍ଦ ।

ତୁମର ପୂଜା ପାଇଁକି ଜଳୁ
ପ୍ରଦୀପ ସଦା ମୋର ଏ ଘରେ;
ସଙ୍ଗହୀନ ଦୁର୍ଦ୍ଦିନରେ ।

## ବାରିଧାରା

ନିଶି ଶେଷେ –
ବାରିଦର ବାରିଧାରା, ଯେସନେ ହୃଦୟ-ହରା
କି ଆବେଗେ ମିଶେ ଆସି ଏ ମାଟି-ଦେଶେ ।

ବାତାୟନ ଭେଦି ଆସେ, କି ଭାଷେ ଗୁରୁ ନିଶ୍ୱାସେ;
ଦୂର ବିଲମାଳେ ଖସେ ପାଗଳ ବେଶେ ।

ସାଇଁ ସାଇଁ ସାଇଁ ସାଇଁ ଡାକଦିଏ କାହିଁପାଇଁ ?
ନିଶି ସାରା ବିଳପିଛି ଚିତ୍ତ ଆବେଶେ ।

ଗଛ ଡାଳେ ଦୋଳି ଖେଳେ, ଗଡ଼ିଯାଏ ବିଲମାଳେ
କେ ଜାଣେ କି ବାଣୀ ସେ ଯେ ମୂକ ଧରଣୀରେ ପେଶେ ।

ବନ୍ଧୀ ରଖି ଘରେ ଘରେ ଏଇବା ସୂଚନା କରେ
ନ ଭାଙ୍ଗ ମୋ ମଧୁକ୍ରୀଡ଼ା ନିବିଡ଼ ଏ ପରିବେଶେ ।

## ସେ କି ଗାଏ

ସେ କି ଗାଏ ରେ ସେ କି ଗାଏ
ଗଗନେ ପବନେ ଯା'ର ଶ୍ରୁତି-ଅଗୋଚର-ଧାର
ନୀରବ ନିଶୀଥେ ବହିଯାଏ ।
ଅନ୍ତରୀକ୍ଷେ ତାରାଦଳ ଅହରହ ନୃତ୍ୟପର
ଗାନ ତାଳେ ତାଳ ରଖି ଧାଏଁ ।
ଘାସେ ଘାସେ ସେହି ଗାନ,
ଅନୁରଣିତ ଏ ପ୍ରାଣ
ସେ ଗାନର ଦରସ୍ଫୁଟ ମାୟେ ।
ସକଳ ଏ କୋଳାହଳେ, ସହି ଲୋକ-ହଳାହଳେ;
ଶୁଣ ଯା'ର ଭାଷା ନାହିଁ ଥାଏ
ରବିକର ଯେ ଗୀତି ଶୁଣାଏ ।

## ଦରଶନ ଦିଅ

ଘନୀଭୂତ ବିପଦର ପ୍ରାବୃଟ ନିଶୀଥେ,
ଦରଶନ ଦିଅ ଆସି କୁଟୀର ଦ୍ୱାରେ,
ନୀରବ ସେ ନିରଜନ ନିମିଷେ ପ୍ରଭୁ
ଭେଟିବି ତୁମକୁ ବୁକୁ ଅଶ୍ରୁଧାରେ ।

ଚାରିଧାରେ ବିପଦର କାଳିମ ଛାୟା
ଦୂରେ ଦୂରେ ଜଗତର ମମତା-ମାୟା,
ମାଧୁରୀ ସେ ମିଳନର ହୁଏ ତେଣୁ ଗାଢ଼ତର
ବାଧା-ବନ୍ଧନହୀନ ପ୍ରଣୟଭାରେ ।

ଆସ ଆସ ହେ ବିପଦ-ମଧୁରକାରୀ,
ଆସ, ଲୋତକ ଲଳିତ-ଶ୍ୟାମ ହୃଦବିହାରୀ,
ନିନ୍ଦା-ବିଜନ-ପଥେ, ମମତାର ସୁନା ରଥେ
ଆସ ଆପେ ଖୋଲି ମମ ବନ୍ଧ ଦ୍ୱାରେ ।

## ଭୋଗର ଆଶା

ଜଞ୍ଜାଳ ଦିଏ ବୋଲି କି ତାହାର
ପ୍ରଣୟ ନାହିଁ ରେ ନାହିଁ ?
କ୍ରନ୍ଦନେ କରେ ଅନ୍ଧ ସେ, ସିନା
ତା'ରେଇ ଖୋଜିବା ପାଇଁ ?
ମୋ ପ୍ରାଣ ବୀଜରେ ଫଟାଏ ସେ କରେ
ନବ ଅଙ୍କୁର ଆଶେ,
ମୋହରି ଅଶ୍ରୁ ମୁକ୍ତାର ମାଳା
ଖୋଜେ ସେ କୁଟିଳ ହାସେ,
ନିଦାଘେ ତତାଏ ଧରଣୀ ସେ ପରା ଆଷାଢ଼-ଆସାର-ଦାୟୀ ।
ଅନନ୍ତ ନଭ ପ୍ରତିବିମ୍ବିତ କ୍ଷୁଦ୍ର ଶିଶିର କଣେ,
ମୋ ଅଶ୍ରୁକଣେ ବିରାଜିବେ ପ୍ରଭୁ ପରମ ଆପ୍ୟାୟନେ ।
କରୁଣ କୋମଳ ସେହି ସେ ଭୋଗର
ଆଶାରେ ହୁଏ ମୁଁ ବାୟୀ,
ତା'ରେଇ ଖୋଜିବା ପାଇଁ ।

## ଦୁଃଖଦହନ ଦିଅ

ଦୁଃଖ-ଦହନ ଦିଅ ହେ ଯଦି ଦୁଃଖ-ଦହନ ଦିଅ,
ସେହି ଦହନର ସ୍ୱର୍ଣ୍ଣାଲୋକେ ସତ୍ୟ ଦେଖାଇଦିଅ ।
ବିଭାବରୀ ଯଦି ଆଜ୍ଞା ତୁମର,
ନାହିଁ ମରେ ଝୁରି ଶୋଭା ଦିବସର,
ନିଶାରେ ଶିଶିର-ମୁକ୍ତା ଗୋଟାଏଁ
ଭେଟିବି ପ୍ରଭାତେ, ପ୍ରିୟ ।
ଏଇ ନିଶୀଥର ଗଭୀର ବିଷାଦେ
ଖୋଜୁ ଏ ଚେତନା ସେହି ସେ ପ୍ରସାଦେ,
ଅଶ୍ରୁ-କରୁଣ-ଗହନ-ବିପିନେ
ଯେ ଫୁଲ ଫୁଟାଇଦିଅ ।

## କାହା ବେଣୁ ଆସ ଆସ ରଟେ

ଜୀବନ-ଯମୁନା ତଟେ
କାହା ବେଣୁ ଆସ ଆସ ରଟେ ।
ନାନା କାମେ ହରବର ନାହିଁ ଥାଏ ଅବସର;
ବେଣୁ-ନାଦ ପକାଏ ସଙ୍କଟେ ।
ବିରହୀ କିଏ ସେ ବଡ଼ ଡାକଦିଏ ଏ କାତର,
ଶୁଣି ଚିତ୍ତ ଘାରେ ଛଟପଟେ ।
କେହି କି ତାହାର ନାହିଁ ଆକୁଳେ ମାଗଇ କାହିଁ
ହୃଦୟର ମମତା ବକଟେ ।
ଯିବି ଯିବି ବୋଲି ଭାବେ ଜଡ଼ିତ ନାନା ଅଭାବେ
ଯାଇ ପାରୁ ନାହିଁ କେଉଁ ମତେ ।

## ଅରୂପ ରାସ

ମୃଗ-ନୟନେ ଚୈତ୍ର ବନେ
ମଳୟ-ଲୀଳା ପାର କି ଦେଖି ?

କିଏ ବିଦେଶୀ ଭୁବନେ ଆସି
କେତେ ଯେ ଚିତ୍ର ଗଲାଣି ଲେଖି । ୧ ।
ମଲ୍ଲୀ ଫୁଟେ ବଲ୍ଲୀ ଲୁଟେ
ଦକ୍ଷିଣା ବାଆ ଥରାଏ ଚିତ୍ତ,
କୋକିଳ ଗାନେ ଲାଗଇ ପ୍ରାଣେ
ନାହିଁ ଯେ ପାଶେ ମରମ-ମିତ । ୨ ।
ହେ କଳା-କେଶୀ, ଏ ଦୂର ଦେଶୀ
ଯିବ ତ ଚାଲି ପୁଣି ପ୍ରବାସେ,
ଆସ ବାହାରେ, ବନ୍ଦି ତା'ରେ
ଭରିବା ଚିତ୍ତ ଅରୂପ ରାସେ । ୩ ।

## ପ୍ରଣୟ

ଫୁଟିଲେ ଫୁଲ ଦୂର କାନନେ
ଭ୍ରମର କାହିଁ ଥାଏ ଖୋଜି ତା' ମଧୁ ଖାଏ,
ଲଭେ ସକଳ ତହିଁ ଜୀବନେ ।
ଏକ ହୃଦ-କମଳେ ଉଠିଲେ ପ୍ରୀତି-ବାସ
ଆରେକ ମୁଖେ କିପାଁ ଫୁଟଇ ମଧୁ ହାସ,
ଏକର ଆଶା ଆନ ହୃଦେ ରଚି ଧିଆନ,
ବୁଝେ କିପରି ସତେ ଗୋପନେ ?
ପରାଣେ ପରାଣେ ଏ ମଧୁର ବୁଝାବୁଝି
ଗୋପନେ ଗୋପନେ ଏ ପ୍ରଣୟ ଶୁଝାଶୁଝି,
ଖଞ୍ଜିଲା ଧାତା କିପାଁ, ଏ ଚାରୁ ସ୍ମୃତି-ଚମ୍ପା
ସୁରଭି ଭରି ସାରା ଭୁବନେ ।

## ନବ ଅଭିଯାନ

ଶଙ୍କର ଶିବ ଭଗବାନ,
ତ୍ରିଶୂଳ ପ୍ରହାରେ ଭୀମ ହୁଙ୍କାରେ
ମୋ ଜାତିରେ କର ସାବଧାନ ॥
ଶତାବ୍ଦୀ ଧରି ଲାଞ୍ଛିତ, ଅପମାନିତ
ରହିଲା ଯେ ଜାତି ସୁଖରେ

ଯୁଗ ଯୁଗ ହୋଇ ପରେ ପରେ ପଦ-ଦଳିତ
ଲଜ୍ଜା ନାହିଁ ତା ମୁଖରେ ।
କେବେ ହେବ ଯାର ଅବସାନ,
ହେବ ଅବସାନ . . . .
ଭୟ ମୋ ଜାତିର ମୁକ୍ତ ସତ୍ୟ କଥନେ,
ଭୟ ଘରୁ ଦୂରେ ଯିବାରେ,
ଭୟ ଶାସ୍ତ୍ରରେ, ଭୟ ଶସ୍ତ୍ରରେ, ଭୟ-ଶୃଙ୍ଖଳ ଚରଣେ,
ଭୟ ପ୍ରତିଦିନ କ୍ରିୟାରେ ।
କେବେ ହେବ ଯାର ସମାଧାନ,
ହେବ ସମାଧାନ ?
ଡମ୍ବରୁ ତବ ବଜାଅ ତ୍ରିଶୂଳ-ପାଣି ହେ,
ଜଳାଅ ତୃତୀୟ-ନୟନ,
ମିଥ୍ୟା, ସ୍ୱାର୍ଥ, ଭୟ ଦିଅ ଖରେ ହାଣି ହେ
ଶେଷ ହେଉ ଜଡ଼-ଶୟନ,
ଭସ୍ମରୁ ହେଉ ମୋ ଜାତିର ନବ ଅଭିଯାନ,
ନବ ଅଭିଯାନ ।

## ଏକା ଚାଲ

ପ୍ରଭାତେ ଶିଶିର-ମୋତି କ୍ଷଣକେ ଉଭେଇଯାଏ,
ବିଷାଦେ ପ୍ରାନ୍ତର ଘାସ ବୃଥା ତାକୁ ଖୋଜୁଥାଏ ।
ଏକା ଚାଲ ଏକା ଚାଲ ନାହିଁ ସାଥୀ, ନାହିଁ ପର,
ଏକା ଏ ଧରଣୀ ନିଜ ପଥେ ଅବିରତ ଧାଏଁ ।
ଆସିବାର ଯେ ଆସିବେ ପଛକୁ ଅନାଅ କିପାଁ ?
ଜୀବନେ କି ଯଶ କରି ଭିକ୍ଷା ପର ଅନୁକମ୍ପା ?
ଆଗେ ଚାହଁ, ଆଗେଇଚାଲ, ତୁଟିବ କୁହେଳି ଜାଳ;
ଏକାକୀ ବିପଦେ ବରି ବୀର ମାଥେ ଟିକା ପାଏ ।

## ବଳେ ବାନ୍ଧିବାରେ କି ପୁରୁଷକାର ?

ଅତି ଟାଣେ ତୁଟିଯିବ ବୀଣା-ତାର
ଚିର ଲାଗି ନୀରବିବ ତା' ଝଙ୍କାର;

ମୃଦୁ ବୃନ୍ତ ପରେ ପୁଷ୍ପ ସିନା ଦୋଳେ,
ପୁରୁଷ ପରଶ ସେ କି ସହିବାର !
ପୁରୁଷ-ନିଷ୍ଠୁର, କର୍କଶ
କାମିନୀ ଜୀବନ ଜଳଧାରା ପରି
ଚିର ତାର ଗତି-ପଥ ନିଏ ବରି,
କି ଲାଭ ରୋଧିବା ବନ୍ଧା-ବାଟ ତା'ର ?
ବସନ୍ତ ଆପେ ସେ ରୂପ ଢାଳିଯାଏ,
ପିକ ଅଯାଚିତେ ବନେ ଗୀତ ଗାଏ,
ରୂପର ସୁଖ ତ ଆତ୍ମ-ଅରପଣେ
ବଳେ ବାନ୍ଧିବାରେ କି ପୁରୁଷକାର ?

## କ୍ଷମ ହେ ନୟନ ନୀରେ

ଯାହା ଅପରାଧ, ପ୍ରଭୁ, କ୍ଷମହେ ନୟନ-ନୀରେ,
ସବୁମତେ ଅକିଞ୍ଚନ କରିଅଛ ଯେଉଁ ଜନ
ଅଧିକ ସେ କି ଦେବ ଭେଟିରେ ?
ହେ ଅନ୍ତରବାସୀ ସାଥୀ, ବାହାର ବିହାରେ ମାତି
ତୁମେ ନାହିଁ ଥିଲ ମୋ ସାଥୀରେ,
ତେଜି ସବୁ ଆକର୍ଷଣ ହେ ମୋହନ ଆଜି ମନ
ଢାଳିଛି ମୁଁ ତୁମ ଆରତିରେ ।
ଆଜି ହୃଦ ସିଂହାସନେ ତବ ପୂଜା ଆୟୋଜନେ
ଧୂଏ ଲୁହେ ପରମ ପ୍ରୀତିରେ ।

## ମହାଜୀବନ

କରୁଣା ବାରିଧି ତଟେ କରି ବାସ
ଲିଭୁନାହିଁ ପ୍ରାଣର ପିୟାସ । ଘୋଷା ।
ଅଂଶ ମୁଁ ଖୋଜୁଛି ପରା ପୂର୍ଣ୍ଣର ପରଶ
ସେ ପରଶ ଦିଅ ପୂର୍ଣ୍ଣତମ,
ପ୍ରାଣ ମୋ ପୁଲକି ଉଠୁ ଶୀତାଂଶୁ ଆଲୋକେ
ବାରିଧିର ମହାବକ୍ଷ ସମ ॥ ୧ ॥

ଉଦିତ ହୁଅ ହେ ପ୍ରଭୁ, ଅନ୍ତର ଗଗନେ
ଅରୁଣିତ ହେଉ ସର୍ବପ୍ରାଣ,
ଛୋଟ ମୋ ଜୀବନସ୍ରୋତ ମହାଜୀବନରେ
ମିଶି କରୁ ଗତି ଅବସାନ ॥ ୨ ॥

## ନଟରାଜ

ଅମ୍ବୁଦ ଦେଖି ଗଗନେ ମୟୂର
ଯେ ନାଚ କରେ,
ନଟରାଜ ମୋର ଅବୟବେ ଦିଅ
ସେ ନାଚ ଥରେ ।

ଦକ୍ଷିଣା ପବନେ ଆମ୍ର କାନନ
ଗନ୍ଧେ ଯେସନେ ହୁଏ ଛନଛନ,
ଅଙ୍ଗ ମୋହର କର ସେହିପରି ନୃତ୍ୟଭରେ ।

କୁମୁଦ କମଳ ନୀଳ ସରସୀରେ
ପ୍ରଣତି ଯେସନ ଦିଅଁତି ରବିରେ,
ନୃତ୍ୟେ ସେପରି ଢାଳିଦିଏଁ ପ୍ରାଣ ତୁମରି ତଳେ ।

କଙ୍କଣେ ମୋର ହେଉ ଝଙ୍କୃତ
ତୁମ ବଳୟର ନର୍ତ୍ତନ ଗୀତ,
ପାଦ ମୋ ଯେସନ ଜଳଧି-ଲହରୀ -
ଲଘୁତା ଧରେ ।

## ଦିନ ଗଲା ଚାଲି

ଶାନ୍ତିମୟ ଏ ପ୍ରଭାତେ,
କାହାର ସ୍ମରଣ ଆଘାତେ ହୃଦୟ-କପାଟେ ।
ବିରହିତ ଶିଶୁ ଜନନୀ ଖୋଜଇ ଯେସନେ,
କଳିକା ତପନ କିରଣେ,
ଅନ୍ତର ମମ ଝୁରେ ଅବିରାମ
ସେପରି ସେ କେଉଁ ବିରାଟେ ।

ସବୁ ଥାଇ କିପାଁ ଭୁବନ ଶୂନ୍ୟ ଲାଗଇ,
ନ ପାଇବି ଯାହା ତା' ପାଇବା ଆଶା ଜାଗଇ,
ଅନ୍ତରଚାରୀ କେଉଁ ଅଭିସାରୀ
ଡାକେ କେଉଁ ନବ ଆଳାପେ ।

ଦିନ ଗଲା ଚାଲି କ୍ଷଣିକର ପଛେ ଗୋଡ଼ାଇ
ଆଜି ଲୋଡ଼େ ପ୍ରାଣ ଅମୃତ ଘ୍ରାଣ,
ନିତ୍ୟେ କେ ଦେବ ଧରାଇ ।

ହେ ଭୁବନନାଥ, ହେ ଜୀବନନାଥ,
ଦେଖାଅ, ଯିବି ମୁଁ ଯେ ବାଟେ ।

## ପରମ ପ୍ରଣୟଧାରା

ଥାପ ପାଦ କମଳ ମୋ ହୃଦକମଳେ,
ପରମ ପ୍ରଣୟଧାରା, ଖେଳୁ ଅନ୍ତର ସାରା
ଏକ ହୁଏଁ ଘାସୁଁ ତାରା ତପନ କରେ ।

ପ୍ରଣୟ ପାଗଳ କର ପ୍ରଣୟୀ,-
ସ୍ୱର୍ଗ ଆଲୋକେ ଭାସୁ ଏ ମହୀ,
ଦୁଃଖ-ସୁଖ ନିଖିଳର ବିକଶିତ ବକୁଳର
ସୌରଭ ସମ ଭରୁ ଚିତ୍ତ-ଘରେ ।

ଚରଣକମଳ ଦଳେ ମୋ ମାନସ ଭୃଙ୍ଗ,
ଲୁଣ୍ଠିତ କରୁ ମଧୁ ତୁଙ୍ଗ,
ସଂସାର କୋଳାହଳେ
ଅବିଚଳ ଯୋଗବଳେ
ବହୁ ସାଥେ ଏକ ହୁଏଁ ପ୍ରଣୟଭରେ ।

## ବୁଦ୍ଧ-ବାଣୀ

ଏ ଭବ ପ୍ରମାଦ-ପଥେ ହେ ଆଲୋକ-ଯାତ୍ରୀ,
ଧରଣୀରେ ଆଜି ଘୋର ବିପନ୍ନ ରାତ୍ରି,

କାହିଁ ଶୁଭ ଦିବସ-ସନ୍ଧାନୀ,
ତବ ବାଣୀ ?

ହିଂସାର ମିଥ୍ୟାର ଉନ୍ମଦ ବିହାର,
ଲାଞ୍ଛନା କ୍ଷଣେ କ୍ଷଣେ ସତ୍ୟ ଓ ଦୟାର
ଅନ୍ତରେ ସ୍ମରେ କୋଟି ଶଙ୍କିତ ପ୍ରାଣୀ,
ତବ ବାଣୀ ।

ନିୟୁତ କମଳ, ନର-ଶଙ୍କିତ-ବକ୍ଷେ
ଉନ୍ମୁଖ ଆଜି ତବ କିରଣର ଲକ୍ଷେ,
ଦୂର କରୁ ସବୁ ଶୋକ, ସନ୍ଦେହ, ଗ୍ଲାନି
ତବ ବାଣୀ ।

ବୁଦ୍ଧ ହେ, ଶୁଦ୍ଧ ହେ, ହେ ମହାନ୍ ସିଦ୍ଧ,
ତୁମରେ ଖୋଜଇ ଧରା ଅକୁଶଳ-ବିଦ୍ଧ,
ଜୀବଦୁଃଖ ଲାଗି ତବ କୃପା ପରିମାଣି,
ତବ ବାଣୀ ।

ତବ କରୁଣାଲୋକେ ପ୍ରଜ୍ଞାର ପଦ୍ମ,
ଫୁଟି ସୁରଭିତ କରୁ ମାନବର ସଦ୍ମ
ମଙ୍ଗଳମୟ ପ୍ରଭୁ, ମୁକ୍ତିର ଗାନୀ,
ତବ ବାଣୀ ।

## କିଶୋର-କବିତା

### ସୂଚନା

ଲେଖକ ଶିକ୍ଷକ ଥିବା କାଳରେ ଓଡ଼ିଆ ସାହିତ୍ୟରେ ଏକ ଆଦର୍ଶ ପାଠ୍ୟ-ପୁସ୍ତକମାଳା ରଚନା କରିବାର ଚେଷ୍ଟା କରିଥିଲା । ସେଇଥିପାଇଁ ଏଇ କବିତାଗୁଡ଼ିକ ଭିନ୍ନ ଭିନ୍ନ କାଳରେ ରଚିତ ହୋଇଥିଲା । ଏଥିରୁ ଅଧିକାଂଶ ଅତି ପ୍ରାଚୀନ । 'ସେଦିନର କବିତା'ରେ ଏ କବିତାଗୁଡ଼ିକୁ ରଖାଯାଇପାରିଥାନ୍ତା; କିନ୍ତୁ କେବଳ ସମଶ୍ରେଣୀକତା ପାଇଁ ଏଗୁଡ଼ିକ ଏକତ୍ର ଭିନ୍ନ ଆକାରରେ ଓ ନୂତନ ନାମ ଦେଇ ଠିଆକରାଗଲା ।

**ଲେଖକ**

### ଶିଶୁ-ଦେବତା

କୋଟି କୋଟି ଯୁଗ ଧରି ଏ ଧରାର
ଜନନୀ ସକଳ, ପ୍ରାଣ ଉପଚାର
            ଦେଇ ମାଗେ ବିଧାତାରେ –

"କୋଟି ଜଗତର ସ୍ରଷ୍ଟା, ପାଳକ
ନିଖିଳ ମନର ହେ ଅଧିନାୟକ,
            ଭିକ୍ଷା ଏ ତୁମଠାରେ –

ହେ ଭୁବନପତି ସମ୍ରାଟ୍ ସମ
ନଚାହୁଁ ତମର ଦେବ-ଦରଶନ,
            କୋଟି ହୃଦୟର ସ୍ୱାମୀ,

ନାହିଁ ଚାହୁଁ ତମେ ପ୍ରେମିକ ବେଶରେ
ରଂଜିବ ଆମ କୋଟି ଅନ୍ତରେ,
            ପ୍ରଭୁ ଅନ୍ତରଯାମୀ ।

ହେ ମଧୁ-ମଧୁର, କୋମଳ, ରସାଳ,
ପରମ ଖିଆଲୀ, ବର-କଂକାଳ
ହୋଇ ଆସ ଆମ କୋଳେ,
ଶିଶୁ ଦେବତାର ଦୟନୀୟ ବେଶେ,
ମହନୀୟ ନାରୀ-କରୁଣା ଆବେଶେ
ଯେହ୍ନେ ଘେରିବ ତୋରେ ।

କୋଟି ଜଗତର ସ୍ରଷ୍ଟା ପାଳକ,
ନିଖିଳ ଲୋକର ଶାସକ, ଚାଳକ,
ତୁମର କରୁଣା ଆମେ
ନାହିଁ ଚାହୁ ପ୍ରଭୁ, ଆସ ହେ ଏପରି
ତୁମରେ ଢାଳିବୁ କରୁଣାର ଝରି,
ନିଜ ଅହମିକା ନାମେ ।

ତୁମେ ହେବ ପ୍ରଭୁ ଏକାନ୍ତ ନିଜ,
ଧରାରେ ସବୁଠୁ ମହାର୍ଘ ଚିଜ,
ତୁମର ଗଣ୍ଡ ପରେ,
ପ୍ରାଣର ଯେତେକ ଅକଳୁଷ ହସ,
ଅଶ୍ରୁ, ବିରହ, ଯେତେ ସ୍ନେହରସ,
ଢାଳିବୁ ମୁକ୍ତ କରେ ।

ତମ ଲାଗି ଆମେ ଶରୀର, ମନର
ଯେତେକ ଯାତନା, ଜନ-ଅଗୋଚର,
ଭୋଗିବୁ ମୁଗ୍ଧ ଘ୍ରାଣେ ।
କେବଳ ତୁମକୁ ଆପଣାର କରି
ପାଇବୁ ନିଜର ବକ୍ଷରେ ଭରି
ଭୋଗିବୁ ନୟନେ, ଘ୍ରାଣେ ।

ଆସ, ଆସ ରାଜା ନିଖିଳ ଲୋକର,
ଛୋଟ ହୋଇ, କୋଟି ନାରୀବକ୍ଷର
ସେନେହ ଭୋଗିବା ପାଇଁ,
ଶିଶୁ-ଦେବତାର ବେଶେ ଆସ ପୁରେ,
ସନ୍ତର ପ୍ରାଣ-ନଦୀ କୂଳୁଁ କୂଳେ
ମଧୁର ଦରୋଟି ଗାଇ ।''

# ଦରୋଟି ଗୀତ*

ଲଙ୍କାଗଡ଼େ ବଙ୍କାମୁହାଁ ମାଙ୍କଡ଼ ପଶିଲେ,
ସୀତା ଦେବୀ, ଚିନ୍ତା ତେଜି ଆନନ୍ଦେ ହସିଲେ ।
ଦାଣ୍ଡେ ରହି ଗ୍ରାମ ଷଣ୍ଢ କରଇ ହୁଁକାର,
ଗୋଷ୍ଠେ ଆଣେ ଗାଈପଲ ଗାଆଁ ଗାଈଆଳ ।

ଯନ୍ତାରେ ପଡ଼ିଲା ବାଘ ବାଲିଅନ୍ତା ଗ୍ରାମେ,
ସେ କଥା ଜାଣିଲେ ମନ୍ତ୍ରୀ କଟକ ମୁକାମେ ।
କଟକରେ ଥାନ୍ତି ଓଡ଼ିଶାର ଯେତେ ଜ୍ଞାନୀ,
ଭୁବନେଶ୍ୱରରେ ଆମ ନୂଆ ରାଜଧାନୀ ।

ଚମ୍ପା ନାନୀ ନେଇଗଲା ଗୟା କମ୍ବଳ,
ଶଙ୍ଖ ତଳେ ଚାଲିଗଲା ଠୁରା ବାଙ୍ଗର ।
ବାଙ୍ଗର ଗଳାରେ ଅଛି କଦମ୍ବର ମାଳା,
ପଞ୍ଚାୟତ କରାଇବେ ଆଜି ବାଦୀପାଳା ।

ସ୍ୱାଦୁ ଥଣ୍ଡା ଉପକାରୀ ମହାନଦୀ ଜଳ,
ଓଡ଼ିଶାର ଅନ୍ୟ ନାମ ଅଟଇ ଉତ୍କଳ ।
ମାର୍ଗଶିରେ ସ୍ୱର୍ଣ୍ଣ ଶସ୍ୟେ ଭରିଯାଏ କ୍ଷେତ୍ର
ଦେଖି ତାହା ସୁଖୀ ହୁଏ କୃଷକର ନେତ୍ର ।

ଛଟ୍‌ପଟ୍, ଲଟ୍‌ପଟ୍, କାହା ପଟ ତୁ'ରେ
ଭୂଇଁତଳ ଟଳମଳ କରି କଥା କହୁ ରେ ।
ମୋର ଅଜା ବଡ଼ରାଜା ତୋହପରି ତିନିଟା,
ଖଜା କରି ନିତି ଖାଏ, ଭଜା କରି ତିନି'ଠା ।

---

* ଛୋଟପିଲେ ବର୍ଣ୍ଣମାଳା ଶିଖିସାରିଲା ପରେ ନାନା ଭାବରେ ବର୍ଣ୍ଣଗୁଡ଼ିକ ସହିତ ପରିଚିତ ହେବାପାଇଁ ପ୍ରଥମେ କେତୋଟି ପଦ୍ୟ ପଢ଼ିବା ଦର୍କାର । ସେହି ପଦ୍ୟ-ଗୁଡ଼ିକର କୌଣସି ଅର୍ଥ ନଥାଇପାରେ; କିନ୍ତୁ ସେଗୁଡ଼ିକ ଧ୍ୱନି-ଝଂକୃତ ହେବା ଏକାନ୍ତ ଆବଶ୍ୟକ । କାରଣ ଶିଶୁର କର୍ଣ୍ଣ ଶବ୍ଦର ଝଂକାର ଖୋଜେ । ନିଜର ଏହି ମତ ଅନୁସାରେ ଏଇ କେତୋଟି ପଦ୍ୟ ପରୀକ୍ଷା ସ୍ୱରୂପ ଲେଖିଥିଲି ।

— ଲେଖକ

## ପକ୍ଷୀ-ଛୁଆ

ଛୋଟ ପକ୍ଷୀ ଛୁଆ, ତା'ର ଡେଣା ଉଠି ନାହିଁ,
ବସାରୁ ସେ ଉଁକିମାରେ ବୃକ୍ଷ ଶିଖେ ଥାଇ ।
ମାଆ ତା'ର ଉଡ଼ିଯାଏ ଦୂର-ଦୂରାନ୍ତରେ,
ଫେରି ଦେଇଯାଏ ଖାଦ୍ୟ ତା'ପିଲା ଥଣ୍ଟରେ ।
ପୁଣି ଉଡ଼ିଯାଏ ମାଆ, ଛୋଟ ବସାଟିରେ
ଛଟପଟ ପକ୍ଷୀ ଛୁଆ ହୁଅଇ ଅସ୍ଥିରେ ।
କେବେ ହେବ ଦୁଇ ଡେଣା ମାଆପରି ତା'ର,
ଉଡ଼ିବ ସେ ଆକାଶରେ ଏପାରୁ ସେ ପାର ।
ଗଛୁ ଗଛେ ବସିବ ସେ ଖେଳିବ ମେଘରେ,
ଉପରୁ ଦେଖିବ ସିନ୍ଧୁ, ଗିରି ଗ୍ରାମ ତଳେ ।
ସକାଳେ ସକାଳେ ମାଆ ଉଡ଼ି ବାହାରିଲେ,
କହେ ଛୋଟ ପକ୍ଷୀ ତାକୁ ନେବାକୁ ସାଥିରେ ।
ମାଆ ପକ୍ଷୀ କହେ, "ଧନ, ଅପେକ୍ଷା ତୁ କର,
ଡେଣା ତୋର ହେଉ ବଡ଼, ଟାଣ ହେଉ ପର ।
ଲୋଡ଼ା ହେବ ନାହିଁ ସାଥୀ, ହେଲେ ଡେଣା ବଡ଼,
ଏକା ଏକା ଖେପିବୁ ତୁ ସାଗର, ଭୂଧର ।"

## ଶିଶୁର ପ୍ରଥମ ପ୍ରଶ୍ନ

"ବୋଉ ମୁହିଁ କେଉଁଠି ଥିଲି,
କେଉଁଠାରୁ ଆଣିଲୁ ମତେ,
ନଈରେ କି ଭାସୁଥିଲି ବା,
ପଡ଼ିଥିଲି କେଉଁ ଅପଥେ ?"
କୋଳେ ଧରି କହନ୍ତି ମାଆ
"ଥିଲୁ ତୁ ମୋ ଗହନ ମନେ,
ଲତା ଦେହେ କୁସୁମ ପରି,
ମେଘ ଦେହେ ବାରି ଯେସନେ ।
ତୁ ଯେ ମୋର ମରମ ତଳେ
ଥିଲୁ ସାରା ଜୀବନଭରି,

ଇଚ୍ଛା ହେଲା ଆଦର ତତେ
କରିବି ଏ ବୁକୁରେ ଧରି ।
ଫୁଲ ପରି ଉଠିଲୁ ଫୁଟି
ମୋ ଦେହେ ତୁ ପରାଣ-ଧନ,
ଜଗତରେ ବହୁତ ଫୁଲ,
କିଏ ଧନ, ତୋହରି ସମ ?
ଫୁଲ ପରି ଦେବୁ ରେ ବାସ,
ମୋହି ହେବେ ଜଗତ-ଜନ,
ସେହି ମୋର ସଂପଦ ବାବୁ,
ସେହି ମୋର ଏକ ସପନ ।''

## ବୋଉ

କାହାର ଅଛି ରେ ବୋଉ ମୋ ବୋଉ ପରି,
ଖୁଆଇବ କିଏ ଏତେ ଆଦର କରି ?
ବାଧକ ପଡ଼ିଲେ ଶେଯ ପାଖରେ ବସି,
କରୁଥିବେ ସେବା ବୋଉ ଲୁହ ବରଷି ।
ଦିଅଁ-ଦେବତାଙ୍କୁ କରୁଥିବେ ପ୍ରାର୍ଥନା,
''ମୋ ପିଲା ନ ଭୋଗୁ ପ୍ରଭୁ ! କିଛି ଯାତନା ।''
ବୁଲୁଥିଲେ କେଉଁଆଡ଼େ ହୋଇ ଚଗଲା,
ଖୋଜୁଥିବେ ବୋଉ, ''କାହିଁ ମୋ ପିଲା ଗଲା ?''
ଇସ୍କୁଲକୁ ଗଲେ ପାଠ ପଢ଼ିବା ପାଇଁ,
ଦୁଆରେ ରହିବେ ବୋଉ ମୋତେ ଅନାଇ ।
ଇସ୍କୁଲରୁ ପାଠ ପଢ଼ି ଫେରିଲେ ଘରେ
ଦେହ ଝାଡ଼ିଦେବେ ବୋଉ ଅତି ଆଦରେ;
ଜଳଖିଆ ବାଢ଼ି ଦେବେ ଖାଇବା ପାଇଁ,
ପଚାରିବେ, ''କି ପଢ଼ିଲୁ କହିବୁ ନାହିଁ ?''
ମନ ତାଙ୍କ ମାନେ ନାହିଁ, ଯେତେ ମୁଁ ଖାଏ,
ନ ଛାଡ଼ିବେ ପେଟପୂରା ଖାଇବାଯାଏଁ ।
ଖାଇ ଶୁଏ ଯେବେ ତାଙ୍କ ପାଖେ ରାତିରେ,
ସ୍ନେହେ ବୋଉ ହାତ ମାରି ଓଠେ, ଛାତିରେ

କହନ୍ତି, ''ଧନ ରେ, ଭଲ ହେବୁଟି ତୁହି,
ତୋର ପରଶଂସା କାନେ ଶୁଣିବି ମୁହିଁ।''
ବୋଉଙ୍କୁ କରିବି ଖୁସି, ହେବି ମୁଁ ଭଲ,
ନ ହେଲେ ମୋ ବଞ୍ଚିବାରେ ଆଉ କି ଫଳ ?

## ଶିଶୁର ପ୍ରଥମ ଦୁଃଖ

ମାଆ, ଆଉ ଚାହାଳୀକି ନ ପଠା ମତେ,
ଖେଳିବି ବାରିରେ ସାଙ୍ଗପିଲା ସଙ୍ଗତେ ।
ବାପା ଖାଲି କହୁଛନ୍ତି – 'ପଢ଼ ତୁ ପଢ଼',
କେତେ ମୁଁ ପଢ଼ିବି, ଲାଗେ କଷ୍ଟ ଯେ ବଡ଼ ।

କେତେ ସାଙ୍ଗପିଲା ଯାଇ ଜଗନ୍ତି ଗାଈ,
କୋଳି ଖାଇ, ଗୀତ ଗାଇ ବଇଁଶୀ ବାଇ ।
ମତେ କିପାଁ ବନ୍ଦ କର ଚାଟଶାଳାରେ,
ମୋର କି ମା' ନୁହେଁ ଯାହା ଅଛି ବାହାରେ ?

ଗାଈଆଳ ସାଙ୍ଗେ ସବୁ ବଣ ଗହଳେ
ରାଜାପୁଅ ମନ୍ତ୍ରୀପୁଅ ଘୋଡ଼ା ଉପରେ
ଚଢ଼ି ଯିବା ବନସ୍ତରେ ଜେମା'ଙ୍କ ପାଇଁ
ମାଆ ମୁଁ କି ଥରେ ହେଲେ ଦେଖନ୍ତି ନାହିଁ ?

ନିତି ବହି ଧରି ଯାଉଥିବି ଚାହାଳି
ଡାକୁଥିବେ ଗଛ ଲତା, କେଦାର ଠାରି ।
ଯିବିନି ମୁଁ ମତେ ହେଲେ ଗପ ତୁ କହ,
କାହିଁରେ ନଲାଗି ପାଶେ ବସିବି ଥୟ ।

ପଠାନା କିନ୍ତୁ ଲୋ ମତେ ଇସ୍କୁଲେ ଆଉ,
ସେଠି ଖାଲି ତୁହି ମୋର ମନରେ ଥାଉ ।
ତୋ ପାଖକୁ ମନ ଧାଏଁ ନଧରି ପାଠ,
ତୁଇ ପୁଣି ତତୁ ମତେ ଦେଖାଇ ଛାଟ ?

ବାପା ତ ରାଗିଲେ ଖାଲି ଖେଳିଲେ କାହିଁ –
ଏଇ ଲୋ ମା ଆଇଲେଣି . . . କହିବୁ ନାଇଁ,
ଯାଉଛି ଚାହାଳି ବୋଉ, ବହି ଆଣିଦେ,
ନ ଆସନ୍ତୁ ବାପା, ମୁଁ ତ ଯାଉଛି ନିଜେ ।

# ଆମ ଗାଆଁ ବୁଢ଼ୀ

ଝୋଟପରି ଧଳା ବାଳ, ନଇଁପଡ଼େ ମୁଣ୍ଡ
ପାକୁ ପାକୁ କରୁଥାଏ ପାକୁଆ ତା ତୁଣ୍ଡ,
ବାଡ଼ି ଧରି ଧୀରେ ଧୀରେ ବୁଲୁଥାଏ ଗାଆଁ
'ଆମ ଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ । ୧ ।

ଗାଁଯାକ ନାତି ତାର, ସଭିଁକ ସେ ଆଈ,
ପିଲାଏ ତା' ବାଡ଼ି ନେଇଥାଁତି ଛଡ଼ାଇ,
ବଡ଼ମାନେ କଉତୁକେ କରୁଥିବେ 'ହାଁ' 'ହାଁ',
'ଆମ ଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ । ୨ ।

ବୁଢ଼ୀ ପଶେ ଘରେ ଘରେ ବିନା ଡାକରାରେ
ଗାଳିଦେଇ, ଗାଆଁ ଝିଅ-ବୋହୂଙ୍କୁ ତିଆରେ,
ମଇଳା ଦେଖିଲେ ବୁଢ଼ୀ ହୁଅଇ ଛାନିଆଁ
'ଆମ ଗାଆଁ ବୁଢ଼ୀ ବୋଲି ଡାକ ତାର ନାଆଁ । ୩ ।

ସଂଜ ହେଲେ ବୁଢ଼ୀ ପାଖେ ଗାଆଁଯାକ ପିଲା
ଶୁଣିବାକୁ ଗପ କରୁଥିବେ ଚିଲାବିଲା,
ଗପ ଶୁଣି ଭୁଲିଯାଁତି ପିଲେ ଖିଆପିଆ,
'ଆମ ଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ । ୪ ।

ନିଜର ବୟସ ବୁଢ଼ୀ ନିଜେ ନାହିଁ ଜାଣେ
ଏଇମିତି ଦେଖିଥିଲେ ବାପା କକାମାନେ,
ନାହିଁ ତାର ପୁଅ ଝିଅ, ନାହିଁ ତାର ସାହା,
'ଆମ ଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ । ୫ ।

ଧରିଲେ କାହାକୁ ଭୂତ ବୁଢ଼ୀ ଏକା ସାହା
ସେଥିପାଇଁ ଡାକେ ତାକୁ ସାତଖଣ୍ଡ ଗାଆଁ;
ବୁଢ଼ୀ ଯୋଗୁଁ ରହିଅଛି ଆମ ଗାଆଁ ନାଆଁ;
ଗାଆଁଟିଯାକର ଅତି ପ୍ରିୟ ବୁଢ଼ୀ-ମାଆ । ୬ ।

# ରେଳଗାଡ଼ି

ଭସ୍ ଭସ୍ ଧୂଆଁ ଛାଡ଼ି ଧାଏଁ ରେଳଗାଡ଼ି,
ଭୁଷ୍ ଭୁଷ୍ ଶବଦରେ ଯାଏ ବାଟ ମାଡ଼ି ।

ଘର୍ ଘର୍ ଘୂରୁଅଛି ଚକ ଶତ ଶତ,
ଥର୍ ଥର୍ ଥରିଯାଉଅଛି ସାରା ପଥ ।

ସାଇଁ ସାଇଁ କରି କାଟେ ଦି'ପାଖେ ପବନ,
ଘାଉଁ ଘାଉଁ ଶବଦରେ ଫାଟିଯାଏ କାନ ।

ଦୂର୍ ଦୂର୍ ଦଉଡ଼ନ୍ତି ସବୁ ଗଛ ଲତା,
ଭକ୍ ଭକ୍ ନିଆଁ ବାନ୍ତି କରେ ଇଞ୍ଜିନଟା ।

ଏଇ ଅଛି ଏଇ ନାଇଁ ଦେଖୁଥିବା ଥାନ,
ରଡ଼ି ଛାଡ଼ି ଧାଏଁ ଗାଡ଼ି ରାକ୍ଷସ ସମାନ ।

ଗାଆଁ ଗୋଟେ ଟାଣି ଧାଏଁ ଇଞ୍ଜିନ୍ ରାକ୍ଷସ,
ତା ଆଘାତେ ତଳ-ମାଟି କରେ ଭସ୍ ଭସ୍ ।

ରାକ୍ଷସର ବଡ଼ ପେଟ, ଲୋକ ଶହ ଶହ,
ଆତଯାତ ତହିଁ ଦେଖ, ଶୁଭେ ଗହଗହ

ଝରକାରେ ବସି ଲୋକେ ଦେଖୁଛନ୍ତି ଚାହିଁ,
ଗଳପ କରନ୍ତି ମନେ ଡର ଭୟ ନାହିଁ ।

ଧାଇଁ ଧାଇଁ ରାକ୍ଷସକୁ ଲାଗେ ବଡ଼ ଶୋଷ,
ଷ୍ଟେସନରେ ପିଇ ବସେ କରି ମନତୋଷ ।

ପିଇବ ସେ ପାଣି ଆଉ ଖାଇବ କୋଇଲା,
ଓହ୍ଲାଇବେ ଯାତ୍ରୀ ସବୁ ଧରିଣ ଗଣ୍ଠିଲା ।

ହାଲିଆ ଖାଇଣ ପୁଣି ଦଉଡ଼ିବ ରେଳ;
ଯିବା ଆସିବାରେ ତାର ଥାଏ ଠିକ୍ ବେଳ ।

## ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ

ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
    ସାଧବଙ୍କ ସାତ ପୁଅ ଫେରିଲେ ଯେ ନାହିଁ ।
ସାଧବଙ୍କ ପୁଅ ରତ ବଣିଜ ଭିଆଣେ,
    ସବୁଙ୍କଠୁ ସାନପୁଅ ବେଶୀ କଥା ଜାଣେ ।
ବଣିଜକୁ ସାତ ଭାଇ ମେଲିଦେଲେ ଭେଳା,
    ଦେଶକୁ ଫେରିଲେ ନାହିଁ କିସ ତାଙ୍କ ହେଲା ?

ବଣିଜ ବେପାର ବଡ଼ ବିଷମ ଜଂଜାଳ,
ବୁଲୁଥିବେ ଦେଶେ ଦେଶେ ଧରି ନଈ ନାଳ ।
କେଉଁ ଦେଶ, କେଉଁ ନଈ, କେଉଁ ସମୁଦ୍ରରେ,
ବୋଇତ ଅଟକିଗଲା କେବଣ ବନ୍ଦରେ ?
ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
ସାଧବଙ୍କ ସାତ ପୁଅ ଫେରିଲେ ଯେ ନାହିଁ ।

ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
ରଜାପୁଅ ବେଣ୍ଟ କରି ଫେରିଲେ ଯେ ନାହିଁ ।

ଗୋଟିଏ ଚାଉଳେ ଗଢ଼ା ଲାବଣ୍ୟ କୁମର,
ବ୍ରତ କରି ବଡ଼ରାଣୀ ପାଇଥିଲେ ବର ।
ସମସ୍ତିଙ୍କ ବଡ଼ ଆଶା କୁଅଁର ସାମନ୍ତ
ବଡ଼ ହୋଇ ଚିହ୍ନିବେ ସେ ପରଜାଙ୍କ ଅନ୍ତ ।
ତାଙ୍କୁ କିଆଁ ସଉତୁଣୀ ଅଗ୍ନାଅଗ୍ନି ବଣେ,
ବେଣ୍ଟ ପାଇଁ ଦେଲା ପେଲି ପାଞ୍ଚ ରଖି ମନେ ?
ଅଗ୍ନାଅଗ୍ନି ବନସ୍ତରେ ବାଟ ଘାଟ ନାହିଁ,
ଅସୁର ଅସୁରୀ, ବାଘ ମେଳଣ ସେଠାଇଁ ।
କୋମଳ ପ୍ରତିମା ଆମ କୁଅଁର ସାମନ୍ତ,
ଖରା ଟାଣେ ହେଉଥିବେ ନିଶ୍ଚେ ହନ୍ତସନ୍ତ ।
ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
କୁଶଳେ କୁଅଁର ମଣି ଫେରିବେ କି ନାହିଁ ?

ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
ଫେରିବାର ଲୋକ, ବେଳେ ଫେରନ୍ତି ଯେ ନାହିଁ ।
ସାଧବଙ୍କ ସାତ ବୋହୂ ବିଳପନ୍ତି ବସି,
ବଡ଼ରାଣୀ କାନ୍ଦୁଛନ୍ତି ଗମ୍ଭୀରାରେ ପଶି ।
ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
ମନ ମୋର ଘାଣ୍ଟି ହୁଏ ତାଙ୍କ ଦୁଃଖ ପାଇଁ ।

## ସାଧବ ପୁଅ

ସାଧବ ପୁଅ କୁଆଡ଼େ ଯାଅ
ହୋଇ ଦରିଆ ପାରି,

ତମ ବୋଇତେ ନେବ କି ମତେ
ଯିବି ମୁଁ ଘର ଛାଡ଼ି ।
କାଟି ଲହଡ଼ି, ବୋଇତ ମାଡ଼ି-
ଚାଲିବ ସମୁଦ୍ରରେ,
ଧବଳ ରାଜ-ହଂସ ସଦୃଶ
ନୀଳ ଆକାଶ ତଳେ ।
ବୋଇତ ତୁମ ଯାଇ ଲାଗିବ
ଅଜଣା ଘାଟେ କେତେ,
ନିଅ ସାଥିରେ ଦେଖି ଆଖିରେ
ଆସନ୍ତି ଦେଶ ଯେତେ ।
ଦରିଆ ପାରେ ଗଛରୁ ପଡ଼େ
ପରା ମାଣିକ ଝଡ଼ି,
ପିଲାଏ ପରା, ହୁଅନ୍ତି ହୀରା-
ମୁକୁତା ଛଡ଼ାଛଡ଼ି ।
ନୀଳ ମାଣିକ-ପର୍ବତ ଶିଖ-
ଉପରୁ ରୁପା ନଈ,
ଆସଇ ବହି ସଂଗୀତ ଗାଇ ? —
କି ସୁଖ ଏଠି ରହି ?
ସାଧବ ପୁଅ, ସାଥିରେ ନିଅ
ସେଇ ଦରିଆ ପାରେ,
ବୋଇତ ଧରି ଆସନ୍ତି ଘୂରି
ସାରା ସଂସାର ବାରେ ।
ସଉଦା ତବ ଯାହାକି ଦେବ
ବିକିବି ଘାଟେ ଘାଟେ,
ବୋଲିବ ଯାହା ମାନିବି ତାହା
ହୋଇବି ସାହା ବାଟେ ।

## ବଣଭୋଜି

ଗୁରୁଜୀ କହିଲେ "ଆଁକୁଡ଼ା ଧାନକୁ
ଏକାଠି କର ରେ ପିଲେ,

ବଣଭୋଜି କରି ମଉଜ କରିବା
ନଈକୂଳ ଦୂର ବିଲେ ।''
ନରିମା'କୁ ଦେଲୁଁ ଧାନ, ଦେଲା କୁଟି,
ଡାଲି ଦେଲା ସାହୁଆଣୀ,
ସାରୁ, ବାଇଗଣ ହାଡୁ ସ୍ୱାଇଁ ଦେଲା
ବାରିରୁ ତାହାର ଆଣି ।
ବଣ-ତୋଟାମାଳୁ ଗୋଟାଇଲୁ କାଠ
ଚୁଲି ଦେଲେ ଗୁରୁ ଖୋଳି,
ବାସନକୁସନ ନେଇଥିଲୁଁ ଘରୁ,
ବସାଇଲୁ ମାଟି ବୋଳି ।
ସଇତା, କୁରୁପା, ମୁରଲୀ, ଅର୍ଜୁନା
ଧଇଲେ ନଈରୁ ମାଛ,
ଗଦା ବିଶୋଇଙ୍କ ଗାଈ ଦୁହିଁବାରୁ
ନେଟରା ଖାଇଲା ନାତ ।
ହସିଲୁ, ଖେଳିଲୁଁ, ଗଛରେ ଚଢ଼ିଲୁଁ
ପହରିଲୁଁ ନଈ ଜଳେ,
କଅଁଳ ଘାସରେ ଆରାମେ ଶୋଇଲୁ
ଘନ-ଛାଇ ଗଛ ତଳେ ।
ଭାତ, ଡାଲି, ମାଛ-ଆମ୍ବିଳ ରାନ୍ଧିଲୁଁ
ଖାଇଲୁ ପଦ୍ମ ପତରେ
ଘରେ ନିତି ଖାଉ – କିନ୍ତୁ ବଣ-ଖିଆ
ଲାଖି ରହିଛି ଚିତ୍ତରେ ।

## ସାଗରତୀରେ

(୧)

ସାଗର ସେ ପାରୁ ଉଠନ୍ତି
ରବି ସିନ୍ଦୂର-ଲାଲ
ଝଟକି ଉଠଇ କିରଣ
ଛୁଇଁ ଲହରୀମାଳ ।

ସମୀରଣ ବହି ଆସଇ
ସ୍ୱର୍ଣ୍ଣ ତପନ ତଳୁ
ଭାସି ଆସେ ତହିଁ ଶୀକର,
ଶୀତ ସାଗର-ଜଳୁ ।
କଇଁସାରି ଲତା କମ୍ପଇ
ଧୀର ସମୀର-ଘାତେ,
ଉଡ଼ନ୍ତି ଉପରେ ବିହଗେ
ମନୋହର ପ୍ରଭାତେ ।
ବୁଲନ୍ତି ବେଳାରେ ହରିଣେ
ବାଲି ଘାସ ଆହରି,
ଝଳିଉଠେ ରବି-କିରଣେ
ସ୍ନିଗ୍ଧ ଦେହ ତାଙ୍କରି ।
ଅଦୂରେ କୃଷକ ଲଳନା
ଖୋଜେ ଶୁଷ୍କ ଇନ୍ଧନ,
ଗୁଡ଼କଙ୍କ ଉଡ଼େ ସୈକତେ
କାହିଁ ତେଜି ବନ୍ଧନ ।
ନୋଳିଆ ପିଲାଏ ବୁଡ଼ନ୍ତି
କ୍ଷୁବ୍ଧ ସାଗର ଜଳେ
ପଢ଼ାଉ ଉଠଇ ପଡ଼ଇ
ଉଗ୍ର ଲହରୀ ବଳେ ।
ସୁନା ସିକତାରେ ନବୀନ-
ରବି ସୁନା କିରଣ
ଝଟକାଏ ଶିପ, ଶାମୁକା,
ଫେଣ ରୂପା ବରଣ ।

(୨)

ପ୍ରାଚୀନ କଥା ମୁଁ ଭାବଇ
ଆଜି ବସି ଏ ସ୍ଥାନେ
ଏହି କି ସେ ଦେଶ, ସନ୍ତାନ
ତାର କି ଆମ୍ଭେମାନେ ?
ଏହି ନୀଳ ଜଳେ ବୋଇତ
ବାହି ପୂର୍ବ ପୁରୁଷ,

ଅରକ୍ଷୁଥିଲେ କି ବିଦେଶେ
ଧନ, ରାଜ୍ୟ, ପୌରୁଷ ?
ଏହି ନୀରେ ଆମ ବୋଇତେ
ଗର୍ବେ ଉଠଇ ପାଲ
ଯାଉଥିଲେ କିବା ବିଦେଶେ
ହୋଇ ସମୁଦ୍ର ପାର ?
ସୀମନ୍ତିନୀଗଣ ସଙ୍ଗତେ
ବୃଦ୍ଧା ସାଧବ ନାରୀ,
ବନ୍ଦୁଥିଲେ କି ସେ ସାଧବେ
ସିଞ୍ଚି କୁସୁମ-ବାରି ?
ଅଗଣ୍ୟ ବୋଇତ-ଆନୀତ
ଧନ-ସମ୍ପଦେ ପରା
ହେଉଥିଲା ଦେଶ-ଭଣ୍ଡାର
ମୋତି-ମାଣିକ୍ୟ-ଭରା ?
ସେ ଧନେ ସହସ୍ର ଦେଉଳ
ଧରି ଶିଳ୍ପଭୂଷଣ,
ଟେକିଲେ ମସ୍ତକ ଗରବେ,
କଲେ ନଭ-ଚୁମ୍ବନ ।
କ୍ଷେତେ ଥିଲା ଧାନ, ଗୋଠରେ
ଥିଲେ ଦୁହାଁଳ ଗାଈ,
ଉପାସ ପାଇଁକି ନଥିଲା,
ଦେଶ ମାଟିରେ ଠାଇଁ ।

(୩)

କାହିଁ ଗଲା ସେହି ସମ୍ପଦ
ସୁଖ, ସ୍ୱାସ୍ଥ୍ୟର ଲୀଳା,
କାହିଁ ଗଲେ ଶିଳ୍ପୀ, ଦେଉଳେ
ଟେକିଥିଲେ ଯେ ଶିଳା ?
ସେ ପୁରାଣ କଥା ସାଗର
ଦେଖିଥିବୁ ନୟନେ,
ନାବିକଙ୍କ କଥା, କୁହାଟ
ଶୁଣିଥିବୁ ଶ୍ରବଣେ ।

କହ ଥରେ ସିନ୍ଧୁ ସେ କଥା
ଫେଡ଼ି କହ ହେ ବେଗେ,
କଳ୍ପନା-ନୟନେ ଦେଖିବୁଁ
ସବୁ ପ୍ରାଣ ଆବେଗେ ।
ତୋ ଖର ଲହରୀ ଆଦରି
ଯିବୁଁ ବୋଇତେ ଭାସି,
ଦାରିଦ୍ର୍ୟ କଷଣ ସଲିଳେ
ତୋର ମରିବେ ଝାସି ।
ବାଲି ଦ୍ୱୀପେ ଯାଇ ଦେଖିବୁ
ଆମ ପ୍ରିୟ ଜନରେ,
ଓଡ଼ିଆ ବୋଇତ ଲାଗିବ
ପରଦେଶୀ ବନ୍ଦରେ ।

## ନୀରବ ସେବା

ଖବର କାଗଜେ ବଡ଼ ଦାତା ବୋଲି
ନ ବାହାରୁ ପଛେ ନାମ,
ନାହିଁ ଲୋଡ଼ି ଯଶ କର ହେ ଅଭ୍ୟାସ
କରିବାକୁ ସେବା କାମ ।
'ନେତା ହେବି ଯେବେ ଦେଶ ଉଦ୍ଧାରିବି' –
ନ ଭାବି ଏପରି ମନେ,
ବାଟେ ଆଜି ଯେଉଁ ଦୁଃଖୀକୁ ଭେଟିବ
ସୁଖ ଦିଅ ତାକୁ କ୍ଷଣେ ।
ଟଙ୍କା ଜମା କରି ଭାବୁଛ ଭବିଷ୍ୟେ
କରିବ ସତ୍‌କାର୍ଯ୍ୟମାନ,
ଛୋଟା କୁକୁରଟା ବାଟେ ଯେ ପଡ଼ିଛି
ନ ଦେବ କି ତାକୁ ଧ୍ୟାନ ?
ବଡ଼ କାମ କରି ବଡ଼ ପରଶଂସା
ପାଇବା ନ ଲୋଡ଼ି ମନେ,
ପାଖ-ପଡ଼ିଶାଙ୍କ କଷଣକୁ ହରି
ଧନ୍ୟ ହୁଅ ଏ ଜୀବନେ ।

# ଶୁକ ଦେଈ

ମହାନଦୀ କୂଳେ ବାଙ୍କୀ ମୁଲକରେ
ଥିଲେ ଜଣେ ବଡ଼ ରଜା,
ଧନଞ୍ଜୟ ଭଞ୍ଜ ନାମ ତାହାଙ୍କର
ସୁଖେ ପାଳୁଥିଲେ ପ୍ରଜା । ୧ ।

ଖୋରଧାର ରାଜା ନାମ ରାମଚନ୍ଦ୍ର,
ନ ସହି ତାହାଙ୍କ ଶିରୀ
ଲଗାଇଲେ ଯୁଦ୍ଧ ବାଙ୍କୀ ମୁଲକରେ
ସଇନ-ସାମନ୍ତ ଧରି । ୨ ।

ସମର ଭୂଇଁରେ ଧନଞ୍ଜୟଙ୍କର
ମୁଣ୍ଡ ପକାଇଲେ ହାଣି,
ଶୁଣିଲେ ଖବର ମୁହୂର୍ତ୍ତ ଭିତରେ
ବାଙ୍କୀଗଡ଼ ପାଟରାଣୀ । ୩ ।

''କି ହେଲା, କି ହେଲା'' ବୋଲି ସେ କହିଲେ,
''ଛାର ରାମଚନ୍ଦ୍ର ଦେବ,
ମୁହିଁ ଥାଉଁ ଥାଉଁ ଏ ସୁନା ମୁଲକ
ଅକାରଣେ ଠକି ନେବ ? । ୪ ।

ଜିଇଁ ଥାଉଁ ଥାଉଁ ଆପଣା ଦରବ
ନ ରଖି ପାରଇ ଯେହୁ,
ପୋଡ଼ିଯାଉ ତାର ମଣିଷପଣିଆ,
ଜିଇଁ ମରିଥାଏ ସେହୁ'' । ୫ ।

ନଅର ଭିତରୁ ଦିନେ ହେଲେ ରାଣୀ
ନଥିଲେ କେବେ ବାହାରି,
ଅପମାନ ଦେଖି ଲଢ଼ିବାକୁ ଆଜି
ସଜ ହେଲେ ଖଣ୍ଡା ଧରି । ୬ ।

ବୁଢ଼ା ବେବରତା କେତେ ମନାକଲେ
ନ ମାନିଲେ ତାଙ୍କ କଥା,
କହିଲେ, ''ବେବର୍ତ୍ତେ, ସରମେ କେମନ୍ତେ
ଚାଲିବା ହେ ଟେକି ମଥା ? । ୭ ।

ଲାଜେ ବଞ୍ଚିବାଠୁଁ ମରଣଟି ଭଲ,
ହାରିବାଠୁଁ ଭଲ ଜିଣା,
ମୋ ଭାଇ ବଡ଼ମ୍ବା- ରାଜାଙ୍କୁ ପଚାର
ସହାୟ ହୋଇବେ କି ନା ? । ୮ ।

ପୁଅ ଦୟାନିଧି ମଣିଷ ହୋଇଲେ
ଗରବ କରିବ ଭାଳି,
ବାପପରି ତାର ମାଆ ଯାଇଥିଲା
ଯୁଦ୍ଧେ ଧରି ତରବାରି ।'' । ୯ ।

ଏହା କହି ରାଣୀ ଘୋଡ଼ା ଛାଡ଼ିଦେଲେ, —
ତେଜି ଉଠି ବାଙ୍କୀଜନ,
କାଣ୍ଡ, ଶର, ଭାଲି, ଛୁରୀ ଘେନି ସର୍ବେ
ଯୁଦ୍ଧକୁ କଲେ ଧାବନ । ୧୦ ।

ବଡ଼ମ୍ବା-ରାଜାଙ୍କ ବଳୁଆ ସଇନେ
ବାଟେ ଆସି ଗଲେ ଜୁଟି,
ଶହ ଶହ ଶତ୍ରୁ- ସେନା ହାଣ ଖାଇ
ଭୂଇଁରେ ପଡ଼ିଲେ ଲୋଟି । ୧୧ ।

ରାମଚନ୍ଦ୍ର ଦେବ କଇଦୀ ହୋଇଲେ, —
ଧନ୍ୟ ବୀର ଓଡ଼ିଆଣୀ,
ଆଜିଯାଏ ଲୋକେ ପାସୋରି ନାହାନ୍ତି
ଶୁକ ଦେଈ ସାଆନ୍ତାଣୀ । ୧୨ ।

## ଲଢ଼ିବି

ରାବଣ ଯେ ଘେନିଗଲା ସୀତାଙ୍କୁ ରଥରେ,
ରାମ ଲଇକ୍ଷଣ କେହି ନଥିଲେ ପାଖରେ,
ସୀତା କାନ୍ଦିଲେ ବିକଳେ,
ଥିଲେ ମୁଁ ଥାଆନ୍ତି ଲଢ଼ି ରାବଣ ସଙ୍ଗରେ ।

ଦୁଃଶାସନ ଯେ କାଳରେ ନେଲା ଦ୍ରୌପଦୀଙ୍କି
ହସ୍ତିନା ନଗରୁ କେଶବାସ ତାଙ୍କ ଝିଙ୍କି,
ଥାନ୍ତି ଯଦି ମୁଁ ସେକାଳେ,

ଯୁଝିଥାନ୍ତି ଦୁଃଶା ସହ ବାଣେ, ତରବାରେ ।
ଅଗ୍ନାଅଗ୍ନି ବନସ୍ତରେ ବୁଢ଼ୀ ରାକ୍ଷସୁଣୀ,
ଲୁଚାଇଛି ରଜାଝିଅ କରି ମନ୍ତ୍ର ଗୁଣି,
ଯାଇ ପଶି ବନସ୍ତରେ,
ଉଦ୍ଧାରିବି କେମା ମାରି ରାକ୍ଷସୀ ଏ କରେ ।

ଖାଇବାକୁ ନାହିଁ କା'ର, ପିନ୍ଧିବାକୁ ବାସ,
ବାଧିକାରେ ପଡ଼ି କେହି ପାଉଛି ପରାସ,
କଷ୍ଟ ହରିବି ତାଙ୍କର,
ଲଗାଇଣ ସବୁମନ୍ତେ ମୋର ବୁଦ୍ଧି ବଳ ।

ଦୁର୍ବଳ ଉପରେ କେହି କଲେ ଅତ୍ୟାଚାର,
ଲଢ଼ିବାକୁ ସବୁବେଳେ ଥିବି ମୁଁ ତିଆର,
ଯଶ ଅର୍ଜିବି ଏପରି,
କି ଲାଭ ମଣିଷ ପଶୁ ପରି ବଞ୍ଚିକରି ?

## ଗୁଣ୍ଡୁଚିମୂଷା

ଯିବେ ସେତୁ ବାନ୍ଧି ସମୁଦ୍ରରେ ରାମ
ଲଙ୍କାକୁ ସଇନ ନେଇ,
ଲଙ୍କା-ରାଜା ତାଙ୍କ ସୀତାକୁ ନେଇଛି
ତା ସଙ୍ଗେ ଯୁଝିବାପାଇଁ ।
କପି ସୈନ୍ୟମାନେ ବହିଆଣୁଛନ୍ତି
ପାହାଡ଼ୁ ପଥର ଟାଳି,
ନଳ ସେନାପତି ଚତୁର ବିନ୍ଧାଣି,
ସେତୁ ବାନ୍ଧନ୍ତି ସଜାଡ଼ି ।
ରାମ ଲଇକ୍ଷଣ ଭାଇ ଦୁଇ ଜଣ
ବୁଲି ଦେଖୁଛନ୍ତି କାମ,
ସହସ୍ର ସହସ୍ର ନର-ବାନରଙ୍କ
କୁହାଟେ ପୂରଇ ଥାନ ।
ବଡ଼ୁ ସାନ ଯାଏ ଯେ ଯେତେ ପାରିଲା
ଆଣୁଛନ୍ତି ବୋହି ମାଥେ,

ଶିଳା, ଗୋଡ଼ି, ମାଟି ଗଛ, ପତ୍ର, ଲୋଟି
ପୂରାନ୍ତି ଦେଖିଲେ ଗାତେ ।
ଅତଳ ସମୁଦ୍ର ପୋତି ହୋଇ ପୁଣି
ଫିଟିବ ପଥର ବାଟ,
ତା ଉପରେ ଯିବେ ଶ୍ରୀରାମ ଲକ୍ଷ୍ମଣ
ଧରି ଅକଳନ ଥାଟ ।
ଦିବାରାତି ତେଣୁ ଲାଗିଅଛି କାମ
ପୋତା ହୁଏ ସିନ୍ଧୁ-ବାରି,
ପାହାଡ଼ ପର୍ବତ ସଙ୍ଗେ ଲୋଡ଼ାହୁଏ
ଗଛ ଲତା ଗୋଡ଼ି ବାଲି ।
ସମୁଦ୍ର ତଟରେ ଗୁଣ୍ଡୁଚି ମୂଷାଟି
ଦେଖିଲା ଏ ବନ୍ଧ-ପକା,
ଦେଖିଲା ବଡ଼ରୁ ସାନ ଯାଏ ସବୁ
ଖଟିବାର କରି ଡକା ।
ମନେ ସେ ଭାବିଲା – ହାୟ ! ମୁଁ କି ହୀନ
ଶ୍ରୀରାମଙ୍କ ସେବା କରି,
ଏତେ ପ୍ରାଣୀ ଧନ୍ୟ ହେଉଛନ୍ତି ! ମୁଁ କି
କିଛି ନ ପାରିବି କରି ?
ଭାବି ଭାବି ଏକ ବୁଦ୍ଧି ସେ ପାଞ୍ଚିଲା
ଧାଇଁଲା ସମୁଦ୍ରଜଳେ,
ବୁଡ଼ି ତହିଁ ଓଦା କରି ତା ଶରୀର
ଲୋଟିଗଲା ବାଲି ପରେ ।
ବାଲି-ସରସର ଦେହ ପୁଣି ନେଇ
ବନ୍ଧରେ ଅଇଲା ଝାଡ଼ି,
ପୁଣି ବୁଡ଼ି ଜଳେ ବାଲିରେ ସେ ଗଡ଼େ
ବନ୍ଧେ ଆସେ ବାଲି ଛାଡ଼ି ।
ଘଡ଼ି ଘଡ଼ି ଧରି ଏହିପରି କରି
ଗୁଣ୍ଡୁଚି ପରମ ସୁଖୀ,
ଏକଥା ନଜର କଲେକ ଶ୍ରୀରାମ
ଦୂରେ ବାଲି ବନ୍ଧେ ବସି ।
କୁତୂହଳେ ରାମ ପାଣି ପାଖେ ଆସି
ଡାକି ଗୁଣ୍ଡୁଚିକି ସ୍ନେହେ,

ପଚାରିଲେ, ''ଆହା କି ପାଇଁ ପାଣିରେ
ତିନ୍ତାଅ ଏ ଛୋଟ ଦେହେ !
କି ପାଇଁ ବା ବାଲି – ଶେଯେ ଗଡ଼ି ପୁଣି
ଧାଉଁଛ ବନ୍ଧକୁ କ୍ଳେଶେ ?
ପୁଣି ବୁଡୁଅଛ ପୁଣି ଗଡୁଅଛ
ବିଶ୍ରାମ ନାହିଁ ନିମିଷେ ?
ଛୋଟ ସେ ଗୁଣ୍ଡୁଚି ମୁଖ ନୋଇଁ ଲାଜେ
କହିଲା ବିନୟ ତୁଣ୍ଡେ,
''ମହାଭାଗ, ମୋତେ ଧନ୍ୟ କର, ଦେଇ
ଶ୍ରୀପଦ ଧୂଳି ମୋ ମୁଣ୍ଡେ ।
ଛାମୁଙ୍କର ସେବା କରି ହେଉଛନ୍ତି
ପବିତ୍ର ଜଗତ-ଜନେ,
ମୁଁ କି ଛାମୁଁଙ୍କର ସେବା ନ ପାରିବି
କରି ? ଭାବିଲି ମୁଁ ମନେ !
ସୈନ୍ୟ ସେନାପତି ସମୁଦ୍ରେ ଦିଅନ୍ତି
ପର୍ବତ ପାହାଡ଼ ଭରି,
ବିଧାତା ମୋତେ ତ ଦେଇନି ସେ ବଳ
କାହୁଁ ତା ପାରିବି କରି ?
ଛୋଟ ଦେହେ ମୋର ଯାହା ମୁଁ ପାରିବି
ତା ଘେନି ଛାମୁଙ୍କ ସେବା,
କରିବି ବୋଲି ମୁଁ ବାହାରି କରୁଛି
ବନ୍ଧେ ଏ ବାଲି ଝାଡ଼ିବା ।''
କଥା ଶୁଣି ତାର ବୀରମଣି ରାମ
ଧରିଲେ ତାହାକୁ ତୋଳି,
ଅତ୍ୟନ୍ତ ସ୍ନେହରେ ନିଜେ ତା ଦେହରେ
ଆଙ୍ଗୁଠିକି ଦେଲେ ଚାଳି ।
ବୀରମଣିଙ୍କର ସ୍ନେହର ସେ ଚିହ୍ନ
ରହିଗଲା ଚିରକାଳ,
ଗୁଣ୍ଡୁଚି ଶରୀରେ ଏବେ ମଧ ଦିଶେ
ରାମଙ୍କ ଆଙ୍ଗୁଠି-ଗାର ।
ସେ ଆଙ୍ଗୁଠି-ଗାର ଦେଉଅଛି ଶିକ୍ଷା
ଏ କଥା ଜଗତ-ଜନେ,

ଛୋଟ ହୋଇ ମଧ ଭଲ କାମ କରା-
ଯାଇପାରେ, ଥିଲେ ମନେ ।

## ପଲ୍ଲୀସନ୍ଧ୍ୟା

ପର୍ବତ ଉହ୍ଲାଳେ ରବି ଅସ୍ତଯାଏ ଧୀରେ
ଶ୍ରାନ୍ତ ପକ୍ଷୀ ଆସି ବସେ ବନସ୍ପତି ଶିରେ ।
ଦୋଳେ କ୍ଷୁଦ୍ର ଢେଉ ତୋଳି ସ୍ୱଚ୍ଛତୋୟ ସର
ଚିତ୍ରିତ ହୋଇଛି ଜଳ, ପଡ଼ି ରବିକର ।

ପୋଖରୀ ହୁଡ଼ାରେ ଧୀରେ ଆସେ କ୍ଳାନ୍ତ ପଦେ
ଶ୍ରାନ୍ତ କୃଷିଜୀବୀ, ମୁଖେ କଥା ନାହିଁ ପଦେ ।
ଆଗରେ ଚାଲନ୍ତି ତାର ବଳଦଯୁଗଳ
ପାଦ ପଙ୍କେ ଲଟପଟ କାନ୍ଧରେ ଲଙ୍ଗଳ ।

ଗ୍ରାମଦାଣ୍ଡେ ହମ୍ବା ରଡ଼ି କରି ଗୋରୁପଲ
ଫେରୁଛନ୍ତି, ପଛେ ତାଙ୍କ ଗାଈଆଳ ଦଳ ।
କେହି କେହେ, – "ଆରେ ଭୀମା, କାହିଁ ମୋ ଧବଳୀ !
ପିଲା ତା' ଅଥୟ କରେ ହମ୍ବାଳି ହମ୍ବାଳି ।"
ଭାଷେ ତାର ସାଥୀ ଭାଇ, "ଏଡ଼େ ଦୁଷ୍ଟ ଗାଈ,
ଦିନଯାକ ଗଲା ତାକୁ ଗୋଡ଼ାଇ ଗୋଡ଼ାଇ !"

ଆଉ କିଏ କହେ, "ଛାଡ଼, ଯିବ ମୋ କଷରୀ,
ପେଟ ତାର ପୂରିନାହିଁ, ଏତେ ଚରି ଚରି ।
ଗୌରୀ ମୋର, ନେଇ ଯାଅ ଗୁହାଳେ ଏହାକୁ
କଅଁଳିଆ ଘାସ ଦେବ, କହିବୁ ମାଆକୁ ।"

ଦେଖୁ ଦେଖୁ ମାଡ଼ିଆସେ କ୍ରମେ ଅନ୍ଧକାର,
କ୍ଳାନ୍ତ ଗ୍ରାମବାସୀ, ମାଡ଼ି ଯେ ଯାହାର ଦ୍ୱାର,
ବସି କହୁଥାନ୍ତି ନିଜ କ୍ଷେତବାଡ଼ି କଥା,
ଅଥବା ଦୁର୍ଦ୍ଦାନ୍ତ ଗ୍ରାମ୍ୟ ଟୋକାଙ୍କ ବାରତା ।

ଏକାଳେ କେତେକ ଶିଶୁ କରି ଧୂଳିଘର
କରିବାରୁ ଗୋଳ, ରଚି ଧୂଳିର ସମର,
ବୟସ୍କେ ବିରାଗେ ଉଚ୍ଚେ ତିରସ୍କାର କରି
କମ୍ପାଇଲେ ଗାଆଁଦାଣ୍ଡ; କେବା ଯଷ୍ଟି ଧରି,

ଆକ୍ରମିଲେ, ଦେଖାଇଣ ଶ୍ମଶ୍ରୁଳ ବଦନ
ଦେଖି ଶିଶୁଗଣ ଭୟେ କଲେ ପଳାୟନ ।

ଘରେ ଘରେ ସନ୍ଧ୍ୟାଦୀପ ଜାଳିଲେ ବନିତା
କାହାର ଦୁଆରେ କ୍ଷୀଣ ଶୋଭଇ ସଳିତା ।
ପବିତ୍ର ତୁଳସୀପୀଠ ତଳକୁ ଆବୋରି
ଜୁହାରନ୍ତି ଗାଇ ଦୁଃଖ, ଘିଅବତି ଧରି –
"ମା ଗୋ, ବୃନ୍ଦାବତି, ଫେଡ଼ କଷଣ ସକଳ,
ପତି ପୁତ୍ର ସୁଖେ ଥାନ୍ତୁ ବଞ୍ଚି କାଳ କାଳ ।"

ଦେଉଳେ ଏକାଳେ ଶୁଭେ ସାନ୍ଧ୍ୟ-ଘଣ୍ଟାଧ୍ୱନି,
ଯେ ଯହିଁ ଥାଆନ୍ତି ବସି ସେ ଶବଦ ଶୁଣି,
ପ୍ରଣମନ୍ତି ଦେବତାଙ୍କୁ, ଅବା ଭକ୍ତଜନେ
ଗମନ୍ତି ଦେବତାଳୟେ ଆରତି-ଦର୍ଶନେ ।

## ଧାନକଟା

ବରଷକ ଫଳ କରିବ ଅମଳ
ଚଷା ମନ ଛନଛନ,
ଦୂର ଗହୀରରେ ପବନ ଲହରେ
ଦୋଳଇ କିଆରି ଧାନ ।
ଦାଆ ଧରି ହାତେ ଚଳେ ବିଲପଟେ
ଚଷା ଅତି ତରତରେ,
ବାରମାସ ଝାଳ- ବୁହାଇବା ଫଳ
ପଶିବ ଆଜି ତା ଘରେ ।
ଖରା-ବରଷାରେ ଝଡ଼-ବତାସିରେ
ନ ମାନି କାଦୁଅ ପାଣି,
ବଢ଼ାଇଛି ଧାନ ଚଷା ମନସ୍କାମ
ପୂରାଇବେ ଦିଅଁ ଜାଣି ।
ପହଞ୍ଚି ବିଲରେ ଚଷା ଏକ କରେ
ଧରି ଶିଁଷା, ଆନେ ଦାଆ,
କାଟୁ କାଟୁ ଧାନ ବେଳ ଅବସାନ
ଲୁଚେ ଖରା ଡାହାଣିଆ ।

ପୁଅ ଝିଅ ତାର କରି ଛୋଟ ଭାର
ଗୋଟାଇ ଆଙ୍କୁଡ଼ା ଧାନ,
ଡାକନ୍ତି ତାହାକୁ ବେଗେ ଫେରିବାକୁ
ଦିନ ହେଲା ଅବସାନ ।
ଏଣେତେଣେ ଚାହିଁ ମୁଣ୍ଡ ନୋଇଁ ନୋଇଁ
ଚଷା ଧାନ ବିଡ଼ା କରେ,
ଥୋଇ ମୁଣ୍ଡପରେ ପିଲାଙ୍କୁ ସଙ୍ଗରେ
ଘେନି ଘରବାଟେ ଚଳେ ।
ବାଟେ ମନେ ମନେ ନମଇ ଚରଣେ
ଗାଆଁ ଦେବୀ-ଦେବତାର,
କହି, ''ପିଲେ ମୋର ପାଇବେ ଏଥର
ସୁଖରେ ମୁଠେ ଆହାର ।''
ମାଡ଼ିଆସେ ସଞ୍ଜ ପକାଇଣ ଖୋଜ
ଫେରୁଛନ୍ତି ଗାଆଁ ଗୋରୁ,
ଆସେ ଚଷା ଖରେ ତାଙ୍କ ସଙ୍ଗତରେ
ନିଜ କଥା ଭାଳୁ ଭାଳୁ ।

## ମେଘୁଆ ଦିନ

କଳା ମେଘ ମାଡ଼ିଆସେ ଆକାଶେ,
ଚଉଦିଗ ଘୋର ଅନ୍ଧାର ଦିଶେ,
ଅଣଚାଶ ବହେ ବାଆ ବତାସି,
ଜଗତକୁ ଅବା ଯିବ ଗରାସି,
ଦୋହଲଇ ଗଛ,
ବରଷା ଆସଇ ପବନ ପଛ ।

ବରଷା ପବନ ମିଶିଣ ଦୁହେଁ,
ପିଟନ୍ତି ଫେରନ୍ତା ଗୋରୁଙ୍କ ମୁହେଁ,
ମୁହଁ ତଳ କରି ଗାଈଏ ଧାଇଁ,
ଆସନ୍ତି ଗୁହାଳେ ଆଶ୍ରୟ ପାଇଁ,
ଟୋକା ଗାଈଆଳ,
ଓଦାରେ ଥରି କରଇ ଓଗାଳ ।

ଆମ୍ବ ତୋଟା, ବଣ, ବିଲେ ବରଷା,
ସାଇଁସାଇଁ ମାଡ଼ିଆସେ ସହସା,
ଚଷାଏ ପଖିଆ ତଳାଇ ତଳେ
ଲୁଚାଇ ମୁଣ୍ଡକୁ ଅତି କଷ୍ଟରେ,
ନିଜ ଚାଷବାସ
ଦେଖନ୍ତି, ଓଦା ଦେହେ ତାଙ୍କ ବାସ ।

ଘଡ଼ଘଡ଼ି ଚଡ଼ଚଡ଼ି ମାରଇ,
ବିଜୁଳି ବେଳେବେଳେ ଚମକଇ,
ବାଟଘାଟ ବିଲ ବୁଡ଼ଇ ଜଳେ,
ନଈବଢ଼ି ଉଠେ ବୁଡ଼ାଇ କୂଳେ,
ଗମନାଗମନ,
ଗାଆଁରୁ ଗାଆଁକୁ ହୁଏ କଷଣ ।

ଏପରି ମେଘୁଆ ଦିନେ ଇସ୍କୁଲେ,
ଯିବାକୁ ମନ ନ ଥାଇଟି ତିଳେ,
ଇଚ୍ଛାହୁଏ ବୋଉ କୋଳରେ ଶୋଇ,
ମୁଠି ମୁଠି ଭଜା ଚାଉଳ ଖାଇ,
ଖାଲି ଶୁଣିବାକୁ
ରଜାପୁଅ, ମନ୍ତ୍ରୀପୁଅ କଥାକୁ ।

## ଚେଷ୍ଟା

ଏକ ଦେଶ ନରପତି ହୋଇ ଅବସନ୍ନ ମତି
ନେଇଥିଲେ ଗିରିଗୁହା ମଧ୍ୟେ ଆଶ୍ରୟ,
ଶତ୍ରୁଗଣ ବାରମ୍ବାର କରି ରାଜ୍ୟ ଛାରଖାର
କଲେ ତାଙ୍କ ସିଂହାସନ ସଦା ଅଥୟ ।
ବିତାଡ଼ିତ ହେଲେହେଁ ଅରି,
ପୁଣି ମାଡ଼ିଆସେ ସୈନ୍ୟ-ସାମନ୍ତ ଧରି । ୧ ।

ଛଅ ଥର ଏହିପରି ଶତ୍ରୁ ପରାଜିତ କରି
ଛଅ ଥର ଗାଦିଚ୍ୟୁତ ହେଲେଣି ରାଜା,
ସୈନ୍ୟ ସବୁ ଗଲେ ମରି ଧନ ଲୁଟିନେଲେ ଅରି
କି ଆଶାରେ ହେବ ପୁଣି ସମରସଜ୍ଜା ?

ଶତ୍ରୁଭୟେ ଗୁହା ଆଦରି,
ଭାବୁଛନ୍ତି ନରପତି ଦୁଃଖେ, "କି କରି !" । ୨ ।

ଅନୁଚରେ ଇତସ୍ତତଃ କେ କାହିଁ ହୋଇଛି ଗତ,
ଧନ ନାହିଁ, ଲୋକ ନାହିଁ, ନାହିଁ ଆଶ୍ରୟ,
କିସ କହି ପ୍ରଜାଗଣେ ପୁଣି ମତାଇବେ ରଣେ
ଥର ଥର କରି ଭୋଗୁଁ ଏ ପରାଜୟ,
ଆଉ ଆଶା ନାହିଁ ଜୀବନେ
ତେଜନ୍ତି ସେ ଦୀର୍ଘଶ୍ୱାସ ବିକଳ ମନେ । ୩ ।

ଏକାଳେ ଦେଖନ୍ତି ବୀର ଶୋଇ ତଳେ ହୋଇ ସ୍ଥିର
ଗୁହାଛାତେ ଊର୍ଦ୍ଧ୍ୱେ ଊର୍ଣ୍ଣନାଭର କ୍ରିୟା,
ଏକ ସ୍ଥାନୁ ଅନ୍ୟ ସ୍ଥାନେ ଊର୍ଣ୍ଣନାଭ ସୂତ୍ର ଟାଣେ
ଲକ୍ଷ୍ୟ ରଖି ବାରମ୍ବାର ମାରଇ ଡିଆଁ,
ନାହିଁ ପାରେ ପହଞ୍ଚି ଲକ୍ଷ୍ୟେ,
ପଡ଼ି ପୁଣି ଡିଏଁ ଧରି ସାହସ ବକ୍ଷେ । ୪ ।

କୌତୂହଳେ ଦେଖୁଥାନ୍ତି ଊର୍ଣ୍ଣନାଭର ଏ କୀର୍ତ୍ତି
ନରପତି ଶୋଇ ଶୋଇ ଗୁହା ଚଟାଣେ,
ଦେଖିଲେ ସେ ଛଅ ଥର ହୋଇ ଏପରି ବିଫଳ
ଆଉ ଥରେ ଡିଏଁ ପୁଣି ଅଧିକ ଟାଣେ ।
ସପ୍ତମରେ ପହଞ୍ଚେ ଲକ୍ଷ୍ୟେ,
କୀଟର ବିଜୟ ରାଜା ଦେଖିଲେ ଚକ୍ଷେ । ୫ ।

କୀଟର ସାଧନା ଦେଖି ହତାଶ ଭାବ ଉପେକ୍ଷି
ତ୍ୱରିତେ ଉଠିଲେ ରାଜା ଅସ୍ତ୍ର ଝଙ୍କାରି
ଭାବିଲେ ସେ ମନେ ମନେ ଚେଷ୍ଟା ହିଁ ସକଳ କର୍ମେ
ଦୁଃସାଧ୍ୟ ସିଦ୍ଧିକି ଆଣେ ପାଶେ ହକାରି ।
ଅନୁଚିତ ହେବା ନିରାଶ,
ପୁଣି ଲଢ଼ି, ଦେଶୁଁ କଲେ ବଇରି ନାଶ । ୬ ।

## କର୍ତ୍ତବ୍ୟ

ଶ୍ରୀବସ୍ତ ରାଉତଙ୍କର ଦୁଇଟି ସନ୍ତାନ,
ଏକ ନାମ ନରହରି ଆନ ସନାତନ,

ଦିନେ ରାଉତରାଣୀଙ୍କର ହେଲା ବଡ଼ ଜର,
ଶ୍ରୀବତ୍ସ ରାଉତେ ହେଲେ ବ୍ୟସ୍ତ, ହରବର ।
ବୈଦ୍ୟକୁ ଡାକିବ କିଏ, ରାନ୍ଧିବ କିଏ ସେ,
ରାଉତରାଣୀ ଡାକୁଛନ୍ତି ପ୍ରତ୍ୟେକ ନିମିଷେ ।
ଘରେ ଆଉ ଲୋକ ନାହିଁ । ତେଣୁ ସେ ରାଉତେ,
ବାଣ୍ଟିଦେଲେ ଘରକାମ ପୁଅଙ୍କୁ ତୁରିତେ ।
କହିଲେ ସେ ସନାତନ ଘରକାମ ଦେଖୁ,
ନରହରି ଅଉଷଧ ଆଣୁ, ବୈଦ୍ୟ ଡାକୁ ।
ତା'ପରେ ସେ ରାଉତରାଣୀ ପାଖେ ବସି ରହି,
ବିଚାରିଲେ କଷ୍ଟ ନେବେ ମିଠା କଥା କହି ।
ଭାବିଲେ ସେ ସବୁ କାମ ନିଷ୍ଠେ ପୁଅ ଦୁହେଁ,
ତୁଲାଇବେ କହିଥିବା ମୁତାବକ ସିଏ ।
ସନାତନ ଅଣ୍ଟାଭିଡ଼ି ଗଲା ରୋଷଘରେ,
ସଫାକଲା ହାଣ୍ଡିକୁଣ୍ଡି ଆପଣା ହାତରେ,
ଲଗାଇଲା ଚୁଲି, ପାଣି କାଢ଼ିଲା କୂଅରୁ,
ଡାଲି, ବଡ଼ି ଆଦି ସବୁ କାଢ଼ି ଭାଡ଼ିତଳୁ,
ପରିବା କାଟିଲା, ବାଟି ରଖିଲା ମସଲା;
ଭାତ, ଡାଲି, ତରକାରି କ୍ରମେ ଆସ୍ତେ କଲା ।
ତା'ପରେ ସେ ଓଳାଇଲା ସବୁ ଘରଦ୍ୱାର,
ବାପାଙ୍କ ସ୍ନାହାନ ପାଇଁ ଦେଲା ପାଣିଭାର ।
ବୋଉଙ୍କର ପଥ୍ୟ ରାନ୍ଧି ବାଢ଼ିଲା ଆଦରେ
ବାପାଙ୍କୁ ଖୁଆଇଦେଲା ଅତି ଯତନରେ ।
ତା'ପରେ ଗାଧୋଇ ନିଜେ ନରହରି ପାଇଁ,
ଅପେକ୍ଷାରେ ସୁଖେ ବସି ରହିଲା, ନ ଖାଇ ।
ନରହରି ଯାଇଥିଲା ବୈଦ୍ୟ ଡାକିବାକୁ,
ବହୁ ବେଳେ ଫେରିଲା ସେ, ନ ଆଣି କାହାକୁ ।
ବାପା ପଚାରୁଁ ସେ କହେ "ବୈଦ୍ୟ ତ ନାହାନ୍ତି, —
ପଚାରୁଁ, କହିଲେ ଆର ସାଇ ଯାଇଛନ୍ତି ।"
ବାପା ପଚାରିଲେ "ଗଲୁ ନାହିଁ ଆର ସାଇ ?"
କହେ ସେ "ଅପେକ୍ଷା କଲି ସେଇଠାରେ ଥାଇ ।"
"ହେଲା ଯେବେ ଡେରି" ପୁଣି ପଚାରିଲେ ବାପା,
"ଗଲୁନାହିଁ ଖୋଜିବାକୁ ଆର ସାଇ କିପାଁ ?"

ନରହରି କହେ "ଖରା ହୋଇଗଲା ଟାଣ, –
କହିଲେ ତାଙ୍କର ଲୋକେ ଗଲେଣି ସେ ଜାଣ ।
ଦୂର ଜାଗା କେଉଁଠିକି; ନ ଫେରିବେ ଇନେ, –
ଆସିଲି ମୁଁ ତାଙ୍କ ଘର ଛାଡ଼ି ତତକ୍ଷଣେ ।
ଭୋଖ ବଡ଼ ଲାଗିଲାଣି, ଖାଏଁ ଗଣ୍ଡେ ଭାତ" –
ବୋଲୁଁ ସେ, ରାଉତେ ରାଗେ ଧରି ତା'ର ହାତ
ଦାଣ୍ଡକୁ ବାହାର ଜୋରେ କରିଦେଲେ ତାରେ,
କହିଲେ ତାହାକୁ "ଅଧିକାର ତୋ ଆହାରେ
ନାହିଁ, ତୋ କର୍ତ୍ତବ୍ୟ କର୍ମ ନ କରି ପୂରଣ,
ବିନାଶ୍ରମେ ନ ଯୋଗାଏ ଉଦର-ଭରଣ ।
ଯାଅ ତୁ ବୈଦ୍ୟକୁ ଡାକି ଆଣିବୁ ସଙ୍ଗରେ,
ତେବେ ଯାଇ ଖାଇବୁ ତୁ ବସି ନିଶ୍ଚିନ୍ତରେ ।"

## ପରିଶ୍ରମ

ଏ ପୃଥିବୀ ବିଧାତାର ବଡ଼ ଗନ୍ତାଘର,
ନାନା ରତ୍ନେ ପରିପୂର୍ଣ୍ଣ ଧରଣୀ-ଅନ୍ତର ।
ଧରାକୁ ଆସିଲାବେଳେ ମାନବ-ସନ୍ତାନ
କହିଲେ ଆଶିଷ ଦେଇ ତାକୁ ଭଗବାନ୍ –
"ପୃଥିବୀର ଧନ-ରତ୍ନ ସୁଖଭୋଗ ଯାହା
ସମସ୍ତ ତୋ ଲାଗି ବାପ, ଭୋଗ କର ତାହା ।"

କର ଯୋଡ଼ି କହେ ନର, "ହେ ପରମପିତା,
ରୁଦ୍ଧ ଯେ ଭଣ୍ଡାର ତବ, କେହ୍ନେ ହେବ ଫିଟା ?
ଧରିତ୍ରୀ କି ଦେବ ସବୁ ମାଗିଦେଲା ମାତ୍ରେ ?
ଖାଦ୍ୟ ଆଣି ଦେବ ମୁଖେ, ବସ୍ତ୍ର ଦେବ ଗାତ୍ରେ ?"

ହସିଲେ ବିଧାତା ଶୁଣି । ମାନବର କରେ
ଧରାଇଲେ କୁଞ୍ଚି ଏକ, ଲେଖା ତଥି ପରେ
'ପରିଶ୍ରମ' – ଏହି ଶବ୍ଦ ।
କହିଲେ ତାହାକୁ –
"ଧରିତ୍ରୀ ଭଣ୍ଡାର ଖୋଲି ସୁଖ ଭୋଗିବାକୁ
ଘେନ ଏକମାତ୍ର କୁଞ୍ଚି; ଏହା ନାହିଁ ଧରି

କର ଯେତେ ପୂଜା, ଧର୍ମ, ଦିଅ ଯେତେ ବଳି,
ବ୍ୟର୍ଥ ହେବ ତାହା ସବୁ । କରି ପରିଶ୍ରମ,
ଭୋଗ କର ବସୁନ୍ଧରା, ସେହି ତୋ ଧରମ ।
ଚୋରି ପରି ନୀଚ୍‌କର୍ମ ଭୋଗ ବିନାଶ୍ରମେ,
ଶ୍ରମାର୍ଜିତ-ସୁଖ ସଙ୍ଗେ ଗର୍ବ ଆସେ ମନେ ।
ନିର୍ବାକ, ନିଶ୍ଚଳ ତରୁ ଅର୍ଜେ ତା ଭୋଜନ
ମାଟିରୁ କାଢ଼ଇ ଫଳ, ଫୁଲ, ଗନ୍ଧ, ବର୍ଣ୍ଣ ।
ଗତିଶୀଳ ହସ୍ତପଦ ବହି ତୁମେ ନର
ଆଳସ୍ୟେ ଭୁଞ୍ଜିବା ଅନ୍ନ ଉଚିତ ତୁମ୍ଭର ?
ଅବୟବ ତୁଲେ ତବ ଦେଇଅଛି ବୁଦ୍ଧି;
ଉଭୟକୁ ଯୋଗ କଲେ ହେବ ଅଭିବୃଦ୍ଧି ।
ଯେବେ ଲେଉଟିବ ପୁଣି ମୋ ପାଶେ ଧରାରୁ –
ପଚାରିବି ଏକ ପ୍ରଶ୍ନ, 'ପହଞ୍ଚିବାଠାରୁ
ଲେଉଟିଲାଯାଏ, ଯହିଁ ହୋଇଥିଲ ଜନ୍ମ
କରିଛ ସୁକର୍ମ କେତେ, ଦେଇ ନିଜ ଘର୍ମ ?'
ଅଥବା ନିଜର ନୀଚ ସ୍ୱାର୍ଥପରତାରେ
ଭୋଗିଛ, ନ ଦେଇ କିଛି ମାତା ବସୁଧାରେ ?
ସନ୍ତୋଷଜନକ ଯଦି ନ ହେବ ଉତ୍ତର
ପୁଣି ପଠାଇବି ତୋତେ ପୃଥିବୀପୃଷ୍ଠର ।
ନିଜ ଶ୍ରମେ ନ ଶୁଝିଲା ଯାଏଁ ଧରା ଋଣ
ଜନ୍ମୁଥିବ ଧରାପୃଷ୍ଠେ ତୁମେ ପୁନଃ ପୁନଃ ।''

## ଭଲ ଓ ମନ୍ଦ ପିଲା

ଦୁଇଟି ବାଳକ, ସାଥି ହୋଇ ଦିନେ
ଯାଉଥିଲେ ପଢ଼ିବାକୁ,
ଜଣକର ନାମ ମାଧବ, ଆନର
ଡାକ ନାମ ଥିଲା ମକୁ ।
ମକୁ, ମାଧବର ଆଗେ ଆଗେ ଚାଲି
ଯାଉଥିଲା ନାରାୟଣ,
ଛୋଟ ପିଲାଟି ସେ ବସ୍ତାନି କାଖରେ
ଧରି ଚାହେଁ କନକନ ।

ଏଣେତେଣେ ଚାହୁଁ, ହଠାତ୍ ଆଗରୁ
ଆସୁଥିବା ଏକ ଗାଈ,
ନାରାୟଣ ଦେହେ ଘସି ହୋଇ ସେହି-
କ୍ଷଣି ପଳାଇଲା ଧାଇଁ ।
ମାଧବ ଓ ମକୁ ଗଲେ ତେଣେ ଧାଇଁ
ରଖିଲେ ନିଜର ପ୍ରାଣ,
ଗାଈ ଯିବା ପରେ ରାସ୍ତାକୁ ଫେରିଲେ
କରି ଚାରିଆଡ଼େ ଧ୍ୟାନ ।
ଦେଖିଲେ ତ ଗାଈ ଗଲାଣି କୁଆଡ଼େ,
ନାରାୟଣ ରାସ୍ତାକଡ଼େ,
ପଡ଼ିଛି ଅଚେତ, ଖାତା, ବହି ତା'ର
ଗଡୁଅଛି ଧୂଳି ପରେ ।
ମାଧବ କହିଲା, ମକୁକୁ "ଭାଇରେ
ଆସ ତାକୁ ନେବା ଟେକି,
ଡାକ୍ତରଖାନାକୁ, ଗୋଟା ବହିତକ,
କି ହୋଇଛି ତାର ଦେଖି ।"
ମକୁ କିନ୍ତୁ କହେ, "ଶୁଣ ଭାଇ, ତେଣେ
ସ୍କୁଲ ଘଣ୍ଟା ବାଜିଲାଣି,
ଆମେ ଦୁଇ ଜଣ କି କରି ପାରିବା,
ଖରା ଭାରି କାଟିଲାଣି ।
ଇସ୍କୁଲକୁ ଯାଇ ଗୁରୁଙ୍କୁ କହିବା
ସେ ଯାହା କରିବେ ସିନା,
ବିଳମ୍ବ ହୋଇଲେ ନାରଣ କି ଦେବ
ଆମ ପାଇଁ ଜରିମାନା ?
ତୁ ଯଦି ନ ଯିବୁ ମୁଁ ଚାଲିଲି ଭାଇ"-
କହି ମକୁ ଗଲା ଚାଲି,
ମାଧବ ଗୋଟାଇ ନାରଣର ବହି
ଝାଡ଼ିଦେଲା ଧୂଳିବାଲି ।
ନାରଣକୁ ଧରି ଧୂଳି ପୋଛୁ ପୋଛୁ
ଦେଖିଲା ଆସଇ ଗାଡ଼ି,
ହାତ ଟେକି ତାକୁ ଅଟକାଇଦେଲା
ଦେଖାଇଲା ହାତ ଠାରି ।

ଶୁଣିସାରି ସବୁ, ମଟରର ବାବୁ
ନାରଣକୁ ଉଠାଇଲେ,
ଡାକ୍ତରଖାନାରେ ହେଲାରୁ ଚିକିତ୍ସା
ଉଠିଲା ନାରଣ ଧୀରେ ।
ସେ ଦୁହିଁଙ୍କୁ ପୁଣି ବସାଇ ମଟରେ
ଇସ୍କୁଲେ ଆଣିଲେ ବାବୁ,
ମାଧବ ଉପରେ ସନ୍ତୁଷ୍ଟ ହୋଇଣ
ଗୁରୁଙ୍କୁ କହିଲେ ସବୁ ।
ଇସ୍କୁଲ ସେ ଦିନ ଅଧା ହୋଇଥିଲା
ମାଧବ ଆସିବା ବେଳେ,
ଗୁରୁ କିନ୍ତୁ ନାହିଁ ରାଗି ତା ଉପରେ
ଆଦରେ ଧଇଲେ କୋଳେ ।
ମଙ୍କୁକୁ ଭର୍ତ୍ସନା କରିଲେ ବୋଲିଣ –
''ଅଳସୁଆ, ସ୍ୱାର୍ଥପର'',
ପିଲାଙ୍କୁ କହିଲେ ହେବାକୁ ସମସ୍ତେ
ମାଧବ ପରି ଏଥର ।

## ବାପୁଜୀଙ୍କ ଶିଷ୍ୟ

ମୋ ଜାତିର ଉଦ୍ଧାରକ, ପିତା ମୋ ଜାତିର,
ବାପୁଜୀ ଚରଣ-ପଦ୍ମେ ନତ ମୋର ଶିର,
ମାଗେ ଏହି ଆଶୀର୍ବାଦ
ଛୋଟ ଗାନ୍ଧି ହୁଏଁ ଅନୁସରି ତାଙ୍କ ପଦ ।
ସତ୍ୟ ଆଚରିବି ସଦା ବଚନେ, କରମେ,
ଈଶ୍ୱରଙ୍କୁ ସାକ୍ଷୀ ରଖିଥିବି ମୋ ମରମେ,
ହିଂସା ନ କରିବି କା'ରେ
ସରବେ ସମାନ ବୋଲି ମଣିବି ଧରାରେ ।
ନିଜ ସ୍ୱାର୍ଥ ଭୁଲିଯିବି ଦେଶ ଶୁଭ ପାଇଁ,
କଉଣସି ଦେଶକାମେ ଠକ ହେବି ନାହିଁ,
ଯାହା ପଡ଼ିବ ମୋ ଭାଗେ
କରିବି ତା' ନିଜ କାମ ପରି, ଅନୁରାଗେ ।

ହୁଏଁ ନେତା, ହୁଏଁ ମନ୍ତ୍ରୀ, ହୁଏଁ ରାଜ୍ୟପାଳ,
ହୁଏଁ ବା କୃଷକ, ମୋଚି, ଗ୍ରାମ ଜଗୁଆଳ,
        ସେବକ ମୁଁ ସବୁ ସ୍ଥାନେ
ଆଗେ ଦେଶ, ମୁହିଁ ପଛେ, ଥିବ ସଦା ଧ୍ୟାନେ ।
କରିବି ସଭିଙ୍କି ପ୍ରେମ, ଘୃଣା ନାହିଁ କା'ରେ,
ଶ୍ରମ କରି ବଞ୍ଚିବି ମୁଁ ସରଳ ପ୍ରକାରେ,
        ହୋଇ ଛୋଟ ଦୀପ ପରି,
ହରିବି ଅନ୍ଧାର, ବାପୁପଦ ଅନୁସରି ।

## ଦେଶ-ମା'ର ଆହ୍ୱାନ

ଦେଲେ ଡାକ ରାଷ୍ଟ୍ରପତି –
''ଦେଶେ ପଡ଼ିଛି ବିପତ୍ତି,
        ଲୋଡ଼ା ବହୁ ଧନ, ବହୁ ପ୍ରାଣ'' –
ହେଲେହେଁ ପିଲାଏ ଆମେ
ଅଯୋଗ୍ୟ ଲଢ଼ାଇ କାମେ
        ନଶିଖିଛୁ ମାରିବା କମାଣ;
ଲେଖିବୁଁ ସେନାପତିଙ୍କି
''ରଣକ୍ଷେତ୍ରେ ନେବନି କି,
        କେତେ କାମ କରନ୍ତୁ ସୁଖରେ;
ଧରି ଏ ଜାତିର ନେତ
ହୋଇ ଆମେ ସୁଖେ ମେଣ୍ଟ,
        ଦେବୁ ହେଲେ ଜଳ ସୈନିକରେ ।
ହେବ ଯଦି ଦରକାର
ରଖିବାକୁ ଦେଶ-ମା'ର
        ମହତ, ସକଳ ଦେବୁ ଢାଳି,
ଜାତିର ପତାକା ଧରି
ପଡ଼ିବୁ ଖୁସିରେ ଢଳି
        ମା'ନାଆଁରେ ଦେବୁନାହିଁ କାଳି ।
ହେଉ ଯୁଦ୍ଧ, ହେଉ ଶାନ୍ତି
ହେବୁ ନାଗରିକ ଖାଣ୍ଟି,
        ଅଶୋକ-ଚକ୍ରରେ ଥିବ ନେତ୍ର,

ରଖିବାକୁ ତା ଇଜ୍ଜତ
ଦେବୁ ଶ୍ରମ, ଦେଲେ ରକ୍ତ
ସୁଖମୟ ହେବ ରଣକ୍ଷେତ୍ର ।
ଜାତିର ପତାକା ଉଁଚା
ରଖିବାକୁ, ପଛଘୁଞ୍ଚା
ନାହିଁ ଦେବୁ, ଯିବ ପଛେ ପ୍ରାଣ,
ହେୟ ଆମେ, ତା ନଇଁଲେ
ମାନ ତାର ଏ ମହୀରେ
ରଖିବାହିଁ ଆମର ସମ୍ମାନ ।

## ପ୍ରାର୍ଥନା

ଅଜ୍ଞାନ ମାନବ-ଶିଶୁ ଡାକେ ଅନ୍ଧକାରେ
ଆଲୋକ ଦିଅ ହେ ପ୍ରଭୁ ଦୟାକରି ତା'ରେ ।
ଏ ଭୁବନେ ଆରମ୍ଭ ସେ କରୁଛି ଜୀବନ
ନ ଜାଣଇ ବାଟେ ଅଛି କି ବାଧା କଷଣ ।
ତୁମ୍ଭେ ପ୍ରଭୁ ହାତ ଧରି ତାହାରେ ଚଳାଅ
ସବୁ ଅବସ୍ଥାରେ ସାଥେ ସାଥେ ତା'ର ଥାଅ ।
ଅହଂକାର ନ ବହିଣ ଆପଣାର ବଳେ,
ତୁମ୍ଭ ଅନୁଗ୍ରହ ଦେଖୁ ସବୁ ଶ୍ରମ-ଫଳେ ।
ଅନ୍ୟର ବିଭବେ ଈର୍ଷା ନ ଆସୁ ତା' ମନେ
ଆନନ୍ଦେ ତା' ଭୋଗୁ ଯାହା ମିଳେ ନିଜ ଶ୍ରମେ ।
ଅନ୍ୟାୟକୁ କରୁ ଘୃଣା, କର୍ତ୍ତବ୍ୟରେ ଧ୍ୟାନ,
ସାଧ୍ୟମତେ କରୁ ନରେ ଦୁଃଖୁଁ ପରିତ୍ରାଣ ।
ପିତାମାତା ପ୍ରତିବେଶୀ ଗ୍ରାମବାସୀଗଣେ
ସେବା କରି ଧନ୍ୟ କରୁ ସେ ନିଜ ଜୀବନେ ।
ସଦା ସେ ଚିତ୍ତରେ ରଖୁ, ଏ ବିଶ୍ୱେ ତୁମ୍ଭର
ଧୂଳିକଣାଠାରୁ ନିଜେ ଅଟେ ନ୍ୟୁନତର ।
ବିପଦ ପଡ଼ିଲେ ନୋହି ତିଳେ ବିଚଳିତ
ମନେରଖୁ, ଦୁଃଖେ ହୁଏ ଚରିତ୍ର ଗଠିତ ।
ଏମନ୍ତେ ଜୀବନ ତାର ଚଳାଅ ଈଶ୍ୱର,
ମାଗଇ ଏ ଶିଶୁ ଏହି କରୁଣା ତୁମ୍ଭର ।

# ଭାଇ ପାଖକୁ ଚିଠି

କଟକ ଲେଖିଛି ଚିଠି ଭାଇ ପାଖକୁ,
ପଠାଇବେ ଡ୍ରଇଂଖାତା, କଲମ, ଚାକୁ ।
'ଭାଇ ପାଖେ ଲେଖ୍', ବୋଲି ମାଷ୍ଟ୍ରେ କହିଲେ
ଚିଠିରେ ଠିକଣା ଲେଖିଦେଲେ ପହିଲେ ।
ଭାଇ କି ଶୁଣିବେ ସତେ ? ଦେବେ ପଠାଇ ?
ଦୂରଦେଶେ ମୁଁ ତାଙ୍କ ମନରେ ଥାଇ ?
ସେଥର କହିଲି ଆଣିବାକୁ କାମିଜି,
ନ ଆଣି କହିଲେ – "ଆର ଥର ଆଣିବି ।"
ଭାଇ ଲେଖୁଥାନ୍ତି ଯେଉଁ ଫାଉଣ୍ଟେନରେ
ଲୋଭ ହେଲା, ମାଗିଲି ତା' ତାଙ୍କୁ ମୁଁ ଥରେ ।
କହିଲେ ସେ "ପିଲାଟା ତୁ କିସ କରିବୁ,
ବହୁତ ମିଳିବ, ଯେବେ ପାଠ ପଢ଼ିବୁ ।"
କିଛି ସେ ଦିଅନ୍ତି ନାହିଁ, କହନ୍ତି ଖାଲି
ଆଦର ଆଦର କଥା, ଧନ, ସଂଖାଳି,
ଦେଇଛନ୍ତି ଖାଲି ଏକ ଛବିର ବହି
ପଢ଼ିବାକୁ ମନ ଦେଇ ଅଛନ୍ତି କହି ।
ପଢ଼ିଲିଣି, ଦେଖିଲିଣି ବହୁତ ତାକୁ,
ଆଉ କି କିତାପ ନାହିଁ ପଠାଇବାକୁ ?
ଭାଇ ସତେ ମତେ ଭଲ ପାଆନ୍ତି ନାହିଁ,
ସବୁବେଳେ ମତେ ଭଣ୍ଡୁଛନ୍ତି ଭୁଲାଇ ।
ଛୁଟିରେ ଆସିବେ ଯେବେ ଗାଆଁ ଏଥର
ନ ମିଶିବି ନ ଦେଲେ ସେ ଖାତାପତର ।
ଚିଠି ମୋର କଟକରେ ପହଁଚିବଣି
ଭାଇ ମୋ ଅକ୍ଷର ଦେଖି ଚିଡ଼ିଯିବେଣି ।
ଯେତେ ଚେଷ୍ଟା କଲେ, ଭଲ ନୋହେ ଅକ୍ଷର
କି କରିବି, ଭାଇ ରାଗ ହେଲେ ଏଥର ?
କଟକେ ପଢ଼ନ୍ତି ଭାଇ, କହୁଥିଲେ ସେ
କଟକ ସବୁଠୁଁ ବଡ଼ ସହର ଦେଶେ ।
ଗାଡ଼ି, ଘୋଡ଼ା, ଲୋକବାକ, ବିଜୁଳିବତି
ମନଟା ହେଉଛି ଥରେ ଦେଖି ଆସନ୍ତି ।

କହିଲେ କହିବେ ବାପା "ହୁଅ ତୁ ବଡ଼,
ଭାଇ ପରି ବେଶୀ ବେଶୀ ପାଠ ତୁ ପଢ଼ ।"
କେବେ ଆଉ ବଡ଼ ହେବି, ଯିବି କଟକ ?
କେତେ ଦିନ ପିଲା ବୋଲି ଥିବି ଅଟକ ?

## ରାତିକ ସ୍ୱପ୍ନ

ଖରାଦିନ ରାତି ଜୋଛନା ପଡ଼ିଛି
ଅଗଣାରେ ପଟି ପାରି,
ବାପା ସଙ୍ଗେ ଥରେ ଅପା ସଙ୍ଗତରେ
ନିଦରେ ମୁଁ ହେଲି ଘାରି !
ଜହ୍ନ ଆଲୁଅରେ ମେଲା ଅଗଣାରେ
ବାପା କୋଳେ ଶୋଇପଡ଼ି,
ଯେ ସବୁ ସପନ ଦେଖିଲି ସେ ଦିନ
ନ ପାରେ ମନରୁ ତଡ଼ି ।
ଦେଖିଲି ସପନେ ଆମ ଘରକଣେ
ବସିଛି ମୁଁ ଅପା ସାଥି,
ଏକାଳେ ଅଇଲା, କେଉଁଠି ସେ ଥିଲା
ଦନ୍ତାବଳ ଏକ ହାତୀ ।
କହିଲା ସେ ହାତୀ "ଚଢ଼ ମୋର ପିଠି
ନେଇଯିବି ଆନ ଦେଶ,
ଦେଖିବ ଆଖିରେ ନ ଦେଖିଲା କଥା
ପିନ୍ଧିବ ରାଜାର ବେଶ ।"
ଏତକ ସେ କହି ଶୁଣ୍ଢ ତା ବଢ଼ାଇ
ଉଠାଇଲା ପିଠି ପରେ,
ଆମେ ଦିହେଁ ଯାଇ ଭୟେ ଦକଦକ
ବସିଥାଉ ଜଡ଼ସଡ଼େ ।
ଦେଖୁ ଦେଖୁ ହାତୀ ଝରକାରେ ପଶି
ଦାଣ୍ଡକୁ ବାହାର ହେଲା,
ଆମ ଦାଣ୍ଡେ ସେଇ ନିମିଷକେ ରହି,
କ୍ଷଣକେ ବଦଳିଗଲା ।

ବଦଳିଯାଇଛି, ନାହିଁ ଆଉ କିଛି
ପୂରୁବ ଦୁଆର ଘର,
ଆମ ଘରଯାକ ତୋଟା ହୋଇଗଲା
ଗଛ, ଲଟା ବନସ୍ତର।
ରଙ୍ଗ କନିଅର ଦେଖି ତରତର
ତୋଳିବାକୁ ହେଲା ମନ;
ଫୁଲ ମୁଁ ତୋଳୁଛି ଅପାକୁ ଦେଉଛି
ହାତୀ ହେଲା ଅନ୍ତର୍ଦ୍ଧାନ।
ହାତୀ କାହିଁ ଗଲା ଧରାଧରି ଗଳା,
ଛିଡ଼ା ହୋଇ ପଚାରୁଛୁ,
କନିଅର ଗଛ ହୋଇ ରୋହିମାଛ
ପହଁରି ଆସିଲା ପଛୁ।
ପାଦ ତଳ ମାଟି ପାଣି ହେଲା ଫାଟି,
ରୋହିମାଛ ଡାକେ ଆସ,
କହୁ କହୁ ରୋହି ପିଠି ପରେ ଥୋଇ
ପହଁରଇ ଚଉପାଶ।
''ବୁଡ଼ିଯିବୁ ଆମେ, ବୁଡ଼ିଯିବୁ ଆମେ,
କାନ୍ଦିବେ ଯେ ବାପା ମାଆ''
ପକାଇଲୁ ଡକା ହୋଇଣ ଟାଟକା,
ଅପା କାନ୍ଦେ ଧରି ରାହା।
ଅପା ଧରି ମତେ କାନ୍ଦୁଥାଏ, ଯେତେ
ପୋଛୁଥାଏ ଅପା ଲୁହ;
ପୋଛୁ ପୋଛୁ ଦେଖ ରୋହି ହଂସ ଏକ
ହୋଇଉଠେ ଟେକି ମୁହଁ।
ଉଠି ଉଠି ମେଘେ ହଂସ, ବାୟୁ ବେଗେ
ଉଡୁଥାଏ ଆକାଶରେ,
ଶୀତଳ ପବନ ହୋଇ ସନସନ
ବାଜୁଥାଏ କାନ ପରେ।
ମିଟିମିଟି ହସି ତାରା, ମେଘ, ଶଶୀ
ଡାକୁଥାନ୍ତି ''ଏଣେ ଆସ,
ଖାଇବ, ପିଇବ, ହସିବ, ଖେଳିବ
ପୂରିବ ସକଳ ଆଶ।''

''ନାହିଁ, ନାହିଁ, ନାହିଁ, ଦରକାର ନାହିଁ''
କହିଲି ମୁଁ ଥର ଥର,
''ବାପା ବୋଉ ଛାଡ଼ି ପବନରେ ଉଡ଼ି
କି ସୁଖ ହେବ ଆମର !
ଏ ହଂସ, ଶୁଣ ରେ ନେଇ ପହଁଚା ରେ
ଆମର କୁଡ଼ିଆ ଘରେ ।''
କହୁ କହୁ ସତେ ସବୁ ହେଲା ଫତେ,
ସବୁ ଶେଷ କ୍ଷଣକରେ ।
ଉଠି ମୁଁ ଦେଖିଲି ନିଜେ ଶୋଇଥିଲି
ଅପା ଉଠାଉଛି ମୋତେ,
ମାମୁ ଆସିଛନ୍ତି ନେବେ, ବସିଛନ୍ତି
ରେଳରେ ତାଙ୍କ ସଙ୍ଗତେ ।

## ଚାଲ୍‌ରେ ଚାଲ୍

ବିଘ୍ନ-ବିପଦ ନ ମାନି ଚାଲ୍
ନାଶିବା ତିମିର ହୋଇ ମଶାଲ୍,
ଢାଳି ଚାରିପାଶେ କରୁଣାଧାର
ଚାଲ୍‌ରେ ଚାଲ୍, ଆଗେଇ ଚାଲ୍ । ୧ ।
ଆମେ ମନୁଷ୍ୟ ରାଜା ଧରାର
ଧରଣୀ ଆମର ଭୋଗ-ଆଗାର,
ଦୈନ୍ୟ-ଦୁଃଖେ କରି ଚୁର୍ମାର
ଚାଲ୍‌ରେ ଚାଲ୍, ଆଗେଇ ଚାଲ୍ । ୨ ।
ସନ୍ତାନ ଆମେ ଏକ ମାଆର
ରଖିବା ମହତ ସଭିଏଁ ତାର,
ଯଜ୍ଞେ ଢାଳିବା ସ୍ୱାର୍ଥ-ଧାର
ଚାଲ୍‌ରେ ଚାଲ୍, ଆଗେଇ ଚାଲ୍ । ୩ ।

# ସେ ଦିନର କବିତା

## 'ସେ-ଦିନର କବିତା'ର ସେ ଦିନ ଓ ଏ ଦିନ

ଏହି କବିତାଗୁଡ଼ିକର ଅଧିକାଂଶ ଊଣା-ଅଧିକେ ୩୦-୩୨ ବର୍ଷତଳର ଲେଖା। କଟକ ରେଭେନ୍‌ସା କଲେଜରେ ଛାତ୍ରଜୀବନର ସେହି ସୁଖ-ଆଦର୍ଶ-କଳ୍ପନାମୟ ପ୍ରଥମ, ଦ୍ୱିତୀୟ, ତୃତୀୟ ବର୍ଷ ସେହି ନିବିଡ଼ ନିଖୁଣ ଆଦ୍ୟ ଯୌବନର ଲେଖା। ସ୍ପଷ୍ଟ ମନେପଡୁଛି ଯେ ପୂଜ୍ୟପାଦ ଅଧ୍ୟାପକ ରତ୍ନାକର ପତି ପ୍ରଭୃତି ରେଭେନ୍‌ସାର ଭିନ୍ନ ଭିନ୍ନ କ୍ଲାସ୍-ରୁମ୍‌ରେ ଆବିଷ୍ଟ ଚିତ୍ତରେ ଓ ତାରସ୍ୱରରେ ଯେତେ-ବେଳେ ଲେକ୍‌ଚର୍ ଦେଇଚାଲିଥାନ୍ତି, ଠିକ୍ ସେତିକିବେଳେ ଏହି କବିତାଗୁଡ଼ିକରୁ ଅନେକଙ୍କର ଜନ୍ମ ଓ ପୂର୍ଣ୍ଣତାପ୍ରାପ୍ତି। ବିଦ୍ୟାର୍ଥୀପକ୍ଷରେ ଏହା ଅକ୍ଷମଣୀୟ ଅପରାଧ। ସେହି ଅପରାଧର ଏକମାତ୍ର କ୍ଷମା ଏଇ ହୁଏତ ହେବ, ଯଦି କେବଳ ଲେକ୍‌ଚର୍ ଟିପି ପାଶ୍ କରିବା ଅପେକ୍ଷା, ଏଇ ଦୟନୀୟ ଅକ୍ଷର-ଜୀବଗୁଡ଼ିକୁ ମୋ' ଜାତି ଅଧିକ ମୂଲ୍ୟ ଦେଇପାରେ।

ଭ୍ରାମ୍ୟମାଣ ଜୀବନର ଶେଷ ଅଧ୍ୟାୟରେ ୧୯୫୬ରେ ସମ୍ବଲପୁର ଛାଡ଼ି' କଟକରେ ଯେତେବେଳେ ଅବସ୍ଥାପିତ ହେଲି, ସେଇ ସମୟରେ କଟକରେ ମୋର ନିଜ ଘରେ ଦିନେ ପୁରୁଣା କାଗଜପତ୍ର ସବୁ ଘାଣ୍ଟି ସଜାଡ଼ିରଖିବାବେଳେ କବି ଗଡ଼ନାୟକଙ୍କ ଆଖିରେ ଏଇ କବିତାଗୁଡ଼ିକର ଛିଣ୍ଡା ପୁରୁଣା ହାତଲେଖା ଖାତାସବୁ ପଡ଼ିଲା। ଆଖି ବୁଲେଇଲା ପରେ ସେ ଏଗୁଡ଼ିକୁ ଏକାଠି କରି ପ୍ରକାଶ କରିଦେବାକୁ ବହୁ ଅନୁରୋଧ କଲେ; ପୁସ୍ତକର ଏହି ନାମଟି ମଧ୍ୟ ସେ ଦେଲେ। ତାଙ୍କରି ଦିଆକ ନାମ ଓ ତାଙ୍କରି କଥାରେହିଁ ଏ କବିତାଗୁଡ଼ିକ ଏଇ ଭାବରେ ଆତ୍ମପ୍ରକାଶକଲା।

**ଲେଖକ**

# ମାଟିର ସତୀତ୍ୱ

ନ ଦେଉଁ ମୁଁ ରାଜାର କର, ନେଲା ରାଜା ଜମି ଓ ଘର,
ତେଣୁ ମୁହିଁ ଲକ୍ଷ୍ମୀଛଡ଼ା ହେଲି, ଛାଡ଼ି ଲାଜ ଓ ଡର ।
ପ୍ରଥମରେ ଭାବିଲି ମନେ ଜଣେ ମୁଁ ତ ଲକ୍ଷ ଜନେ,
ରାଜା କିପାଁ ନ ଦିଏ ଛାଡ଼ି ସାମାନ୍ୟ ମୋ ଖଜଣା-କଣେ ?
ଭାବିଲି ମୁଁ କହିବି ଯାଇ ଖଜଣାରୁ କ୍ଷାନ୍ତି ପାଇଁ,
ନ ହେବ କି ଭଣ୍ଡାର ତା' ପୂର୍ଣ୍ଣ ମୋ କଣିକା ପାଇଁ ?

ରାଜା, କଥା କହିଲା କି ରେ ? ଅନାଇଲା ଦୃପ୍ତ ଶିରେ,
କହିଲା ସେ ଦେବାକୁ ହେବ, ଛାଡ଼ିବାର ନାହିଁ ବିଧିରେ ।
ନିୟମ ତ ରାଜାର ହାତେ, ଯାହା ଆମ ରକ୍ତ-ଚାଟେ,
କହିଲେ ରେ ଶୁଣିବ କିଏ, କହିଲେ ଯେ ମୁଣ୍ଡ ଫାଟେ !

ଘେନି ଭାରା କୁଟୁମ୍ବର କିଏ ଅଛି ମାନବ-ବର,
ପାରିବ ଯେ ଚଳାଇ ଘର ବିନା ଲୁହେ, ନିଃସମ୍ବଳ !
ରାଜା ତାହା ବୁଝଇ ନାହିଁ, ଦଣ୍ଡେ ତା' ଶୁଳ୍କ ପାଇଁ,
ବୁଝେ ନାହିଁ ତା'ପରି ମୋର ସୁଖ ଦୁଃଖ ଅଛି ରେ ଭାଇ !
ଦେଶେ ତାର ବୋଲି କି ଘର ଭୋକ-ପେଟେ ଦେବି ତା' କର ?
ପିଲାପିଲି ଅନ୍ନ ବିକି ପ୍ରଜା ହେବି ମଦ୍ୟପର ?

ତା' ଛାଟିଆ ଆସିଲା ଦିନେ ଦୀନତମ କରିଲା ଦିନେ,
ନେଲା ମୋର ଘର ଓ ଜମି, ବାହାରିଲି ଆଶ୍ରା ବିନେ ।
କଲା ମତେ ଦାଣ୍ଡେ ଠିଆ ନିଠୁର ସେ ରାଜା-ଛାଟିଆ,
ପିଲାପିଲି ବଦନେ ଚାହିଁ, ନୟନେ ମୋ ଜଳଇ ନିଆଁ ।

କାହା ଜମି, ଘର ବା କା'ର, ରାଜାର ବା କି ଅଧିକାର ?
ଧରଣୀ କେ ଚିରିଲା ଧରି ଲଙ୍ଗଳ-ଲୁହାର ଧାର ?
ଯୁଗ ଯୁଗ ଆସିଲେ ଚଷି ଲୋକେ ମୋର ନିଆଁରେ ପଶି,
ଏ ରାଜା ଥିଲା ରେ କାହିଁ, ଅଧିକାର ଦେଖାଏ ବସି ?

କାଢ଼ି ମତେ ଦେଲା ମୋ ଘରୁ, ଦେଲା ତଡ଼ି ମୋ ଓଳିତଳୁ,
କହୁଛି ସେ ତାହାର ସବୁ, ଦାନ ଅବା ଦେଇଛି କରୁ !
ଭାବିଲି ମୁଁ ମୁଷ୍ଟିଘାତେ, ଦେବି ଚୂରି ରାଜାର ଭାଟେ,
କାହାର ଏ ଜମି ଓ ଘର, ବୁଝାଇବି ଗୋଟାଏ ନାତେ !

ପରେ ମୋର ହେଜିଲା ଚିତ୍ତ, ହେବ ଫଳ ଯେ ବିପରୀତ,
ପିଲାପିଲି-ରକ୍ତେ-ଲୁହେ ଓଦା ହେବ ଜନ୍ମପୀଠ ।
ସାକ୍ଷୀ ମୁଁ ଧର୍ମେ କରି, ପିଲାପିଲି ସାଥିରେ ଧରି,
ଫେରାଇଲି ମୁଖ ମୋ ତହୁଁ, ପଶୁବଳେ ରାଜାର ଡରି !

ସାକ୍ଷୀ ମୁଁ ଧର୍ମେ କରି, ଡାକ ଦେଲି ଉଚ୍ଚ କରି,
''ହେ ଜନନୀ, ଧରିତ୍ରୀ ଗୋ, ପାଳିଲୁ ମା' ଜୀବନଧରି ।
''ଜନନୀରୁ ବଳି ତୁ ମୋର, ଯୁଗୁ ଯୁଗୁ ଲାଗିଛି ଡୋର,
ଲୋକେ ମୋର ରକ୍ତ ଦେଇ କାଢ଼ିଛନ୍ତି ସ୍ୱର୍ଣ୍ଣ ତୋର ।

''ରାଜା ତାର ଦଣ୍ଡ ଧରି ନେଲା ତତେ ମୋ କରୁ ହରି,
ଯାଉଅଛି ଛାଡ଼ି ମା' ତତେ ପଶୁବଳେ ରାଜାର ଡରି ।
''ପୁଅ, ଝିଅ ପତ୍ନୀ ନେଇ କି ଆଦର ନାହିଁଛି ଦେଇ,
ତତେ, ମାଗୋ ନିଜର କରି, ତୋହ ବିନା ଜାଣିବ କେହି ?

''ଶସ୍ୟେ ତୁ ଦିଶିଲେ ଚାରୁ, ପ୍ରାଣେ ମୋର ଦୁଗ୍ଧ ଢାଳୁ,
ଫଗୁଣର ସ୍ୱର୍ଣ୍ଣ ଦେଇ ଉଦରର ଜ୍ୱଳନ୍ତୁ ତାରୁ ।
''ଛାଡ଼ି ତତେ ଯାଏ ବା ଯହିଁ, ନାହିଁ ପାରେ କାହିଁ ମା' ରହି,
ତୋ ପାଶକୁ ଫେରାଏ ପଦ, ରୂପ ତୋର ମନ ପୋଡ଼ଇ ।

''ଦାସୀ ହେଲୁ ତସ୍କରର, ନିଗାଡ଼ିବ ନିତ୍ୟ ଜଳ,
ସେ କି ଆଉ ଆଦର ଦେବ ? ନେବ ଖାଲି ଶସ୍ୟ-ଫଳ !
''ଏଇ କଥା ରଖିବୁ ମନେ, ଯଦି ଏଇ ଲକ୍ଷ ଜନେ
ମାନ ମୋର ରହିବ ମାତ, ଧର୍ମ ମା' ରହିବ କ୍ଷଣେ ।

''ଧର୍ମ ମା' ରହୁ ମହୀରେ, ରସ ତୋର ଅନ୍ୟାୟୀରେ
ନ ଦେବୁ ମା' – ଶୁଣୁ ତା ରାଜା ବସି ତାର ସ୍ୱର୍ଣ୍ଣ-ପିଢ଼େ ।''
କହି ଏହା ଛାଡ଼ିଲି ଦେଶ, ଧରି ଏହି ଭିକ୍ଷା-ବେଶ,
ନ ରଖି ମୋ ମାଆର ବୁକେ ସେନେହର ଭ୍ରାନ୍ତି ଲେଶ ।

ଭ୍ରମି ଭ୍ରମି ବର୍ଷେ ଗଲା, ଫଗୁଣକୁ ଫଗୁଣ ହେଲା,
ଜମି ପୁଣି ପଡ଼ିଲା ମନେ, ଦେଖିବାରେ ଚରଣ ଗଲା ।
ହାୟ ହାୟ ଫେରି ମୁଁ ଗ୍ରାମେ, ପୂର୍ଣ୍ଣିମା ପ୍ରଥମ ଯାମେ,
କି ଦେଖିଲି, କି ଦେଖିଲି ମୁଁ, କି ବ୍ୟଥା ମୁଁ ପାଇଲି ପ୍ରାଣେ ?

ବସୁଧା ମୋ ରାଜାର ସାରେ ନଇଁପଡ଼େ ଶସ୍ୟଭାରେ,
ଦୁଃଖ ଯା ପାଇଲି ବୁକେ, ସେକଥା ମୁଁ କହିବି କା'ରେ ?

ବସୁଧା ଏ ଗଣିକା ସତେ ! ଏ ଭାବନା ଲାଗିଲା ମତେ,
ନ ବିଚାରି ଏ ଦିଏ ଦେହ ଯେ ରଖିଲା ତାହାରି ହାତେ !
ରିକ୍ତତା ପୂରିଲା ମନେ, ଅପମାନ ଲକ୍ଷ ଜନେ
ହେବ ଭାବି ଫେରିଲି ପୁଣି, ବସୁଧାର ପୁତ୍ର ଜଣେ ।

[ଲେଖାକାଳ : ୧୯୩୦-୧୯୩୧]

# ରତି

ସନ୍ଧ୍ୟାର ଅନୁଚରୀ ନିଶୀଥର ସଙ୍ଗୀ
ପ୍ରତ୍ୟୁଷେ ରମଣୀର ମଦାଳସ ଭଙ୍ଗି;
କୁମାରୀ କଟାକ୍ଷ ମୁଁ, ବାଳିକାର ହାସ୍ୟ
ଚଞ୍ଚଳ-ଲାସ୍ୟ; ମୁହିଁ ଗୋ ଅନଙ୍ଗୀ । ୧ ।

ବିରହୀର କ୍ରନ୍ଦନ, ହୃଦୟର ବେଦନା,
ପରାଣର ଗୁରୁଗୁରୁ ବିଚଳିତ ଭାବନା,
ଅଭିସାରିକା ମୁଁ, ଭୀତ-କମ୍ପିତ-ଗମନା
ସଂଭୋଗ-ସ୍ୱପନ, ଲଜ୍ଜିତ-ବରଣା । ୨ ।

କୁଞ୍ଜ-ଛାୟାର ତଳେ ଚୁମ୍ବନ ବିତ୍ତ
ପ୍ରେମିକାର ଗଣ୍ଡରେ ବୁଭୁକ୍ଷୁ-ଚିତ୍ତ,
ଆଶ୍ଳେଷ ସୁଗଭୀର, କଂକଣ ବାଜଣା,
କବରୀର ଦୋଳଣା, ପରଶ ଉତ୍‌କ୍ଷିପ୍ତ । ୩ ।

ଲାଜ ଲାଜ ବଚନ ମୁଁ, ଅଭିମାନ ମୌନ,
ମୋ ପାଶରେ ବିଶ୍ୱର ସବୁହିଁ ଅଗୌଣ ।
ତରଳ ଜୀବନ ମୁହିଁ, ମୃତ୍ୟୁର ଛନ୍ଦ,
ଚିରକାଳ ଅନ୍ଧ, ଚିରକାଳ ମୌନ । ୪ ।

ଚିରକାଳ ମୌନ ମୁଁ ବାଗ୍ମୀର ଧାତ୍ରୀ,
ବିଧୁର ବିଶଦିତ ବସନ୍ତ-ରାତ୍ରି,
ଚୁମ୍ବନ ଅଧୀର, ମଞ୍ଜୀର ସ୍ୱନନ,
ଗୋପନୀୟ ବଚନ, ସୁପ୍ତିର ଯାତ୍ରୀ । ୫ ।

ସୁପ୍ତିର ଯାତ୍ରୀ ମୁଁ ସ୍ୱପ୍ନରେ ବିଳସେ
କାନ୍ତି ମୋ ଥୁଆ ଥାଏ ପରୀରାଣୀ ଉରସେ ।

ତାରାର ଚରଣେ ଲୁଟେ ମୋ ନୟନ ଚାହାଣି,
ହୃଦୟର କାହାଣୀ, ଭାସେ ମହା ନଭସେ । ୬ ।

ଭାସେ ମହା ନଭସେ ଗୋ ପ୍ରଭାତର ଶିଶିରେ
ପଲ୍ଲବ ପରେ ପରେ ଭାନୁକରରାଶିରେ,
ଭରତର ଗାନେ ଗାନେ ପୁଷ୍ପର ଗନ୍ଧେ,
ପ୍ରଣୟୀ-ମଧୁପ-ମୃଦୁ-ଗୁଞ୍ଜନ ଛନ୍ଦେ । ୭ ।

ପ୍ରଭାତେ ବଧୂର ହୃଦେ ବାସନାର ଅନ୍ତ,
ସେହି ମୋ ଗୋପନ ଦାନ, ଶିଥିଳ ସୀମନ୍ତ,
ବିହ୍ୱଳ ଉରଜର ବିଶୁଷ୍କ ମାଳିକା,
ବିଚ୍ୟୁତ କଳିକା, ମୋ ଦାନ ସମସ୍ତ । ୮ ।

ଅଭିସାର କୁଞ୍ଜ ମୁଁ, ଅଭିସାର-ଯାତ୍ରୀ,
ଚିର ଅଶାସିତ ମୁଁ ଯେ, ସକଳର ଶାସ୍ତ୍ରୀ ।
ବନ୍ଧ ମୁଁ ମାନେନା ଗୋ, ଶୃଙ୍ଖଳ ପ୍ରହାର
ଜାଣେନା ମୁଁ କାହାର, ମୁକ୍ତିର ଦାତ୍ରୀ । ୯ ।

ମୁକ୍ତିର ଦାତ୍ରୀ ମୁଁ ଯୁଗେ ଯୁଗେ ଜଗତେ,
ଫିଟାଇଛି କୋଟି କୋଟି ବଂଧନ ମରତେ ।
ଅବଳାର ବଳ ମୁହିଁ ଦୁର୍ବଳ-ଦୋସର,
ଶଙ୍କା ଯା' ପ୍ରାଣର, କାଟଇ ମୋ କରତେ । ୧୦ ।

ମୋର କରତର ଦାଢ଼ ମଲ୍ଲୀର ପାଖୁଡ଼ା
ଜଗତର ଫୁଲରାଶି ସୌରଭ-ଉଜୁଡ଼ା;
ରସଦ, ସୁଆଦ ତାର କର୍ତ୍ତନ-ଜ୍ୱାଳାଟି,
ବକ୍ଷର ମାଳାଟି ହୁଏ ଉର-ଉଛୁଡ଼ା । ୧୧ ।

ଅବତରି ଆସେ ମୁହିଁ ଜ୍ୟୋତ୍ସ୍ନାର ଶ୍ରେଣୀରେ
ଭୁବନ ମୁଁ ଭରିଦିଏ ନର୍ତ୍ତିତ ବେଣୀରେ,
ଶୀକର-ଶୀତଳ ବାଆ ଖେଳଇ ମୋ ସଙ୍ଗେ
ସୁରଭିତ ଅଙ୍ଗେ, ବିଧୂନିତ ବେଣୀରେ । ୧୨ ।

ତଟିନୀର ତଟେ ବସି ଅନ୍ଧାର ଗହଳେ
ବଂଶୀ ବଜାଏ; ନଦୀ କ୍ଷୁବ୍‌ଧିତ ଲହରେ,
ନାଚି ଉଠେ, ବିଶ୍ୱର କୋଟି କୋଟି ବକ୍ଷ
ମତେ କରି ଲକ୍ଷ୍ୟ, ସ୍ତବ୍‌ଧ ସେ ପ୍ରହରେ । ୧୩ ।

ସ୍ତବ୍ଧ ପ୍ରହରେ ସେହି ଲକ୍ଷର ଛାତି ଗୋ
ମୋ ମଧୁ ପରଶ ପାଇଁ ଅଲକ୍ଷ୍ୟେ ମାତି ଗୋ,
ପ୍ରେୟସୀ କପୋଳେ କରେ ପୁଷ୍ପର ସୃଷ୍ଟି
ସକାତର ଦୃଷ୍ଟି, – ଦୁଃଖହୀନ ରାତି ଗୋ । ୧୪ ।

ଦୁଃଖହୀନ ଦିନ ରାତି, ସଂଭୋଗ-ଫରୁଆ
ନାହିଁ ବିତରିଲେ ଭବେ ଚିତ୍ତ ମୋ ଗରୁଆ,
ସେଥିପାଇଁ ଆସେ ମୁହିଁ ଅବତରି ସ୍ୱର୍ଗୁ,
ଅନ୍ତରେ ଫଲ୍‌ଗୁ,
ବାହି ହିଆ-ମିଳନର ସ୍ରୋତ-ବେପରୁଆ । ୧୫ ।

ଅଜ୍ଞାତ କେଉଁ ଦେଶେ ଦୀନ କେଉଁ କୁଟୀର –
ତହିଁ ଚଳି ନିଶାଗମେ
ଦୁଇ ଦେହେ, ଦୁଇ ମନେ କାମ କରେ ନଟୀର,
କୃଷକ କୃଷକ-ବଧୂ ବକ୍ଷରେ ବିଳସେ,
ପ୍ରଣୟିତ ଅଳସେ,
ମୋ ଯାଦୁରେ ରାଜ-ବାସ ହୁଏ ସେହି କୁଟୀର । ୧୬ ।

ଏଣେ ପୁଣି ବାଦ୍‌ଶାହ – ଅନ୍ଦରମହଲେ
ଗୋଲାପ ଅତର ବାସେ, ନିକ୍‌କ୍ୱଣ ଚହଲେ
ଆସବ ଆରକ୍ତିମ ବେଗମ୍‌ର ଚକ୍ଷେ
ଲଗାଏ ଅଲକ୍ଷେ,
ତନ୍ଦ୍ରାହୀନତା ମୁଁ ଗୋ ବାନ୍ଦୀର ଗହଳେ । ୧୭ ।

ମାତା ନୁହେଁ, ନୁହେଁ ସ୍ୱସା, ନୁହେଁ ମୁଁ ବା ପ୍ରେୟସୀ
ବିଶ୍ୱର, –
ତଥାପି ମୁଁ ଚିର ପ୍ରୀତି-ଲାଳସୀ,
ଖୋଜିବୁଲେ ସବୁ ହୃଦେ ସେନେହର କଣିକା
କହ ମତେ ଗଣିକା, କହ ମତେ ମାନସୀ । ୧୮ ।

ସୁଖଦାନ ଚିରଦିନ ଲକ୍ଷ୍ୟ ମୋ ଜୀବନେ
ଶୋକ ମୋର ନାହିଁ କିଛି ପ୍ରକାଶେ ବା ଗୋପନେ,
ଯହିଁ ଯାଏ ତହିଁ ମୁହିଁ ଫେଇଦିଏ ପ୍ରାଣଟି
ମଦମୟ ଘ୍ରାଣଟି ଦେଇଯାଏ ସ୍ୱପନେ । ୧୯ ।

ଶିଳ୍ପୀର ଅଙ୍କନେ ରଞ୍ଜନ ତୁଳିକା,
କିଶୋର ପ୍ରଣୟୀ ପାଶେ ମୁଁ କିଶୋରୀ ବାଳିକା,

ଅନ୍ଧାର ଉପବନେ ଚୁମ୍ବନ ବିନ୍ତ
ବିକୋଳିତ ଚିର, ସଜଫୁଲ ମାଳିକା । ୨୦ ।

ମୁଗ୍ଧ କବିର ପାଶେ ମୋ ପରାଣ ଛନ୍ଦ,
ଛନ୍ଦେ ତାହାର ତେଣୁ ଭାସଇ ଆନନ୍ଦ;
ଜଗତର ଶୋଭା ତେଣୁ ଚିର ନବ ବୟସୀ
ରହସ୍ୟେ ପରଶି କରେ ତାରେ ଅନ୍ଧ । ୨୧ ।

ସଙ୍ଗୀତମୟୀ ମୁହିଁ ଇଙ୍ଗିତ-ଲୋଚନା
ଚଞ୍ଚଳ ଛଳଛଳ ମୃଦୁ-ମଧୁ-ବଚନା,
ଧରାଦିଏ ଆପେ ଆପେ ସବୁରି ବାଗୁରାରେ
ନିମିଷକେ ବାହାରେ ପୋଛି ଅନୁଶୋଚନା । ୨୨ ।

ଚପଳ ମୁଁ ସତ; ପୁଣି ସଂଯମ-ମହତ
ଆତ୍ମା ମୋ ସୁଖଭୋଗେ ସତ୍ୟରେ ସତତ ।
ଅପଚାର, ବ୍ୟଭିଚାର ମିଥ୍ୟାର ଛଳନା
ପ୍ରଣୟ-ପ୍ରତାରଣା
ଚିର ମୁଁ ମରତେ କରେ ପଦେ ମୋର ଆହତ । ୨୩ ।

ଶୂରତାର, ଧର୍ମର ସତ୍ୟର ପୂଜାରୀ
ଶୌର୍ଯ୍ୟ ଚରଣ ତଳେ ପ୍ରାଣ ଦିଏ ଅଜାଡ଼ି;
ଚୁମ୍ବନ ପାଇ ମୋର ଖଡ୍‌ଗର ଫଳକ
ଅଗ୍ନିର ଗୋଲକ
ମହାଦରେ ଘେନେ, ବୀର ବକ୍ଷରେ ପ୍ରସାରି । ୨୪ ।

ଆଦ୍ୟ ମୁଁ, ଅନ୍ତ ମୁଁ, ବିଶ୍ୱର ସ୍ଥିତି ଗୋ
ନିୟମ ମୁଁ ସୃଷ୍ଟିର, ଜୀବନର ରୀତି ଗୋ,
କୋଟି କୋଟି ବକ୍ଷର ନିଭୃତ ଭାବନା,
ଅଶ୍ରୁତ ସାଧନା, ଆତ୍ମାର ପ୍ରୀତି ଗୋ । ୨୫ ।

ପ୍ରୀତି ଲାଗି ସାଇତା ମୋ ଅମୃତ ମୁଖର,
ସବୁ ଉରେ ଯାଏ ବୁଣି ବୀଜ ମହା ସୁଖର,
ବିନିମୟ ଖାଲି ମୋର ପ୍ରାଣମୟ ପ୍ରଣୟ
ହେଉ ପଛେ ସେଥି ଲାଗି ଲାଞ୍ଛିତ, ଅଥୟ
ମାଳା ବହି ଦୁଃଖର । ୨୬ ।

ମାଳା ଖାଲି ପ୍ରାଣ ଚାହେ କବି ମଧୁ ପଦରୁ
ରସ-ଉଲ୍ଲୋଳ ଗୀତ ସକରୁଣ ହୃଦରୁ ।

କ୍ରନ୍ଦନମୟ ଭବେ ସୁଖୀ ସେହି ଜନଟି,
ତେଣୁ ମୋର ପ୍ରାଣଟି
ଅମୃତ ପାଏ କବି - କଂପିତ ପଦରୁ । ୨୭ ।

ଥାଅ କବି, ଥାଅ କବି, ସକରୁଣ ମୁଗ୍‌ଧ
ମନେରଖିଥିବଂ ମତେ ତବ ଗାନଲୁବ୍‌ଧ,
ଜଗତର ହୃଦ କଥା ନିଖିଳ ମରମ ବ୍ୟଥା
ତବ ଗୀତେ ବିକଶୁ, ତବ ମଧୁ ପରଶୁ,
ଥାଏ ମୁହିଁ ଚିରକାଳ ଯୌବନ-ଶୁଦ୍ଧ
ସୁଖ ଅବିରୁଦ୍ଧ, ମୁଗ୍‌ଧ, ଅକ୍ଷୁବ୍‌ଧ । ୨୮ ।

[ଲେଖାକାଳ - ୧୯୨୮]

# ପୁଷ୍ପର ସ୍ୱପ୍ନ

କବି କହେ, ଅୟି, କୁସୁମ-ସଜନୀ,
କାହା ପରଶେ,
ଲସିପଡ଼େ ଚାରୁ ଅଧରଟି ଗୁରୁ
ତରୁଣ ହସେ ?
କେଉଁ ଦେବତାର ଚୁମ୍ବନ ସେ ଗୋ
ପରଶେ ଯା'ର
କିଶୋର ଛାତିରେ ଅଂକିତ ହେଲା
ପ୍ରଣୟ-ଧାର ?
କାହିଁ ସେ ପ୍ରେମିକ ଯା' ହିଆ ତୁମରେ
କରିଛି ବାଇ
ପରସାଦ ତାର ସୌରଭେ, ରୂପେ
ଦେଇଛି ଯାଇ !
ଫୁଲ-ସଖା କହେ, ''ଶୁଣ କବି ତମେ,
ଶୁଣିବ କିଏ ?
ପ୍ରଥମ ଚୁମାଟି ଆଜି ମୋ ମରମ
ହଜାଇ ନିଏ ।
ସେନେହ ନରମ ପବନର କୋଳେ
ମଥାଟି ପାତି

ପାହିଲା ଶିଶିର-ଶୀତ ଆଖି ବୁଜି
ଶୋଉଁ ମୋ ରାତି ।
ଶୁଣ ସଖା, ଶେଷ ପହରେ ମୋହର
ସ୍ୱପନ କ୍ରୀଡ଼ା
କିପରି ଭାଜିଛି ଶୁଣ ମୋର ଚାରୁ
ତରୁଣୀ-ବ୍ରୀଡ଼ା ।
ଜ୍ୟୋତ୍ସ୍ନା ଆସିଲା ଟିପି ଟିପି ପଦ
ଦୁଆର ପାଶେ
କାନେ କାନେ ମୋର କହିଲା ସୁହାଗେ
''ତୋହରି ଆଶେ,
ଲକ୍ଷ ଯୁଗରୁ ବକ୍ଷ ଭିତରେ
ସାଇତି ପ୍ରୀତି
ମହା ପ୍ରଣୟୀ ସେ ମୋ'ଦେଇ ତତେ ରେ
ଖୋଜଇ ନିତି ।
ସାରା ରାତି ଖୋଜି ସନ୍ଧାନ ଆଜି
ପାଇଛି ମୁହିଁ,
ଅ-ଜଣା ତୋହରେ ଜଣା କଲା
ଯଉବନ ଗୋ ଛୁଇଁ ।
ଚକିତେ ତୋହର କିଶୋର ଚିବୁକ
ଉଠିଛି ପୂରି,
ତୋହର ଶୋଭାରେ ଧରଣୀରେ ଆଜି
ପଡ଼ିଛି ହୁରି ।
ପ୍ରେମିକ ତୋହରି ଲୁବ୍ଧ ନୟନେ
ତେଣୁ ଗୋ ଆଜି,
କହିଛଂତି ମତେ ନେବାକୁ ତୋହରେ
ଆଦରେ ସାଜି !
ଆସ ବେଗେ ।'' ବୋଲି, କୋଳେ ଧରି ମତେ
ଚାଳିଲା ପାଦ,
ଶୁଭୁଥିଲା ଖାଲି ତରତର ତାର
ବଳୟ ନାଦ ।
ଲାଜେ ଲାଜେ ମୁଁ ଗୋ ମଥା ପୋତି ତାର
ବସନ କୋଣେ

ଧାଉଥିଲି ସେହି ମହା ପ୍ରେମିକର
ମହା ଚରଣେ ।
ନିମିଷେ ଦେଖିଲି ମୋହରେ କାହାର
କୋମଳ ଉରେ
ଶାନ୍ତ ପୁରୁଷ ଆସୀନ, ନୀଳିମା-
ମୟ ସେ ପୁରେ ।
କପୋଳେ ତାହାର ଚନ୍ଦ୍ର ଢଳଇ
ତରଳ ହାସେ,
ଅୟୁତ ତାରକା ଯୁକ୍ତ ତାହାର
ବକ୍ଷ ପାଶେ ।
ତମ-ତସ୍କର କୋଟି-ଭାସ୍କର
ଅଙ୍ଗେ ଢଳେ,
ତେବେହେଁ ଶାନ୍ତ ଅତି ପ୍ରଶାନ୍ତ-
ଅଧର ତଳେ ।
ବିଶ୍ୱଯାକର ପ୍ରଣୟ ବିଧୁର
ହାସ୍ୟଧାରା,
ଝରିପଡ଼େ ତାର ଉଦାର ଅଂକେ
ଆତ୍ମ-ହରା ।
ମୋହରେ ଆଦରେ କରଯୁଗେ ଘେନି
ବକ୍ଷେ ଥୋଇ,
ବକ୍ଷ ମୋହର ଲକ୍ଷ ଯୁଗର
ଲୋତକେ ଧୋଇ,
ବୋଇଲେ 'ମାନସି, ମନେପଡ଼ିଲା କି ?'
ଦେଲେ ଗୋ ଚୁମା,
ସହସା ଦେଖିଲି ସରିଯାଇଛି ମୋ
ପ୍ରଣୟ-ଘୁମା ।
ଫିଟିଅଛି ମୋର ପ୍ରଣୟ-ପକ୍ଷ୍ମ
ଅରୁଣ ରାଗେ
ପତିତା ପରି ମୁଁ ଲାଜ କଲି ବଡ଼
ଧରଣୀ ଆଗେ ।
ସ୍ମରଣ ରଭସେ, ଥରିଉଠେ ଦେହ,
ଲୋତକ ଖସେ,

ଲସିପଡ଼େ ଚାରୁ ଅଧରଟି ଗୁରୁ
ତରୁଣ ହସେ ।''
[ଲେଖାକାଳ - ୧୯୨୭]

## ପଲ୍ଲୀ-ସ୍ନାନଘାଟ

ମାଠିଆ ରଖି ଜେମା
ଚାହିଁ, କହିଲା – ''ଏ ମା' ! ଆଗେ ହାଜର
କି ଲାଭ ବାଜି ରଖି –
ଜାଣେ ମୁଁ, ରାତି ସଖୀ ପାଳ ଜାଗର !''
ହସିଲେ ଦୁଇ ନାରୀ
ମୁଖୁ ମୁକୁତା ଢାଳି ନୋଇଁ ବଦନ,
ପ୍ରଭାତ ସମୀରଣେ
ମିଶିଲା ବେନି ଜନେ ରସ ବଚନ ।
ଗ୍ରାମର ସ୍ନାନ-ଘାଟ,
ଅଦୂରେ ଗ୍ରାମ-ବାଟ ଯାଇଛି ଚାଲି,
ଅନ୍ଧାର ଯାଇ ନାହିଁ,
ତପନ ଉଠି ନାହିଁ ତୂଳିକା ଚାଳି ।
ପାହାଚ ଗଡ଼ି ତଳେ
ମିଶିଛି ଯାଇ ଜଳେ ଶିଉଳି ଶିରେ,
ତୁଳସୀ ପୀଠ ଗୋଟି
ପ୍ରଣତି ଲଭି କୋଟି ରହିଛି ତୀରେ,
ପୋଖରୀ ଆର ତୀରେ
ରହିଛି ଉଭା ଧୀରେ ବିରାଟ ବର,
ଦୁଇଟି ତାର ଡାଳ
କରିଛି ଆଡୁଆଳ ସେ ତୋଠ-ଜଳ ।
ରଜନୀ ପାହି ଆସେ
ପୂରୁବେ ଉଷା ଭାସେ, ଉଠିଲେ ପକ୍ଷୀ,
ଅଳସେ ଡେଣା ଝାଡ଼ି
ଉଠିଲେ ଚକି ମାରି ତଳକୁ ଲକ୍ଷି ।
ଗଭୀର କୋଳାହଳେ
ଉଡ଼ିଲେ ଦଳେ ଦଳେ ଆକାଶ ତଳେ,

ଢେମା, ବଦନ ଧୋଉଁ
କହିଲା, "ନୂଆବୋହୂ ଚାହଁ ଉପରେ !"
ନୟନ କରି ଥିର
ଦେଖେ ସେ ଶଙ୍ଖ-ଚିଲ ଯାଉଛି ଭାସି,
କହିଲା ଢେମା, "ଆହା,
ମିଳିବ ଆଜି ଯାହା ଥିଲି ମନାସି !"
କହିଲେ ନବବଧୂ
ବଚନେ ଢାଳି ମଧୁ "ଦେଖିଛ ଆଗେ,
ତମରି ପୂରୁ ବାସ,
ମିଳିବେ, ଅଛି ଆଶ ଯା' ଅନୁରାଗେ !"
ନ ସରୁଁ ତାଙ୍କ କଥା
ଆସିଲେ ନୋଇଁ ମଥା ଦଳକୁ ଦଳ,
ଗ୍ରାମର ଯେତେ ବଧୂ,
ଉଠଇ ପ୍ରତି ପଦୁ ଅଂକିର ସ୍ୱର,
ମାଠିଆ ରଖି ତୀରେ
ମାଜିଲେ କାଚ ଧୀରେ କେଉଁ ସୁନ୍ଦରୀ,
କେ ଅବା ହରିଦ୍ରାରେ
ଲାଗିଲେ ମାଜିବାରେ ଯତନ କରି ।
ଲାଗିଲା ଫୁସ୍‌ଫାସ୍
ବଚନ, ପରିହାସ, ନ ଶୁଣେ କେହି,
ସଭିଏଁ କିନ୍ତୁ କଥା
କହନ୍ତି ଭୂରୁଲତା ନୂଆଇଁ ଦେଇ ।
ପ୍ରବୀଣା କେହୁ କହେ
ସଖୀରେ ଡାକି, "ହଏ, ମଝିଆଁ ବୋହୂ,
ଦେଇ ଯେ ଥିଲ କାଲି
ଚାଖିଲି ବିରି-ଡାଲି, ଖାଲି ପିଠୋଉ !"
ମଝିଆଁ ବୋହୂ ମାନ
ରଖି ନିଜର, ସାନ ବୋହୂକୁ ଦୋଷୀ
କରି କହଇ, "ଆହା,
ଖାଇ ତ ସବୁ ତାହା ହୋଇଲେ ତୋଷି !
ସାନ ବୋହୂଟା ଛି ଛି
ଜାଣୁନି ପରା କିଛି ଦେଲା ପଠାଇ,

ପିଠୋଉ ଗିନାଟାରେ,
ଘରେ ମୋ ମାଳେ ମାଳେ ବାସନ ଥାଇ !''
ଆରେକ କେହୁ ଭାଷେ –
''ଆଉ ତ ନାହିଁ ଆସେ ପଧାନ-ବୋହୂ
ଆମ ସାଥିକି'' –
ଆନ ଥାଇ କହଇ ''କାନ ବୁଜି କି ଥାଉ ?''
ବୁଢ଼ୀ କେ ଥାଇ କହେ,
''ଅଣ୍ଡିରା ପୁଅ ରହେ ନାହିଁ ତ ଘରେ,
ରେଂଗାମେ ଗଲା କାହିଁ,
ଏ ଭୂଆସୁଣୀ ଥାଇ କହ କି କରେ ?''
ଜଣକୁ ଜଣ ଜଳେ
ପଶିଲେ ଏବେ, ଥରେ ଶୀତେ ଶରୀର,
ଥରଇ ବାହୁଲତା
ଥରଇ କହୁଁ କଥା ଅଧରେ ଗିର ।
ଏପରି କେତେ କଥା,
ଲାଗିଲା ଘନଘଟା ଶୁଣୁଛି କିଏ ?
ଯିବାର ବେଳ ହେଉଁ
କ୍ରମେ କମାଇଁ ଢେଉ ତୁନି ସଭିଏଁ ।
କେ ଜଳୁ ଉଠି କେଶ
ଚିପୁଡ଼ି ସାଜେ ବେଶ, କେ ଜଳେ ପଶେ,
କେ ଦେହୁ କାଢ଼ି ବାସ
ବସିଛି, ପରିହାସ କରୁଛି ରସେ ।
ଗୋଟିଏ ଛୋଟ ବୋହୂ
ପାଣିକି ଯାଉ ଯାଉ ଖସିଲା ପାଦ,
ନଣନ୍ଦ କହେ ତାର –
ଅଣ୍ଡିରାଚଣ୍ଡୀଟାର ନାହିଁଛି ଲାଜ !
ଆଲୁଅ ହୋଇ ଆସେ,
ଚିପୁଡ଼ି ଓଦା ବାସେ ଜଣକୁ ଜଣ,
ଫେରନ୍ତି ଏବେ ଗୋରୀ
କାଖରେ ଗରା ଟୋକି ନୋଇଁ ବଦନ ।
ଓଦା ସେ ବାସୁ ପଡ଼େ

ସଲିଳ ପଥ ପରେ ଝଲକେ ଗରା,
ଭାରେ ଶରୀର ନତ
ପଦ ଝୁଣ୍ଟଇ ପଥ ବାଜଇ ବଙ୍କା ।
ନୀରବ ଏବେ ବାଟ,
କ୍ରମେ ଶୂନ୍ୟ ସେ ଘାଟ ରହିଲା ପଡ଼ି,
ପୋଖରୀ ନୀଳ ଜଳେ
ଛଡ଼ା ହଳଦୀ ଥରେ ଆଶିଷ ପରି ।

[ଲେଖାକାଳ - ୧୯୨୯-୩୦]

## ମା' ଓଡ଼ିଶା

କବିଭୂମି, ଶିଳ୍ପଧାତ୍ରୀ ତୁହିଟି ମା' ! ବିଶ୍ୱେ ଗରବିଣୀ
ବୀରମାତା ଉତ୍କଳ-ଜନନୀ ।
ଆଦିମ ତାମସ ଗର୍ଭୁଁ ଯେବେ ଗୋ ମା' ବିକାଶ ତୋହରି
ପ୍ରଥମ ଚୁମ୍ବନ-ବ୍ରୀଡ଼ା ରବି ଦେଲା ତୋ ଅଙ୍ଗରେ ଭରି
ଆସିଲା ବସନ୍ତ ତହୁଁ କରିବାକୁ ତୋ ବକ୍ଷରେ ଲୀଳା
ସାଜିଲା ପ୍ରକୃତି ବସିକରି ତୋତେ ଏମନ୍ତ ଛବିଳା
ପାତାଳ ଫୁଟାଇ ତହୁଁ ବହିଲେ ଏ ନଦୀ ଶତ ଶତ
ବ୍ୟଗ୍ର ଅବିରତ ! ୧ ।

ଜନ୍ମିଲେ ପବିତ୍ର କୋଳୁ କାଳେ ତୋର ସନ୍ତାନ-ସନ୍ତତି
(ସନ୍ଧ୍ୟାଗମେ ଫୁଟିଉଠେ ନଭବକ୍ଷେ ତାରକା ଯେମତି
ନିଜ ତେଜେ ଧୌତ କରି ଜନନୀର ସୁନୀଳ ଅଞ୍ଚଳ)
ବିଶ୍ୱକର୍ଣ୍ଣେ ଶୁଣାଇଲେ ତୋର ଗାଥା ମଧୁର କୋମଳ
ଧମନୀର ରକ୍ତ ଦେଇ ଆଣିଲେ ମା' ! ତୋର ମାନ କିଣି
ଧନ୍ୟ ତୁ ମାନିନି ! ୨ ।

ଅଳକା ବରଜି ସ୍ନେହେ ଆସିଲେ ମା' ! ଦେବ ଧନପତି
ତୋର କୋଳେ; ଭରିଦେଲେ ଘରେ ଘରେ ଅତୁଳ ସମ୍ପତ୍ତି,
ତୋ' କରକମଳେ ବିଶ୍ୱ ଚାହିଁଲା ମା' ! ସତୃଷ୍ଣ ନୟନେ,
ଉଦାରତା ଭରି ହୃଦେ କି ଇଙ୍ଗିତ ଦେଲୁ ତୁ ସନ୍ତାନେ –
ପାରାବାର ପରପାରେ – ଦିଗ୍‌ବିଦିଗେ ବିଞ୍ଚିଲେ ସେ ଧନ,
ତୋହରି ସନ୍ତାନ ! ୩ ।

ସହସ୍ର ବହିତ୍ର ପୁଣି ଶୁକ୍ଳ କରି ବାରିଧି ଉରସେ
ଚଳିଲା, – ଦୋହଲି ମନ୍ଦେ ପବମାନ ମଧୁର ପରଶେ ।
ଦମ୍ଭଭରେ, ସିନ୍ଧୁପାରେ ଖୋଜିବାକୁ ଅଜ୍ଞାତ ବିଦେଶ,
ଦେବାକୁ ଜଗତ-ଜନେ ଜଗତର ଅଜ୍ଞାତ ସନ୍ଦେଶ
ସ୍ଥାପିବାକୁ ତୋହରି ମା’ ଯୁଗ-ଯୁଗ-ବ୍ୟାପିନୀ କୀରତି
ଅୟି ଭାଗ୍ୟବତି ! ୪ ।

ଅମୃତ କ୍ଷରେ ତୋ ବକ୍ଷୁ, ସେ ଅମୃତ ଖୁଆଇଣ ନିତି
ଗଢ଼ିଲୁ ସନ୍ତାନେ ତୋର ମହାବୀର, ହୃଦେ ନାହିଁ ଭୀତି ।
ଢାଲ ତରବାରି ଧରି ଉଠିଲା ସେ ଦିଗ୍‌ବିଜୟ ଆଶେ
ଭ୍ରୂଭଙ୍ଗେ ଲୁଠିଲା ଶତ ନୃପଶିର ତୋ’ ଚରଣ ପାଶେ,
ଗଙ୍ଗା, କୃଷ୍ଣା, ଗୋଦାବରୀ ସେବିଲେ ତୋ’ ଚରଣ ପୁଲକେ
ସେ ମହା ପଲକେ । ୫ ।

କ୍ଷତ୍ରସୀମନ୍ତିନୀ ତୋର ପ୍ରାଣକାନ୍ତେ ବରମାଲ୍ୟ ଦେଇ
ସଂଗ୍ରାମର ଭୀମଭୂମେ ବୀରବେଶେ ଦେଲେକ ପଠାଇ ।
ବାର୍ତ୍ତାହର ମୁଖେ ଶୁଣି ପ୍ରାଣପତି ସ୍ୱାଧୀନ-ମରଣ
ଜ୍ୱାଳିଲେ ଭୀଷଣ ଚିତା, କରିଲେ ବା କୃପାଣଧାରଣ ।
ତୋହରି ପାଇଁକି ମାତ, ନାରୀ କଲା ଅଦ୍ଭୁତ ସାଧନା
ସ୍ୱାଧୀନ ଜୀବନା ! ୬ ।

ନଦନଦୀ ସିନ୍ଧୁ ତଟେ ଶତ ଶତ ଶୁକ୍ଳ ସୌଧମୟୀ –
ନଗରୀ ଉଠିଲା ଗର୍ବେ ତୋର ଅଙ୍ଗ ସୌନ୍ଦର୍ଯ୍ୟ ବଢ଼ାଇ ।
ଦେଉଳ ଟେକିଲା ମଥା ଚାରୁଶିଳ୍ପେ ହୋଇଣ ଭୂଷିତ
ବ୍ୟୋମପଥୁ ଦେଖି ଯାହା ଦେବଶିଳ୍ପୀ ହୁଅନ୍ତି ଲଜ୍ଜିତ ।
ଶ୍ୟାମଳବସନା ତୁ ମା’ ! ଏ ଭୂଷଣେ ହୋଇଣ ଭୂଷିତା;
ବିଶ୍ୱେ ସୁପୂଜିତା ! ୭ ।

ପ୍ରଜାଗଣେ ଦେବାକୁ ମା’ ! ସ୍ୱରଗର ଅମୃତ ସନ୍ଦେଶ
ରାଜା ତୋର ଧରିଅଛି ଦରିଦ୍ରର, ସନ୍ନ୍ୟାସୀର ବେଶ,
ନୀଳାଚଳ ପୁଣ୍ୟସ୍ଥଳେ; ମନୁ ତେଜି ଗର୍ବ ଅହଙ୍କାର
ସହସ୍ର ଜୀବନ ସଙ୍ଗେ ମିଶାଇଛି ତା ହୃଦ ଉଦାର
ଚଣ୍ଡାଳର ବେଶେ ବିଶ୍ୱେ ଶିଖାଇଛି ଭାବ ଗରୀୟାନ,
ସମସ୍ତେ ସମାନ । ୮ ।

ପ୍ରେମମୟୀ ତୁ ଜନନି ! ସରସ୍ୱତୀ-ପବିତ୍ର ଧରଣୀ
ବୈଷ୍ଣବ, ଶଇବ, ଶାକ୍ତ ସଭିଙ୍କର ତତ୍ତ୍ୱରତ୍ନ ଖଣି ।
ବୌଦ୍ଧର ଅହିଂସାବାଣୀ ତୋର କୋଳେ ଅତି ପରିଚିତ,
ଜୈନର ଦୟାର୍ଦ୍ରଭାବ ତୋର ବକ୍ଷେ ଚିର ବିକଶିତ,
କବିର ମଧୁର ମୁଖେ ତୋର ନାମ ସଦା ଉଚ୍ଚାରିତ,
ସୁଯଶ ପିହିତ । ୯ ।

ଏତେ ଯଶ ଏତେ ମାନ ବିଧାତା କି ସହନ୍ତା ମା' କହ ?
ଫେରାଇଣ ନେତ୍ର ତାର, ତୋ ନୟନୁ ବୁହାଉଛି ଲୁହ –
ଯାଇଛି ନଗର, ଶିଳ୍ପ, ଯାଇଛି ମା' ରାଜ୍ୟଧନ ସବୁ
ନ ଫେରେ ସନ୍ତାନ ତୋର ଖଡ୍‌ଗ ଧରି ଆଉ ମା' ଆହବୁ ।
ଭାଗ୍ୟଦୋଷୁ ସିଂହଶିଶୁ ହୋଇଛନ୍ତି ଖରେ ପରିଣତ,
ଅତି ଅନୁନ୍ନତ ! ୧୦ ।

ଛିନ୍ନଭିନ୍ନ ଅଙ୍ଗ ତୋର ବିଦେଶୀର ନିର୍ମ୍ମମ ଶାସନେ
ସନ୍ତାନ ମରଇ ନିତି ଦାରିଦ୍ର୍ୟର କ୍ରୂର ନିପୀଡ଼ନେ
ବିଧାତାର ବାମନେତ୍ର ପଡ଼ିଛି ମା' ! କପାଳେ ତୋହରି,
ନିଅ ଆଉ କେତେ ଦିନ ଭଗବାନ୍ ଆବେଶ ଏପରି,
ଭାବେ ମନେ, ପାହିଲାଣି ତୋର ଦୁଃଖ-ତମିସ୍ରା-ସଂହତି,
ଅଧମ ସନ୍ତତି ! ୧୧ ।

[ ଲେଖାକାଳ ୧୯୨୫-୨୬]

## ଭାରତ-ଗୀତି

(ଗୁରୁ-ଲଘୁ ନିୟମ)

ବହୁଯୁଗ ନିଦ୍ରିତ ଭାରତ ଜାଗ୍ରତ, ଜଡ଼ତା-ନିଶି ଅବସାନେ
କୋଟି କୋଟି ହୃଦ-ମୁକ୍ତି-ପିପାସିତ, ନାହିଁ ବିପଦ ଭୟ ମନେ ।
ଜୟ ଜନନି, ଜୟ ଜୟ ହେ
ଜୟ ଶୁଭ-ବାସର ଜୟ ହେ
ଜୟ ଜୟ, ଜୟ ଜୟ, ଜୟ ହେ ।।

ଉତ୍କଳ, ସିନ୍ଧୁ, ସଉରାଷ୍ଟ୍ର, ଅଯୋଧ୍ୟା, କେରଳ, ଦ୍ରାବିଡ଼, ଆନ୍ଧ୍ର,
ବଙ୍ଗ, ଅଙ୍ଗ, ପଞ୍ଜାବ, ମରାଠା – କଣ୍ଠ ଉଠଇ ଧ୍ୱନି ମନ୍ଦ୍ର ।

ମନ୍ଦ୍ରିତ ଗଗନ-ବିତାନ
ସ୍ପନ୍ଦିତ ଭାରତ-ପ୍ରାଣ
ମୁକ୍ତି-ପରଶ ଚିର-ସୁପ୍ତ ଅୟୁତ ହୃଦେ, ପରମ ବରାଭୟ ଆଣେ । ୧ ।

ବହୁଯୁଗ ବନ୍ଧନ କରୁ ଭଂଜନ, ହୁଏ ଅପଗତ ହୃଦୁ ଅବସାଦ
ତିମିର ପଳାୟିତ, ଆଲୋକିତ ପଥ, ପ୍ରାଣୁ ତୁଟଇ ପରମାଦ ।
ଦୃପ୍ତ ବିଜୟ ଅଭିସାରେ
କୋଟି ଚରଣ ଖର ଚାଲେ
ବିଘ୍ନ ବିପଦ ଦଳି, ମୃତ୍ୟୁ-କଷଣ ବରି, ଜୟ-ପାଗଳ ମନପ୍ରାଣେ । ୨ ।

ହିନ୍ଦୁ, ଖିରସ୍ତାନ, ପାର୍ସି, ବୌଦ୍ଧ, ଜିନ, ବୈଦିକ, ଶିଖ, ଇସଲାମ,
କର କର-ମିଳନ ପରସ୍ପର ଗାଇଣ, 'ଜନନୀ ଭାରତ' ନାମ ।
କୋଟି କୋଟି ସ୍ୱର ସଂଘ
କରିବ ଦେବ-ତପ ଭଂଗ,
ବିଶ୍ୱ ଥରିବ, ପରିପନ୍ଥୀ ପରାଜିତ ଦୂର ଚଳିବ ଅପମାନେ । ୩ ।

ନାରାୟଣ, ନର ଅଂଗ ବିଭାସଇ ପୀଡ଼ନ କେ କର ତା'ରେ ?
ଦୀପ୍ତ-ମୁକୁଟ ସେ, ସହି ଚିର ଅଂଗେ, ଅଗଣିତ ଶର କରବାଳେ ।
ଦେବ-ଭୂମି ଖଳ ତନ୍ତ୍ରେ
ଶାସିବ କେ ପଶୁ-ମନ୍ତ୍ରେ ?
ବିକଶିବ ପାପରୁ ମୁକ୍ତି-ତପନ, କରି ଦୀପ୍ତ ଅଖିଳ ଭବ-ଧାମେ ।

ନଗ-ଅଧିରାଜର ଶିଖର ବିକମ୍ପିବ, ବିନ୍ଧ୍ୟ ଥରିବ ଗରୁ ତାପେ,
ସିନ୍ଧୁ ବିଧୂନିବ, ମାଟି ଟଳିବ ତଳୁ କାମିନୀ କରୁଣ-ବିଳାପେ ।
ଦିଗ ଦିଗ ବେପଥୁ ଭାବେ
ପୂରିବ ଭୀଷଣ ରାବେ
ଶେଷେ ହେବ ଜୟ ସତ୍ୟର, ମାନବ ଚୁରି ଖଳ ଦାନବ ବାଣେ ।

ଆସ ସକଳ କୁଳ-ପାବନ ସନ୍ତତି, ଯଜ୍ଞେ ଦିଅ ହବି-ଧାର,
ପୁଣ୍ୟ ଜନମ କର ମାତୃଚରଣ ଛୁଇଁ, ଧନ୍ୟ କରହ ପରିବାର ।
କୁଣ୍ଠିତ କୃପଣ ପରାଣେ
ସ୍ଫୀତ କରହ ଅଭିମାନେ
ଭାରତ ବହୁ ତବ ନିତ୍ୟ କରମ ଭରି 'ସ୍ୱପ୍ନ, ଉଜାଗର, ଧ୍ୟାନେ ।*

---

* ଲେଖାକାଳ ସମ୍ଭବତଃ ୧୯୩୦-୩୧ । ତତ୍‌କାଳୀନ ଜାତୀୟ ଲବଣସଂଗ୍ରାମକୁ ଲକ୍ଷ୍ୟକରି ଲେଖାଯାଇଥିଲା । ଏ କବିତାଟି ପରେ ଛଦ୍ମ ନାମରେ (ଦୂର ଅତିଥି) ୧୯୩୩-୩୪ ସାଲର 'ସମାଜ'ର କୌଣସି ସଂଖ୍ୟାରେ ପ୍ରକାଶପାଇଥିଲା । ଲେଖକ ସେତେବେଳେ ନିମାପଡ଼ା ହାଇସ୍କୁଲରେ ଶିକ୍ଷକ ।

# ନବବଧୂର ବିରହ

ବାଳିକା ବଧୂ ଶଶୁରଘରେ ରହି
ଗୋଟିଏ ବରଷ
ଗାଆଁକୁ ଗଲେ, ଫେରିବ ପରା ପୁଣି
ହୋଇଲେ ବୟସ ।
ତରୁଣ ବର ବରଷଯାକ ଆହା
କନକ ପିତୁଳି –
ଗୁରୁ ବିରହେ ରାତ୍ରି ଦିନ ଧରି
ହୋଇଲେ ଆକୁଳି ।
ବଧୂ ସେ ଦିନେ ଆସିଲେ ଫେରି ପୁଣି,
କିଶୋରୀ, ନାୟିକା,
ରସିକ ଖାଲି ଚାହିଁ ଥାଆଁତି, ଯେବେ
ହେବ ପ୍ରାଣ ବିକା ।
ଗଭୀର ରାତେ ମିଳନ ଯେବେ ହେଲା
ତରୁଣ ପଚାରେ,
''କହିଲ ପ୍ରିୟେ ! ମନେ କି ପଡୁଥିଲି
ଅକାଳେ ସକାଳେ ?
ଚନ୍ଦ୍ର-ରାତି ମୋହରି ଲାଗି କେବେ
ହେଲା କି ଅସର,
ଚୈତ୍ର ମାସ – ମଳୟ-ବାୟୁ-ସେକ
ହେଲାନି ବିଷ-ର ?
ବରଷାଧାରା ଗଭୀର ରାତ୍ରେ ଯେବେ
ପଡ଼େ ଝରି ଝରି,
ପରାଣ ତବ ଭାବିଥିଲା କି ମତେ
ବେପଥୁରେ ଥରି ?
ଜ୍ୟେଷ୍ଠ ତାପେ ଭବନ-ଉପବନେ
ବସୁଁ ଗଛ ତଳେ,
ସଂଗୀ ଖୋଜୁଁ ପରାଣ ତଳେ, ହାୟ
ମୁଁ କି ମନେପଡ଼େ ?

ବିରହ-ତାପେ କାନ୍ଦୁଥିଲ କେବେ,
ପୋଛେ ସଖୀ ଲୁହ,
କେସନେ ସଖୀ ଭୁଂଜିଲ ବିରହ –
କହ ଖୋଲି କହ ।
ତମରି ଲାଗି ବିରହ ଯାହା କଲା
କି କହିବି ସଖି,
ପରାଣ ମୋର କାଟିଲା ଟିକି ଟିକି
ମାର ଶର ହାଁକି ।
ପୁରୁଷ ବୋଲି କଠିନ ଆଖି ତଳେ
ନ ଆସେ ଲୋତକ
କିନ୍ତୁ ପ୍ରାଣ ତୋ ପାଇଁ ହେଉଥିଲା
ସଦା ଦକଦକ ।
ଶୋଇଲା ବେଳେ ତୁମରି କଥା ଭାବେ
ବଡ଼ ଗୋ ସେ ଦୁଃଖ,
ଦିବସଯାକ କର୍ମ ଅନ୍ତରାଳେ
ସୁମରେ ତୋ ମୁଖ ।
ସେଇପରିକି ପଡ଼ିଲି ମନେ ମୁହିଁ
କଟିଛି ବିରହ ?
କହନା ସଖି, ଶୁଣିବି ଇଚ୍ଛା ବଡ଼
ହୃଦ ଖୋଲି କହ ।''
କିଶୋରୀ ବଧୂ ଓଢ଼ଣା ଦେଲା ଟାଣି
ତଳକୁ ଆହୁରି,
ବଦନ ଗୋଟି ନୁଆଇଁ ଛାତି ପରେ
ବସିଲା ସାଁକୁଡ଼ି ।
କହିଲା ନାହିଁ ବିରହ-ବାଧା କଥା
ଡାକିଲେ ରସିକ,
''ଏପରି କିପାଁ ରହିଲ ତୁନି ହୋଇ,
କହନା ଠିକ ଠିକ ।
ମୋହଠାରେ କି ସରମ ଚଳେ ପ୍ରିୟେ
ଏକା ପ୍ରାଣ ପରା –''
କହି ରସିକ ହଲାଇଦେଲେ ଟିକେ
ପ୍ରିୟା ମଥା ଝରା ।

ବହୁତ ବେଳେ ଭାଷିଲେ ନବବଧୂ
"କି କହିବି ନାଥ,
ତୁମର କଥା ବୁଝି ତ ନାହିଁ ପାରେ
ପଢ଼ିନି ମୁଁ ପାଠ।"
ରସିକ ତହୁଁ ବୁଝାଇଦେଲେ ପୁଣି,
"ବୁଝି କି ନ ପାର ?
ଏଇ ବିରହ ! – ଭୋଗେ ଯା ନାରୀ, ପ୍ରିୟ
ନ ଥିଲେ ତାହାର !"
କିଶୋରୀ ବଧୂ କହିଲେ, "ଆହା, ନାଥ
କିଛି ତ ନାହିଁ ଭୋଗି,
ଯଦିବା ବାପ- ଘରରେ ଏଇ ଥର
ପଡ଼ିଲେ ବହୁ ରୋଗୀ।"
"ନାହିଁ ହେ ନାହିଁ ... ରୋଗ ସେ ନୁହେଁ, - ତେବେ,
ବଳଇ ରୋଗରୁ,
ମଦନ ବୀର ଛୁଟାଇ ଶର ତାର
କାଟଇ ଭିତରୁ।
ମୋଓଟ୍ କଥା ... କହନା ସଖି ଏବେ
ମନେ କି ପଡୁଥିଲି –"
କହିଲେ ବଧୂ, "ସମୟ ନାହିଁ ଥାଏ
କାମ କରି, ଖେଳି।"
ଚମକିପଡ଼ି କହଇ ସେ ତରୁଣ,
"ଖେଳିଲ ବିରହେ !
ଏପରି କଥା ଲେଖା ତ ନାହିଁ କାହିଁ,
ପାଠ ନାହିଁ କହେ !
ବିରହେ ସିନା କାନ୍ଦିବାର ସଖି
ହୃଦୟ-ବ୍ୟଥାରେ !
କାନ୍ଦିନା କି ମୋ ଲାଗି କେବେ ହାତ
ଦେଇଣ ମଥାରେ ?"
"ଏ କିବା କଥା" କହିଲେ ନବ ନାରୀ
"ମଣିଷ କି କାନ୍ଦେ,
କାରଣ ବିନା ? ମନ୍ଦ ଭାଗ୍ୟ-ଯଦି
ନାହିଁ ଖସେ କାନ୍ଧେ ?"

କହିବା ଆଉ ବେଶି ସେ ରସିକ
ନ ଭାବିଲେ ଭଲ,
କନକଗଡ଼ା ବଦନଟିରେ ଖାଲି
ଚାହିଁଲେ ବଲବଲ ।*

# ଅର୍ଜୁନ ଓ ଉର୍ବଶୀ

## ଅର୍ଜୁନ

ଅନଙ୍ଗ ଯା ସୁକୁଞ୍ଚିତ କୁନ୍ତଳ ପ୍ରାନ୍ତରେ
ବିଜୟ-ଶଙ୍କିତ କରେ ଗୁଞ୍ଜି ଗୁଞ୍ଜି ଦିଏ,
ସୁମେରୁର ସ୍ୱର୍ଣ୍ଣପୁଷ୍ପରାଶି, ତୁମେ ସେହି
ଅନନ୍ତଯୌବନବତୀ ଉର୍ବଶୀ ସୁନ୍ଦରୀ ?
ସେହି ତୁମେ ହୃଦେ ଯାର ବାଜିଲେ ବେଦନା
କାମନାର, – ଜଳିଉଠେ ଜଗତର ହିୟା
ତିଳ ତିଳ କରି, କ୍ଷୁବ୍‌ଧେ କୁମାର-କୁମାରୀ
ଧାଆଁନ୍ତି ଗ୍ରାମାନ୍ତ ଘନଛାୟା, ସୁରଭିତ
ବିଜନ ବକୁଳମୂଳେ, ରାତ୍ରି ଆଗମନେ,
ତାରାବିଚ୍ଛୁରିତ ନୀଳ ପ୍ରଶାନ୍ତ ଅଞ୍ଚଳ;
ଟାଣିଦିଏ ଯେବେ ସନ୍ଧ୍ୟା ପୃଥିବୀର ମୁଖେ
ବିରହୀର ପ୍ରାଣବ୍ୟଥା ପ୍ରଶମନ ପାଇଁ ସୁଆଦରେ ?
ସେହି ତୁମେ ବିମ୍ବାଧରେ ଯା'ର
ଦେଖିବାକୁ ହାସ୍ୟରେଖା ଜ୍ୟୋସ୍ନାଧାରା ଜିଣି,
ଯୁଗ ଯୁଗଧରି ଏହି ପାଗଳ ଭୁବନ
କ୍ଷୟ କରେ ପ୍ରାଣ ତାର ଯାଗେ, ଯଜ୍ଞେ, ତପେ
ଶୁଷ୍କ କରି ରସମୟ ଜୀବନତରଙ୍ଗ
ପ୍ରାଣହୀନ ସୁକଠୋର ସଂଯମ ସାଧନେ ?

* ଲେଖାକାଳ ସମ୍ଭବତଃ ୧୯୩୨-୩୩ । କଲେଜ ପଢ଼ାବେଳର ଏକ ବ୍ରାହ୍ମଣ ବନ୍ଧୁଙ୍କ ଅଭିଜ୍ଞତାରୁ ଏ କବିତାଟିର ଜନ୍ମ । ଅନ୍ୟ ଅଭିଜ୍ଞତାଦ୍ୱାରା ଅବଶ୍ୟ ଏହା ରସାଣିତ ହୋଇଛି । ସେ ବନ୍ଧୁ ଏବେ ଜଣେ ଉଚ୍ଚ ସରକାରୀ କର୍ମଚାରୀ ଏବଂ ସେହି ନାୟିକାଙ୍କୁ କେନ୍ଦ୍ର କରି ତାଙ୍କର ଏବେ ବିସ୍ତୀର୍ଣ୍ଣ ପରିବାର ।

ସେହି ତୁମେ ସ୍ୱର୍ଗପୁରେ ଯା ବସତି ହେତୁ
ନ ତେଜି ବସନ୍ତ କେଭେଁ ନନ୍ଦନକାନନ,
କୋମଳ କନକ କାନ୍ତି ଦେଇଥାଏ ଛାଇ
ଚିରଦିନ ପାଇଁ ଘୂରି ଚଉପାଶେ ତବ
ଅତୃପ୍ତ ଅନନ୍ତ ଆଶେ, ହେଉଥାଏ ଧନ୍ୟ ?
ଯାହା ପାଇଁ ପୁଣି କୁଞ୍ଜେ ପାରିଜାତମାନ
ନ ମଉଳି ବଦ୍ଧ ମୌନେ ସ୍ତବ୍‌ଧ ଦ୍ୱିପ୍ରହରେ
ଅଂଶୁମାଳୀ ଖରତାପେ, ହସୁଥାନ୍ତି ସଦା
ଅମଳ ବିକାଶେ ମୃଦୁ ମନ୍ଦ ବିଧୂନନେ ?
ସୋମପାୟୀ ଅର୍ଦ୍ଧଚନ୍ଦ୍ରାବିଜଡ଼ିତ-ନେତ୍ର
ଦେବତା, ସୁଧର୍ମା ପରେ କୋମଳ ତଳପେ
ହେଉଁ ଅର୍ଦ୍ଧଶାୟୀ, ଯାର ନୃତ୍ୟପରାୟଣ
ସ୍ୱର୍ଣ୍ଣଲତାନିଭ ଅଙ୍ଗ ଚାରୁ ସଞ୍ଚାଳନ
ମୁଗ୍‌ଧ ପ୍ରାଣେ ଭାବୁଥାନ୍ତି ଇନ୍ଦ୍ରଜାଲ କ୍ରୀଡ଼ା,
ସେହି ତୁମେ ରସମୟୀ, ଚିର ନୃତ୍ୟମୟୀ
ମୂର୍ତ୍ତିମତୀ ବିଶ୍ୱଶୋଭା; ଉର୍ବଶୀ ସୁନ୍ଦରୀ ?
ଧନ୍ୟ ମୁହିଁ ଆଜି ଦେବି, ଦେଖିଲି ଯା' ଏବେ
ଚରଣ ଦୁଇଟି ତବ । କହ ତେବେ କିପାଁ
ଆହ୍ୱାନିଲେ ଏ ଅଧୀନେ ? ସାଧ୍ କିବା ତବ,
ମଣିବି ଏ ପ୍ରାଣ ମମ ସାର୍ଥକ ଭୂତଳେ ?

## ଉର୍ବଶୀ

ଉର୍ବଶୀ ମୁଁ; ସତ୍ୟ ବୀର ଅର୍ଜୁନ ସୁନ୍ଦର,
ମୋର ମୁଖେ ଚାହିଁ ଏହି ଭୁବନ ସକଳ
ଯୁଗୁ-ଯୁଗୁ ଲଭିଥାନ୍ତି ଅମୃତର ଧାରା,
ମୋ ଚରଣ କ୍ଷେପେ ଏହି ପୁଣ୍ୟ ତ୍ରିପଥଗା
ତାଳେ ତାଳେ ମହାଛନ୍ଦେ ନାଚିଉଠେ ଧୀରେ
ଉଲ୍ଲୋଳ କଲ୍ଲୋଳ ଊର୍ମି ତାଳେ ଗାଇ ଗାଇ,
ମୋ ନିଶ୍ୱାସଘାତେ ଏହି ବାୟୁ ଜଗତର
ମନମୋହକର ଗନ୍ଧେ ହୋଇ ଭାରାକ୍ରାନ୍ତ
ଉନ୍ମାଦେ, ଉଦ୍ଦାମ ବେଗେ ଦଉଡ଼େ ବିଶ୍ୱର ଚତୁର୍ଦ୍ଦିଗେ ।
କିନ୍ତୁ ମୋର ନିଜ ପ୍ରାଣ ଯେବେ

ହୋଇଆସେ ଅବସନ୍ନ, ଯେବେ ବକ୍ଷେ ବକ୍ଷେ
ଶୂନ୍ୟତା ମୁଁ ଅନୁଭବେ ବିଷମ ବ୍ୟଥାରେ
କାହା ମୁଖଶୋଭା ବୀର, ଶମେ ମୋ ସନ୍ତାପ ?
ପାଇଛି ଅମଳ ଶୋଭା, ଅନନ୍ତ ଯୌବନ,
ବିତରିଛି ଦିଶେ ଦିଶେ, ବିଶ୍ୱହିତ ପାଇଁ
ଚିରକାଳ ତାହା ପାର୍ଥ; ସୃଷ୍ଟିକାଳୁ ମୋର
ବିଶ୍ୱର ଅଗଣ ଦୃଷ୍ଟି ପଡ଼ିଛି ଏ ଭାଲେ,
ସକଳ ବିଶ୍ୱର-ହିୟା-ବେଦନା ମୋ ବକ୍ଷେ
ଫିଙ୍ଗିଛି ଅଙ୍କୁଶ-ରେଖା, ସହିଛି ମୁଁ ସବୁ ମୌନେ !

କିନ୍ତୁ ହେ ବୀରେନ୍ଦ୍ର, ମୋର ଛାତି ଯେବେ
କାନ୍ଦିଉଠେ ବ୍ୟଥାଭରେ ବେଦନା ନ ସହି
ଦେଖିନି ଏ ବିଶ୍ୱେ କା'ରେ ଯା'ର ମହାଚିତ୍ତେ
ବାଜିବ ମୃଦୁଳ ବେଗେ ପ୍ରତିବାଣୀ ମମ ।
ଶୁଣାଇଛି ଚିରକାଳ ନିସ୍ତବ୍ଧ ନିଶୀଥେ
ମହାବ୍ୟୋମେ ମୋ ବକ୍ଷର କରୁଣ କାହାଣୀ,
କେହି ହେଲେ ନ ଶୁଣଇ ସେ ବିଳାପ ମୋର ।
ତୁମେ ବୀର, ପୃଥ୍ୱୀର ବରପୁତ୍ରରୂପୀ
ଶୌର୍ଯ୍ୟେ, ବୀର୍ଯ୍ୟେ, ମହିମାରେ, ମାନେ ଅତୁଳନ
ତିନିପୁରେ, ଆଜି ବିଶ୍ୱ-ଆକାଶ ମୁଖରି
ମୁହୁର୍ମୁହୁଃ ଉଠେ ତବ ଜୟଜୟକାର;
ତ୍ରିଲୋକରମଣୀରାଜି ଆଜି ତବ କଣ୍ଠେ
ଦେବାକୁ ଇଚ୍ଛନ୍ତି ପ୍ରେମ-ମନ୍ଦାରମାଳିକା,
ପ୍ରଣୟବିଧୁରନେତ୍ରେ ବୀର ମୁଖେ ତବ
ଥରି ଥରି ଚାହିଁ ଚାହିଁ,
ମୁହିଁ ତେଣୁ ଆଜି
ଦେଉଛି ଏ ମାଳା-ମୋର-ହୃଦୟ-ବ୍ୟଥାର-
ସାକ୍ଷୀ-ରୂପୀ, ଘେନ ବୀର !

### ଅର୍ଜ୍ଜୁନ

ନୁହେ ଗୋ ଉର୍ବଶି,
ଏ ନୁହେଁ ଉଚିତ କର୍ମ, ଜଗତର ହୃଦେ
ସୁନିଭୃତେ ପୂଜିତା ଯେ ଅତୁଳ ଆଦରେ,

ପ୍ରାଣର ସ୍ୱପନ ସମ, ଅନୁଚିତ ତାର
ଏ ଭାବେ ସୌନ୍ଦର୍ଯ୍ୟ ଦାନ,
ଶୁଣ ରୂପମୟି,
ଜାଣ କି ତବ ଏ ଚିର ଉଜ୍ଜ୍ୱଳ ଶିଖା
ଯୌବନର, ସୌନ୍ଦର୍ଯ୍ୟର ରହିଛି ଅମ୍ଳାନ
ଶତ ଶତ ଯୁଗ ଧରି କିପରି ଏସନେ ?
ଜାଣ କି, ଅଗଣ ଏଇ ଦେବଦେବୀ ଯେବେ
ଭ୍ରଷ୍ଟ ହୋନ୍ତି ସ୍ୱର୍ଗପଥୁ – ନିଦାଘ ଗଗନେ
ନିପତିତ ଶତ ଶତ ଉଲ୍‌କାପିଣ୍ଡ ସମ,
ଚିର ସୁଶ୍ୟାମଳା ଏଇ ନନ୍ଦନ-କମଳା,
ପ୍ରକୃତିର ବିବର୍ତ୍ତନେ ହେବେ ଯେବେ ଦିନେ
ହତଶିରୀ, ମ୍ଳାନ ମୁଖ; ଏଇ ସ୍ୱର୍ଣ୍ଣଶିରୀ
ଉତ୍ତୁଙ୍ଗ ସୁମେରୁ ଯଦି ଭାଙ୍ଗିପଡ଼େ ଯେବେ
ବିପର୍ଯ୍ୟସ୍ତ କରି ଏଇ ପ୍ରଶାନ୍ତ ଅମରା,
ହାହାକାର ଉଠେ ଯଦି ସମଗ୍ର ସଂସାରୁ
ପ୍ରଳୟର ଭୟଙ୍କର ତାଣ୍ଡବ ଚଳନେ,
ତେବେ ମଧ୍ୟ ହେ ଅନିନ୍ଦ୍ୟବଦନା ଉର୍ବଶି
ଆତଙ୍କେ ଶରୀରେ ତବ ଏକ ଲୋମରେଖା
ରୋମାଞ୍ଚ-ଚଞ୍ଚଳ ହୋଇ ନ ଉଠିବ କେବେ
ଭୃକୁଟି ନିକ୍ଷେପି ସେହି ପ୍ରଳୟର ମୁଖେ
ହସିବ ବଦନେ ତବ ଅମ୍ଳାନ ଲାବଣ୍ୟ
ତରତରେ; କର୍ଣ୍ଣେ ତବ କୁରୁବକଦଳ
ସ୍ଥିର ଅଚଞ୍ଚଳ ରହି ଚୁମୁଥିବେ ମୁଦେ
ଉଦାର କପୋଳ ତବ, ସେ ମହା ବିନାଶ
ନତ ମୁଖେ, ଶଙ୍କାଚିତ୍ତେ, ମାନି ପରାଜୟ
ଆଘ୍ରାଣିବ ତବ ପଦ ଶୁଭ୍ର ନଖପନ୍ତି,
ଅକ୍ଷୁଣ୍ଣ ଯୌବନ ଘେନି ବିଶ୍ୱ ଆଗେ ଯେବେ
ଠିଆହେଲ ସଗୌରବେ ଲଜ୍ଜାନତ ମୁଖେ
ମୃଦୁଳେ କମ୍ପାଇ ମାତ୍ର ଅଧର ସୀମାନ୍ତ,
ସଙ୍କୋଚି ବର୍ତ୍ତୁଳ-ସ୍ୱର୍ଣ୍ଣ-ସୁନ୍ଦର ଚିବୁକ,
ସ୍ତବ୍ଧ ହେଲା କ୍ଷଣେ ସର୍ବ ବିଶ୍ୱ ଚରାଚର,
ନିଖିଳର ହିୟା କ୍ଷଣେ ହୋଇଲା କରତି

ଟିକି ଟିକି ହୋଇ ଏକ ଅଜ୍ଞାତ କାରଣେ;
କିନ୍ତୁ ତୁମେ, ନିର୍ବିକାର ଅଚଞ୍ଚଳ ରହି
ନିଜ ରୂପେ ମଗ୍ନ ରହି ଜାଳିଲ ଅଧିକେ
ଜଗତଜନର ବକ୍ଷେ ଅଗ୍ନି ଅନିର୍ବାଣ ।
ଦେବ ପୁଷ୍ପଧନ୍ୱା ଆସି ଥୋଇ ଧନୁଶର
ପ୍ରଣମିଲା ପଦପ୍ରାନ୍ତେ ଲଜ୍ଜାନମ୍ର ମୁଖେ ।
ସେ ମୁହୂର୍ତ୍ତେ ଦେବୀ କିନ୍ତୁ ଦେଇଥାନ୍ତ ଯଦି
ଢାଳି ଏ ଉଦ୍ଦାମ ରୂପସ୍ରୋତ କା'ର ପଦେ,
ଅଥବା ଜଗତଜନ ବାସନା ସଂପୁଟେ,
ସରିକି ନଯାଇଥାନ୍ତା ସେହି ସେ କ୍ଷଣରେ
ରୂପମୟୀ ଉର୍ବଶୀର ସୁବର୍ଣ୍ଣ-ଗୌରବ ?
ଦୂରେ ଦୂରେ ରହି,
ନିଖିଳର ବାସନାର ଉଷ୍ଣ ଶ୍ୱାସତାପୁଁ
ବଞ୍ଚାଇ ଏ ଅଙ୍ଗଲତା ରଖିଛ ସୁନ୍ଦରି,
ନିଜର ଯୌବନ-ପୁଷ୍ପ, ଅମ୍ଳାନ ମଧୁର ।
ଥାଅ ସେହିପରି ଦେବି, ସୃଷ୍ଟି ଶେଷଯାଏଁ
ବିଶ୍ୱର ପରମ ସ୍ୱପ୍ନ, ଅଭୋଗ୍ୟା ରୂପସୀ
ସେହି ମହିମାରେ ପୁଣି ବିଶ୍ୱ-ବନ୍ଦନୀୟା ।

[ ଲେଖାକାଳ – ୧୯୨୮ ]

## ପ୍ରଣୟିତ ପୁଷ୍ପ

କନକ ରବିର ତରୁଣ ରେଖା
ଅରୁଣ ରାଗେ
ଛପି ଛପି ଯେବେ ଦିଅଇ ଦେଖା
ଭୁବନ ଆଗେ,
ପ୍ରଥମ-ପ୍ରଣୟ-ସରାଗ ଭରି
କୁସୁମ-ରାଣୀ,
ଲକ୍ଷ ବୋକ ସେ ଦିଏ ତୁମରି
ବକ୍ଷେ ହାଣି,
ନିବିଡ଼ ପ୍ରେମର ପ୍ରସାଦ ପରି
ସୌରଭଟି,

ପ୍ରଭାତ ବାୟୁର ଅଙ୍ଗେ ଚରି
ଯାଏ ଚହଟି ।
ମୁକ୍ତା-ହସଟି ଶିଶିର ହସେ
ସୂର୍ଯ୍ୟକରେ,
ସ୍ୱର୍ଣ୍ଣ ହସିତ ଗଗନୁ ଖସେ
ଆଶିଷଭରେ ।
ମର୍ମରଇ ପବନ ଛନ୍ଦ
ପଲ୍ଲବରେ
ଭାସଇ ସୁଧା ସ୍ୱରଗ ଛନ୍ଦେ
ତବ ଅଧରେ ।
ନିଜ ବିଭବେ ବିହ୍ୱଳ୍ ଗୋ
କୁସୁମ ସଖୀ,
ଦୋହଲୁଅଛ ମୁଗ୍ଧ ଆଖି
ଆକାଶେ ରଖି ।

[ ଲେଖାକାଳ – ୧୯୨୮ ]

## ଉନ୍ମନ

ଆଜି ଉତୁରି ଉଠଇ
ପ୍ରଣୟେ ଫୁଟଇ ପ୍ରାଣ ମୋର,
ଦୂରୁ ଆସୁଅଛି ଆଜି
କୁସୁମରେ ସାଜି ମନଚୋର ।
ବନେ ମନ୍ଦ ଶୁଭୁଛି
ବଂଶୀ, – ଲୋଟୁଛି ଗାନ ତାର;
ତାର- ଚରଣେ ଚରଣେ;
ପୁଣି କଂକଣେ ସଂଚାର ।
ହୃଦ, ସୁଖ-ଚଞ୍ଚଳେ
କ୍ଷଣେ ଉତ୍‌ଥଳେ ଥରଥର,
ମଧୁ ଶଙ୍ଖ କାହାର
ଶୁଭେ ବାରବାର ତରତର ।
ପ୍ରାଣେ ଆସିଅଛି ଆଜି
ରକ୍ତରେ ବାଜି ଡାକ କା'ର,

କାନେ ମନ୍ତ୍ରଣା – ମଧୁ
ଆସେ କେଉଁ ବଧୂ . . . ଦୂତିକାର ।
ତେଣୁ ମୋର ଏ ବକ୍ଷ
ହରାଇ ଲକ୍ଷ୍ୟ ପ୍ରେମ-ଲୋଳ,
ଆଜି ସେହି ଡାକ ଆଡ଼େ
ବାସନା ଅଜାଡ଼େ ସୁଖଭୋଳ ।
ଆଜି ଉତୁରି ଉଠଇ
ପ୍ରଣୟ ଫୁଟଇ ପ୍ରାଣ ମୋର,
ଦୂରୁ ଆସୁଅଛି ଆଜି
କୁସୁମରେ ସାଜି ମନଚୋର ।
[ ଲେଖାକାଳ – ୧୯୨୮ ]

## ଆଗମନ

ପୁଲକିତ, ଆଲୋକିତ ଧରଣୀର ବକ୍ଷ,
ଲୁଟିପଡ଼େ ଧରଣୀର ସଂଗୀତ ଲକ୍ଷ,
ଉଲ୍ଲୋଳ ତରତର ଯମୁନା ତରଙ୍ଗ
କନକିତ ଅଙ୍ଗ
ରଭସ-ବଶମ୍ବଦ ଲହରୀର ଭଙ୍ଗ ।

ନୂପୁର ବାଜଇ ମୋର ଚଞ୍ଚଳ ଚରଣେ,
ମାଜିଅଛି ଅଂଗ ମୁଁ କୁଙ୍କୁମ ବରଣେ,
ପୁଷ୍ପର ହାର ଏ ଯେ ଗ୍ରଥିତ ସ୍ୱହସ୍ତେ
ହୃଦୟର ପ୍ରସ୍ତେ
ବାଜେ ଆଜି ଆଗମନୀ ଲଜ୍ଜିତେ, ଆସ୍ତେ ।

ଯମୁନାର ବୁକେ ଭାସି ଆସିବେ ମୋ ବନ୍ଧୁ
ଝୁଲୁଥିବ ଫୁଲହାର ଉନ୍ନତ ସ୍କନ୍ଧୁ,
ଅଧରରେ ଫୁଟୁଥିବ ପ୍ରାଣମୟ ହାସ୍ୟ,
ସୁନ୍ଦର ଆସ୍ୟ
ଦୈବତ-ଆଲୋକିତ, ବିଶ୍ୱ-ନମସ୍ୟ ।

ବହୁ ଦୂରବାସୀ, ପୁଣି ଅନ୍ତରତମ ସେ,

ଜୀବନର ଯାହା କିଛି ସବୁଠାରୁ ମମ ସେ,
ଚରଣ ତେଣୁ ଗୋ ଆଜି, ନ ଜାଣଇ ଲକ୍ଷ୍ୟ,
ଥରଇ ମୋ ବକ୍ଷ
ଆଲୋକିତ ହୁଏ ହୃଦ, ଅନ୍ଧାର-କକ୍ଷ ।
[ ଲେଖାକାଳ – ୧୯୨୩) ]

# ଗୀତଗୋବିନ୍ଦ

[ ଅନୁବାଦ ]

(ନିଭୃତ ନିକୁଞ୍ଜଗୃହଂ ଗତୟା ନିଶି ରହସି ନିଲୀୟ ବସନ୍ତଂ)

ବିଜନ ନିକୁଞ୍ଜ ଗୃହେ ଯିବି ମୁଁ ସଖି,
ଲୁଚି ବସିଥିବେ ସେଥି ଶ୍ୟାମ ନାଗର,
ସଚକିତେ ଚଉଦିଗେ ଚାହିଁବି ମୁହିଁ
ହସିବେ ରଭସ-ରତି-ରସ-ସାଗର ।
ସଖି ରେ, କେଶବ କି ପାରିବୁ ଆଣି
ମୋ ପାଶେ, ବିଷମ ଶର ଯାତନା ଜାଣି ।
ପ୍ରଥମ ଏ ସମାଗମେ ହେଲେ ସରମ
ଅନୁକୂଳ ପଟୁ-ଚାଟୁ କରିବେ ହରି
ଭାଷିଲେ ହସି ଗୋ ମୃଦୁ ମଧୁ-ବଚନ
ଜଘନ-ଦୁକୂଳ ଦେବେ ଶିଥିଳ କରି ।
କିଶଳୟ ଶୟନେ ମତେ ଶୁଆଇ ଧୀରେ
ଉରସେ ମୋ ମଧୁ-ରିପୁ ଶୋଇବେ ଚିର,
ଚୁମ୍ବନ ଆଶ୍ଳେଷ ମୋର ଲଭି ରସିକ,
ପିଇବେ ଅଧରେ ମୋର ଚୁମ୍ବି ଗଭୀର ।
ଅଳସେ ନୟନ ମୋର ହୋଇବ ମୁଦି,
ପୁଲକେ କପୋଳ ତାଙ୍କ ଦିଶିବ ଚାରୁ,
ଶ୍ରମଜଳେ କଳେବର ହେବ ମୋ ଓଦା
ଚଞ୍ଚଳ ହେବେ ସେ ଅତି ମଦନ-ଭାରୁଁ ।
କହିବି କୋକିଳ-ରବେ ମଦନ-କଥା,
ମନସିଜ-ଜୟୀ ମୋର ପ୍ରିୟରେ ଚାହିଁ,

ଆକୁଳ ଅଳକୁ ଖସି ଝଡ଼ିବ ଫୁଲ
ଉରଜ ତୁଷିବ ନଖ-ଲିଖନ ପାଇ ।
ଚରଣ-ରୁଣିତ ମଣି ନୂପୁରେ ସଖି,
ସୁରତ ବିତାନ ପୂରି ଉଠିବ ଖରେ,
ମୁଖର ମେଖଳା ମୋର ଖସିବ ହେଳେ
ଚୁମ୍ବିବେ ସେ କେଶ ଧରି ମୁଖେ ଆଦରେ ।
ରତି-ସୁଖ ରସେ ମୋର ପୂରିବ ହିୟା
ଅଧା-ମୁଦା ଥିବ ତାଙ୍କ ନୟନ-ଫୁଲ,
ଅବଶେ ମୋ ତନୁଲତା ରହିବ ପଡ଼ି,
ମାଧବ ମଦନ-ମଦେ ହେବେ ଆକୁଳ ।
ଜୟଦେବ ଭଣିତ ଏ ମଧୁର ଗୀତି
ମଧୁରିପୁ ନିଧୁବନ ଲୀଳା-ଲହରୀ,
ଗୋପବଧୂ ବିଧୂରିତ ବଚନ ଏହୁ
ରସିକ ହୃଦୟ ନେଉ ସହଜେ ହରି ।

## ଗୀତଗୋବିନ୍ଦ

[ ଅନୁବାଦ ]

ସଂକେତ କରି ନ ଗଲେ ହରି,
ହାୟ ଲୋ ଯାହା ବନେ,
ହେଲା ବିଫଳ; ସିନା ଅମଳ
ମୋର ଏ ଯଉବନ ।
ଶରଣ ଏବେ କାହାରେ ଭବେ,
ଯିବି, ଯା' ସଖୀ-ଗିରେ ଭୁଲିଲା ମୋର ମନ । (ଧ୍ରୁ)

ଯା' ଅନୁସରି, ବନେ ଶର୍ବରୀ ଭେଦି ଆସିଲି ଧାଇଁ
ବିଷମ ଶର ଘାତେ ଜର୍ଜର ହେଲି ତାହାରି ପାଇଁ ।
ଏ ଯେ ଲାଞ୍ଛନା, ଗୁରୁ ବଞ୍ଚନା, ଭଲ ମରଣ ଏଥୁ,
କହ କେସନେ, ବଞ୍ଚି ଏକ୍ଷଣେ ବିରହାନଳ ହାତୁ ।
ମଧୁର ମଧୁ- ଯାମିନୀ-ବଧୂ – ଅଛି ପରାଣ ମୋର
ଆଉ କେ ନାରୀ ସୁକୃତେ ବରି ଭୋଗେ ମୋ ଚିତ୍ତ-ଚୋର ।

ମଣି ଭୂଷଣ ଦିଏ କଷଣ ତନୁରେ ମୋର ସଖି
ବିରହାନଳ ଜଳେ ପ୍ରବଳ; କେସନେ ଏହା ରଖି ?
କୋମଳ ତନୁ ସଖି, ଅତନୁ- ଶରେ ଗଲାଣି ଭାଜି
ହୃଦରେ ମୋର କାଟଇ ଘୋର କୁସୁମହାରରାଜି ।
ବନବେତସ ନଗଣି, ରସ- ଶେଖର ପାଇଁ ସିନା
ଆସିଲି ବନେ, ସେ କି ଗୋ ମନେଭାବିଲା ମୋହ ବିନା ?
କୋବିଦ – ଚିତ୍ତ ରଞ୍ଜୁ ଏ ଗୀତ ଭଣଇ ଜୟଦେବ,
କେଳି-ଚତୁରୀ- ଯୁବତୀ ସରି ଅସୀମ ସୁଖ ଦେବ ।

[ ଲେଖାକାଳ ସମ୍ଭବତଃ ୧୯୩୧-୩୨ ]

## ତୀର୍ଥ-ଧୂଳି

ବଡ଼ଦାଣ୍ଡେ ଉଡ଼େ ଧୂଳି-ବାଲି ଅବିରତ
ବିଳାସୀର ଅଙ୍ଗେ ପଡ଼ି କରଇ ବିବ୍ରତ ।
''ଏଠି କି ମଣିଷ ରହେ ? ଆସିଲି କିପାଇଁ ?''
– ବୋଲି ସେ ବିଳାସୀ ଦୁଃଖେ ମୁଖ ପୋଛୁଥାଇ ।
ସେଇ ପଥେ ଯାଏ ଭକ୍ତ ଆନନ୍ଦ ଗଦ୍‌ଗଦ,
ଆନନ୍ଦେ ଭୂମିରେ ତାର ପଡୁନାହିଁ ପାଦ ।
''ଏ ଧୂଳି ପଡୁ ମୋ ମୁଣ୍ଡେ ଜନ୍ମ-ଜନ୍ମାନ୍ତର''
– ବୋଲି ସେ ଧୂଳିରେ ଧୁଏ ଶୀର୍ଣ୍ଣ କଳେବର ।

[ ଲେଖାକାଳ ସମ୍ଭବତଃ ୧୯୩୧-୩୨ ]

## କବିର ନିମନ୍ତ୍ରଣ

କବି ଯେବେ ଥିଲେ ଶଇଶବେ
ଜ୍ୟୋତ୍ସ୍ନା ସ୍ୱପ୍ନ ସ୍ମୃତି ଖାଲି ଧରି;
ପାଇଲେ ସେ ଦିନେ ନିମନ୍ତ୍ରଣ,
ଭ୍ରମିଲେ ସେ ଡାକ ଅନୁସରି ।
ବୁଲି ବୁଲି ତ୍ରିଜଗତ ସାରା
ନ ପାଇଲେ କାହା ପ୍ରାଣେ ପ୍ରୀତି

ଶେଷେ କବି ଶୁଣିଲେ କାନନେ,
ଏକ ଫୁଲୁ ସେ ବିକଳ-ଗୀତି ।
କବି ଯେବେ ଫେରିଲେ ଯୌବନେ
ପୁଣି ତାଙ୍କୁ ଆସିଲା ଆହ୍ୱାନ
ବୁଲି ବୁଲି ବୁଝିଲେ ତା’ କବି
ଷୋଡ଼ଶୀର ଆଦ୍ୟ-ପ୍ରେମ-ଗାନ ।
ବୃଦ୍ଧ ଯେବେ ହେଲେ କବି ପୁଣି
ଡାକ ଆସି ବାଜେ କାନେ କାନେ,
ଭ୍ରମି ଭ୍ରମି ଶୀର୍ଣ୍ଣ କଲେ ଦେହ
ନ ଶୁଣିଲେ ଡାକ କାହା ପ୍ରାଣେ ।
ଅବଶେଷେ ବୁଝିଲେ ସହସା
ନିଜ ହୃଦୁ ଆସୁଛି ସେ ଡାକ,
ସେହି କ୍ଷଣୁ ଗାଇ ଈଶ-ଗୀତି
କାନ୍ଦୁଥାନ୍ତି ଏ ଜୀବନଯାକ ।

[ ଲେଖାକାଳ – ୧୯୨୩ ]

## ଶୁଣୁନା କିଆଁ ?

ତୁମର ପଦତଳେ,
ମୋହର ବ୍ୟଥିତ ଅଶ୍ରୁ ନାହିଁ କି ପଡ଼େ ?
ପୌଷ ବାୟୁ ସମ,
ଜୀବନ ମତେ ଦେଉଛି ବ୍ୟଥା ଜାଣନା କି ନିର୍ମମ ?
ଶ୍ରାବଣ ଘନ ପରି,
ବେଦନା ମୋର ନେତ୍ରୁ ବହେ, ତୁମଠି ଆଶା କରି ।
ନ ଶୁଣ କିପାଁ ମିତ,
ତୁମ୍ଭ ବିନା କିଏ ଅଛି କହ ବୁଝିବ ମୋ ବ୍ୟଥିତ ?
ଦେଉଳ ତଳେ ରହି,
ପାହାଚ ତବ ଆର୍ଦ୍ର କଲି ବେଦନା ମୋର କହି ।
ଫିଟାଅ ତବ ଦ୍ୱାର,
ଦେଖଇଁ କିନା ବଦନ ତବ ପିନ୍ଧାଇ ଅଶ୍ରୁହାର ।
ଚରଣ ଦୁଇ ତବ
ହୃଦରେ ମୋର ନିବିଡ଼େ ଭିଡ଼ି କରେଁ ମୁଁ ଅନୁଭବ ।

ଜୀବନ ଫୁଲ ମୋର
ଚରଣତଳ-ଧୂଳିରେ ପଡ଼ି ହେଉ ହେ ମୁକ୍ତି ଭୋଳ ।
ଏଇ ତ ଭିକ୍ଷା, ହରି,
ଶୁଣୁଣା କହ, କି ଆତଙ୍କେ ଡରି ?

[ ଲେଖାକାଳ ବୋଧହୁଏ - ୧୯୩୧-୩୨ ]

## ପଙ୍ଗୁର ଭିକ୍ଷା

ସକଳେ ଯେବେ ଯିବେ ହେ ଏକା କରି
ପ୍ରଭୁ ହେ ଯାଇ ଡାକିବି ପାଦ ଧରି,
ଦେବ କି ନାହିଁ ଚରଣେ ତବ ଥାନ
ହେ ମୋର ପ୍ରଭୁ, ବ୍ରହ୍ମାଣ୍ଡ-ପାବନ ?

ସମରେ ଯେ ଗୋ ଥିଲେ ସେ ମୋର ସାଥୀ
ଗଲେ ସେ ଚଳି ଯେ ଯାହା କର୍ମେ ମାତି
ପଙ୍ଗୁ ମୁହିଁ ରହିଲି ପଡ଼ି ପଥେ,
ଦେଲେ କେ ନାହିଁ ଠାବ ହେ ତାଙ୍କ ରଥେ ।

ତୁମର ରଥେ ଦିଅ ହେ ମତେ ଥାନ,
ସ୍ୱାମୀ ହେ ମୋର, ଭୁବନ-ନିସ୍ତାରଣ ।
ଭଗ୍ନ-ପଦ ଆବୋରି ପଥ-ରେଣୁ
ପାତିଛି କାନ ଶୁଣିବି ତବ ବେଣୁ,
ଶୁଣିବି କେବେ ରଥର ଘନ ରବ
ଭୁବନ-ଜିଣା ଅଶ୍ୱ-ହ୍ରେଷା ତବ,
କରିବି ଉଠି ଭିକ୍ଷା, ଟିକେ ଥାନ,
ଦେବ କି ନାହିଁ ପତିତ-ଉଦ୍ଧାରଣ ?

ଶୁଣିଛି ତବ ରଥ ହେ ବଡ଼ ଅତି,
ଜଗତେ ଯେତେ ପଙ୍ଗୁ, ଥାନ ତଥି,
ଭଗ୍ନଜାନୁ ପଡ଼ିଛି ଏଥି ରହି
ଦୁଃଖକଥା ପାନ୍ଥଜନେ କହି,
ରଖିବ ନିକି ମୋ ପାଶେ ତବ ଯାନ
ପଙ୍ଗୁରେ ଏ, ଦେବାକୁ ଟିକେ ଥାନ ?

[ ଲେଖାକାଳ ବୋଧହୁଏ ୧୯୩୧-୩୨ ]

## ଜୀବ ଅକୃତଜ୍ଞ

ରୋପିଲି ଲତା, ଦିଏ କୁସୁମ ଗନ୍ଧ,
କୁଟୀର ବାତାୟନେ ରହିଛି ଛନ୍ଦ ।
ରୋପିଲି ବୃକ୍ଷ, ଦିଏ ଛାୟା ଶୀତଳ,
ଋତୁରେ ଅଞ୍ଜିଭରି ଢାଳଇ ଫଳ ।
ପାଳିଲି ପଶୁ ଏକ ମୂକ ସେ ପ୍ରାଣୀ,
ଶୁଝଇ ସ୍ନେହ ମୋର ହୃଦୟ ଜାଣି ।
ପାଳିଲି ନର ଏକ ପରମ ସ୍ନେହେ,
ଗଲା ସେ ପଦାଘାତ ଦେଇ ଏ ଦେହେ ।
[ ବାରିପଦା, ତା. ୮-୪-୧୯୪୯ ]

## ସନ୍ଧ୍ୟା

ଦିବା ହୁଏ ଅବସାନ, ଅସ୍ତରବି-କର
ଅବିର-ରଞ୍ଜିତ କରି ଅର୍ଦ୍ଧ ନୀଳାମ୍ବର,
ନିଶାନ୍ତ ପ୍ରଦୀପ ଶିଖା ସମ ଲିଭିଆସେ
ପ୍ରଭାହୀନ କ୍ରମେ କ୍ରମେ । ସୁବର୍ଣ୍ଣ ବିଭାସେ
ଦୂର ଶୈଳ ଶୀର୍ଷେ ରାଜେ ପ୍ରଦୋଷ-ତପନ
ଗୋରଚନା-ବିନ୍ଦୁ ସମ ପରମ ଶୋଭନ
ନୀଳ-ଦେହ ବିଷ୍ଣୁ-ଭାଲେ । କନକିତ ନଭେ,
କନକରଞ୍ଜିତ ପକ୍ଷ ମେଲାଇଣ ଯେବେ
ଉଡ଼ିଯାନ୍ତି ପକ୍ଷିଦଳ ନୀଡ଼େ ଅନ୍ନ ଧରି
ବୁଭୁକ୍ଷୁ ସନ୍ତତି ଲାଗି; ଯାଏ ବା ସଂଚରି
ନୀଳାକାଶେ ଛିନ୍ନ-ମାଳା ଅମ୍ବର-ବଧୂର
ନୀଳ କେଶୁଁ, ତପନର ବିରହେ ବିଧୁର ।
ବୁଡ଼ଇ ତପନ କ୍ରମେ ଛାୟା ଆସେ ଭାସି
ବିପରୀତ ଦିଗନ୍ତରୁ, ଆଶଙ୍କା ସେ ଗ୍ରାସି
ଆସେ ଯେହ୍ନେ ଉତ୍ସୁକତା ନବକିଶୋରୀର
ଆଶା-ଉଦ୍ଦୀପିତ ଗଣ୍ଡ, ଶୁଣି ପ୍ରଣୟୀର

ସହସା ବିଦେଶ-ଯାତ୍ରା । ଅସ୍ତ ରବିକର
ଚୁମ୍ବିଲାଣି ବୃକ୍ଷଶୀର୍ଷ । ବିଚିତ୍ର ମୁଖର
ହେଲାଣି ଗ୍ରାମାନ୍ତ ବଟ ସନ୍ଧ୍ୟା ବିହଙ୍ଗମେ
ଦିବସ-ବିରହ ପରେ, ଆକୁଳ ସଙ୍ଗମେ ।
ଫେରଇ କୃଷକ କ୍ଷେତ୍ରୁ ଗୃହେ, ଶ୍ରାନ୍ତ ଗତି
ଶସ୍ୟଭାର ଶିରେ ଧରି, — ଚାହିଁଥିବ ସତୀ
ତାହାର ଲଳନା ତେଣେ ପତି ଆଗମନେ,
ସଜାଡ଼ି ଦରିଦ୍ର-ଅନ୍ନ ।

ନିରୋଳ, ନିର୍ଜନ
କ୍ରମେ ହୁଏ ଗ୍ରାମ-ପଥ । ପଥ ପାଶେ ବସି
ଦେଖୁଛି ମୁଁ ପରିଚିତ ମୋ ଗ୍ରାମ-ସରସୀ
ବିଚିତ୍ର ଦିଶଇ କେଡ଼େ ସନ୍ଧ୍ୟାଛାୟା ତଳେ,
ତୀରେ ତାର ସୀମନ୍ତିନୀ ଆସି ଦଳେ ଦଳେ
ପୂରାଇ ନୀରବେ ଜଳ, କୁମ୍ଭ ଘେନି କାଖେ
ନୁଆଇଁ ସୁନ୍ଦର ଗ୍ରୀବା, ବିପରୀତ ପାଖେ
ହଲାଇ ମୃଣାଳ ଭୁଜ, ବଜାଇ କଙ୍କଣ
ପରସ୍ପରେ କରି ଗୃହ-ବ୍ୟାପାର ଭାଷଣ
ଗର୍ଭାଳସା ହଂସୀ ସମ ମନ୍ଥରଗାମିନୀ
ଚାଲିଛନ୍ତି ଜଳ ଧରି । ପ୍ରଦୋଷ ପଦ୍ମିନୀ
ମ୍ଳାନ ହୋଇଆସେ ଚାହିଁ ତାଙ୍କ ମୁଖଛବି
ଉଦ୍‌ଭାସିତ ଗୃହାନନ୍ଦେ ।
ଅସ୍ତମାନ ରବି
ପରିପୂର୍ଣ୍ଣେ ଗଲେ ଏବେ ଶୈଳ ଅନ୍ତରାଳେ
ରଶ୍ମି ଦିଶେ ମାତ୍ର ମେଘ-ମୁକୁଟିତ ଭାଲେ
ଅଭିଷିକ୍ତା ବାରୁଣୀର । ଗ୍ରାମ ସରସୀରେ
ପଙ୍କଜ, ଶଂକିତା ବଧୂ ସମ ଚାହିଁ ନୀରେ
ଧୀରେ ଧୀରେ ମୁଦିଆସେ । ଖଞ୍ଜନ ଚପଳ
ବିସ୍ତୀର୍ଣ୍ଣ ପଙ୍କଜ ଦଳେ ଲଘୁ ଚରଣରେ
ଲଘୁପାତେ ଭ୍ରମିଯାଏ ଅନ୍ନ ସଞ୍ଚୟନେ
ଶେଷ ଥର ଲାଗି ଦିନେ, ଉତ୍‌କଣ୍ଠିତ ମନେ ।

[ ଲେଖାକାଳ ସମ୍ବତ୍ ୧୯୩୦ ]

# ଉତ୍ତରଳ ଯୌବନ

ଅନ୍ୟମନେ ଦିଗ୍‌ବିଦିଗେ ବୁଲୁଥିଲି ବିଶ୍ୱବକ୍ଷ ପରେ
କାହାର ଆତ୍ମୀୟ ଡାକ ନ ପରଶି ଥିଲା ଏ ଅନ୍ତରେ,
ଏ ଜୀବନ-ସ୍ରୋତ ମୋର ଫିଙ୍ଗିବାକୁ ଆକୁଳ ଉନ୍ମାଦେ

ଆଉ କାହା ପଦେ,
ପିପାସା ନ ଥିଲା ଜାଗି କିଶୋରର ବକ୍ଷ ତଳେ ତଳେ ।

ତମେ ହେ ଯୌବନ କିନ୍ତୁ ସେଦିନ ସେ ଗୋଧୂଳି ଆଗମେ
ନଦୀତଟେ ଝୁଲୁଥିଲା ସ୍ୱର୍ଣ୍ଣଶାଟୀ ବାରୁଣୀ ଚରଣେ,
ହାତେ ଧରି ପୂଜାପାତ୍ର ସ୍ମିତହାସ୍ୟ ଅଧରେ ଭସାଇ

ନୀରବେ ଉଠାଇ
ଆଲିଙ୍ଗି ଧଇଲ ବକ୍ଷେ କର ମୋର ଅପୂର୍ବ ସରମେ ।

ତମର ନୟନ ପରେ ଲାଗିଥିଲା କି ଅମୃତ ସତେ
ସ୍ୱପ୍ନରାଜି ଖେଳୁଥିଲେ ଲୁଚକାଳି ରଞ୍ଜିତ ସୀମନ୍ତେ
ଭରିଦେଲ ଉନ୍ମାଦନା ରକ୍ତେ ରକ୍ତେ ଶିରା-ପ୍ରଶିରାରେ,

ତାହାରି ନିଶାରେ,
ଆନଭାବେ ନେତ୍ର ମୋର ଚାହିଁବାକୁ ଶିଖିଲା ଜଗତେ ।

ନେତ୍ରେ ମମ ମଚ୍ଛିଦେଲ ମହାରଙ୍ଗେ ଇନ୍ଦ୍ରଜାଲ ଧୂଳି
କପାଳେ ବୁଲାଇ ନେଲ ସୌନ୍ଦର୍ଯ୍ୟର ମାୟାମୟ ତୂଳୀ
ଅଙ୍ଗେ ଅଙ୍ଗେ ଲଗାଇଲ ରମଣୀୟ ମଧୁର ପୁଲକ

ଜ୍ୟୋତିର ଝଲକ,
ନିଜ ମୁଖଛବି ପାଶେ ନିଜ ଚିତ୍ତ ପଡ଼ିଲା ଉଛୁଳି ।

ଏଡ଼େ ଶାନ୍ତ, ଏତେ ଧୀର ହିୟା ମୋର ହୋଇଲା ବିଦ୍ରୋହୀ
ଅହର୍ନିଶ ଅକାରଣ ଭ୍ରମିଲି ମୁଁ ବାୟା ପରି ହୋଇ
ପୂର୍ବର ଶୀତଳରକ୍ତ ଧମନୀରେ ସୃଜେ ଅଗ୍ନି-ଜ୍ୱାଳା,

ନାହିଁ ମୋର ଚାରା,
ଦୁର୍ଲଭ ଯା' ଜଗତରେ, ତା'ରି ପାଇଁ ମୋ ଚିତ୍ତ ଆଶାୟୀ ।

ଆଜି ଚାହେ ପ୍ରାଣ ମୋର ଜ୍ୟୋତ୍ସ୍ନାଭରା ନିଶି ଚିରକାଳ

ରାତ୍ରିଦିବା ମଳୟର ସୁରଭିତ ତରଙ୍ଗ-ସଞ୍ଚାର,
ଯାପିବାକୁ ଏ ଜୀବନ ନଦୀତଟେ ପୁଷ୍ପକୁଞ୍ଜ ତଳେ
ଅତି କୁତୂହଳେ,
ଚାହିଁ ଚାହିଁ ତରଙ୍ଗର ରଙ୍ଗମୟ ଲୀଳାର ସଂସାର ।

ଆଜି ଚାହେଁ ଖାଲି ସ୍ୱପ୍ନ, ତୃପ୍ତିମୟ, ବାସ୍ତବତାହୀନ
ପରୀରାଣୀ କୁଞ୍ଜେ ବସି କାଟିବାକୁ ବସନ୍ତର ଦିନ,
ପରୀନଟୀ ପକ୍ଷପୁଟେ ଥାପି ମଥା ଆକାଶେ ଆକାଶେ
ଶବ୍ଦହୀନ ହାସେ,
କରିବାକୁ ଚନ୍ଦ୍ରତାରା ସହ ସାରା ବିଶ୍ୱ ପ୍ରଦକ୍ଷିଣ ।

ଆଶା ମୋର, ଏ ଧରଣୀ ଆଚମ୍ବିତେ କେଉଁ ମନ୍ତ୍ରବଳେ
ନନ୍ଦନ ହୁଅନ୍ତା ପୁଣି କାହା କର-ଯାଦୁର ପରଶେ,
ଚାରିଆଡ଼େ ଝରୁଥାନ୍ତା ମଲ୍ଲୀ, ଚମ୍ପା, କୁନ୍ଦ, ଶେଫାଳିକା,
ଗୋଲାପ କଳିକା,
ଶ୍ୟାମ, ଶୁକ, ପୁଂସ୍କୋକିଳ ଗାଉଥାନ୍ତେ ଆନନ୍ଦ ହରଷେ ।

ପରିମଳବାହୀ ବାୟୁ ନୃତ୍ୟରତ ବୁଲୁଥାନ୍ତା ସୁଖେ
ଲେପୁଥାନ୍ତା ପୁଷ୍ପରାଗ ସରାଗରେ ଜନ ମୁଖେ ମୁଖେ
ପର୍ବଶର୍ବରୀର ଶିରୀ ଚାରିଆଡ଼େ ପଡ଼ନ୍ତା ଉଚ୍ଛୁଳି,
ସବୁ ଚିନ୍ତା ଭୁଲି,
ସର ତୀରେ ଶାୟିତ ମୁଁ ଥାନ୍ତି ଗୁଂଜି ମଥା ପରୀ ବୁକେ ।

ଅଥବା ସେ କୁଞ୍ଜବନେ ବକୁଳର ସୁରଭିତ ତଳେ
ବସିଥାନ୍ତି ଭୋଗି ଗଣ୍ଡେ ଜ୍ୟୋତ୍ସ୍ନାଚୁମ୍ବ ଛାୟାର ଗହଳେ,
ଏକାଳେ ସହସା ପଛୁ ଅଚିହ୍ନା କେ ମଧୁର ପ୍ରେୟସୀ
ମୃଦୁ ହସି ହସି,
ଆପଣାର ପରି କର-ସ୍ପର୍ଶ ତାର ଦିଅନ୍ତା ମୋ ଗଳେ ।

ତୁମ ଆଗମନ ସାଥେ ହେ ଯୌବନ ଜାଗିଛି ବାସନା,
ଅବାରିତ ଗତି ତାର, ନ ପାରେ ମୁଁ କରି ତା'ରେ ମନା,
ଏକାକୀ ଜୀବନ ଆଉ ବିତାଇବା ହୁଏ ଅସମ୍ଭବ,
ସମସ୍ତ ବିଭବ,
ଫିଙ୍ଗିଦେଇ ଖୋଜେ ପ୍ରାଣ ଜଣେ ସଖୀ-ପ୍ରଣୟ-ଜୀବନା ।

ନିତି ନିତି ସେଥିପାଇଁ ଆସେ ପ୍ରାଣେ ନିମନ୍ତ୍ରଣ କା'ର
ସେଥିପାଇଁ କ୍ଷୁଦ୍ର ହିୟା ଉଡ଼ିବୁଲେ ସମସ୍ତ ସଂସାର,
ନିଖିଳ ବକ୍ଷରେ ପଶି ଖୋଜେ ଖୋଜେ ଜୀବନର ଡାକ

ହୃଦୟ ଆଲୋକ,
ନ ପାଇଲେ କାହିଁ, ପୁଣି ଖୋଜିବାକୁ ବିଶ୍ୱରେ ବାହାର ।

ଉଉରଳ ଯଉବନ, କେତେ କାଳ ଥିବ ଉଉରଳ,
ପରୀରାଣୀ ଦେଉଥିବ କେତେ କାଳ ଚୁମ୍ବନ କୋମଳ,
କେତେ ଦିନ କ୍ରୀଡ଼ା କରି ସ୍ୱପ୍ନ ସଙ୍ଗେ ତେଜି ବାସ୍ତବତା

ଲଘୁ ମଧୁରତା
ପାଉଥିବ ଜ୍ୟୋତ୍ସ୍ନା ସଙ୍ଗେ ରତିକ୍ରୀଡ଼ା ନୀରବ ତରଳ ?

ଯାହା ଘଟୁ ଏ ଜୀବନେ, ବକୁଳର ସୁରଭି ତରୁଣ,
ପାଏଁ ଯେହ୍ନେ ପ୍ରାଣେ ପ୍ରାଣେ । ଭାସୁଥାଉ ପ୍ରଣୟ-ଅରୁଣ
ଜଗତର କୋଟି ହିୟା-ଡାକ ଶୁଣେ ବିମୁଗ୍ଧ ପିୟାସେ

ସାନ୍ତ୍ୱନିବା ଆଶେ,
ଧାଉଁ ଏ ବୁକୁଟି ମୋର ଦିଗେ ଦିଗେ ଯୌବନ-କରୁଣ ।

[ ଲେଖାକାଳ ସମ୍ଭବତଃ ୧୯୩୦-୩୧ ]

# ସୌନ୍ଦର୍ଯ୍ୟ ଓ ସଂସାର

କାବ୍ୟ-ପ୍ରିୟ କଲେଜ୍ ଛାତ୍ର ଜଣେ,
(ଯାହାଁକ ସଂଖ୍ୟା ବହୁତ ବୋଲି ମୁଁ ଜାଣେ)
ବାପର ଖର୍ଚ୍ଚେ ହେବାରୁ ବିଦ୍ୟା-ଚର୍ଚ୍ଚା
ଚିତ୍ତ ଯାଁକର ରହିଥେ ଅତିହିଁ ଫର୍ଚ୍ଚା,
ପୋଷାକ-ପତ୍ର ବହର ସଙ୍ଗେ, ଗନ୍ଧଦ୍ରବ୍ୟର ଲହର,
ବନ୍ଧୁ ମେଳେ ସିଗାର-ଧୂମେ
କେବଳ ଥାଏଟି ଚାଲି
ଫିଲମ୍-ତାରକା ଚର୍ଚ୍ଚା ପ୍ରହର ପ୍ରହର ।

ଚଶମାଟାଏ ଆଖିରେ ଥାଏ – ଡାକ୍ତରଙ୍କ ଦାନ,
ସେଟା କିନ୍ତୁ ଯଥେଷ୍ଟ ନୁହେଁ ଅଛି ତାର ପ୍ରମାଣ ।

ଜଗତ୍‌ଟାକୁ ଦେଖିବା ପାଇଁ ଚଶମା ଏକ ଆଉ
ଯୌବନ ଯେ ଯାଇଛି ଦେଇ, ଯେବେ
ବିଂଶ ହେଲା ଆୟୁ ।

ସେ ଚଶମାରେ ଜଗତ୍ ଦିଶେ ରଙ୍ଗିନ୍
ସାମାନ୍ୟ ଯା ଘଟଣା ଦିଶେ ସଙ୍ଗୀନ୍
ଘର୍ମମୟ ଜୀବନ ଦିଶେ ନର୍ମମୟ ବୋଲି
ଚର୍ମ-ଗଣ୍ଡ ଦିଶେ ସ୍ୱର୍ଣ୍ଣ ହୋଇଲା ପରି ବୋଲି ।
ଏପରିକା ଯେ କଲେଜ୍ ଯୁବା,
ନୋହୁଁ ସେ ଗ୍ରାଜୁଏଟ୍
ପ୍ରାଣର ଦୋସର ଅନ୍ୱେଷଣେ ହୋଇଲେ ଛଟରପଟ୍ ।

ପର୍ଦ୍ଦା ଆଉ ରଙ୍ଗମଞ୍ଚ, କାବ୍ୟ, ନାଟ୍ୟ-ଗୀତ
ସର୍ବେ ମିଶି ଚିତ୍ତ ତାଙ୍କ କରିଲେ ଉଦ୍‌ବେଳିତ;
କରିଲେ ସେ ଯେ ସ୍ଥିର,
ତରୁଣୀ ବିନା ତରୁଣ ପ୍ରାଣ ଏକାନ୍ତ ମାଟିର ।

ଭାଗ୍ୟେ ସେ ସାଲ୍ ଡିଗ୍ରି-କଳସ
ତରୁଣ ଗଲେ ପାଇ,
ଡଜନ୍ ଡଜନ୍ କନ୍ୟାପିତା ଚକିତ ହେଲେ ଚାହିଁ,
ବିଦ୍ୟା, ରୂପ, ସଂପଦ ବା କିଛିର ଅଭାବ ନାହିଁ,
ଏଇ ତ ଠିକ୍ ଆମର ଲକ୍ଷ୍ମୀ ପାଇଁ !

କାବ୍ୟପଢ଼ା ତରୁଣ କିନ୍ତୁ କରିଲେ ସିଦ୍ଧାନ୍ତ
ପାଆସ୍‌କରା ତରୁଣୀ ନେଇ ନହେବେ ପ୍ରାଣାନ୍ତ !

କଣ୍ୱାଶ୍ରମେ ଶକୁନ୍ତଳା
ଅନାଘ୍ରାତା, ସୁପୁଷ୍କଳା,
ଅନଭିଜ୍ଞା, ସ୍ୱସଂପୂର୍ଣ୍ଣା,
ମଧୁରଶୀଳା, ସ୍ୱର୍ଣ୍ଣବର୍ଣ୍ଣା —

ଏପରି ଏକ ଲଜ୍ଜାବତୀ ସୁନାର ପ୍ରତିମୂର୍ତ୍ତି
ପାଇଲେ ଯାଇଁ ହୋଇବ ତାଙ୍କ
ରୂପ-କ୍ଷୁଧାର ପୂର୍ତ୍ତି !
ତାହାହିଁ ହେଲା । କିତାବୀ-କନ୍ୟା-ପିତା-ମାତାଙ୍କୁ ଭାଁଗି
ପଲ୍ଲୀ-କନ୍ୟା ବାଛିଲେ ଶେଷେ, ନିଜସ୍ୱ ଶୋଭାଙ୍ଗୀ ।

କେଉଁ ସେ ଏକ ଗ୍ରାମ୍ୟ ଜମିଦାର
ବେୟାଜେ ଗଢ଼ା ଯାହାଁକ ଘରଦ୍ୱାର,
ପଦ୍ମ ପରି ପଂକିଳ ପଲ୍ଲୀକେ
ମା-ଓଳି-ଆଣି ଫୁଟିଥିଲା ସେଇ ଘରେ
ଅନିନ୍ଦ୍ୟ ରୂପସୀ
କନ୍ୟା ସେ ଯେ ଯୁଗ୍ମ-ଚତୁର୍ଦ୍ଦଶୀ ।

ମାଆଠୁ ସିନା ପାଇଥିଲା ସେ ବାହାର ଆବରଣ,
ଭିତରେ ଆତ୍ମା, ମନ
ଠିକ୍ କିନ୍ତୁ ଥିଲା ବାପର ପରି, –
ଅତି ପ୍ରାକ୍‌ଟିକାଲ୍, ଏକଟଙ୍କା ମାଲ୍
କିପରି ହେବ ଦୁଇଟି ଟଙ୍କା, ଜାଣେ ସେ ଉତ୍ତମେ
ସଂସାରଟା ସଂସାରଇ
ଥିଲା ସେ ନବ ନାୟିକା ନୟନେ ।

ତରୁଣ ସେ ଯେ ନିଜେ
କରିଣ ସେଠି ବିଜେ,
ଦେଖିଲେ ଯେବେ ତା ଦେହ-ଲତା ପଲ୍ଲୀ-ଭୂମିକାରେ
କ୍ଷେତ୍ରମାଳେ, ପୋଖରୀ କୂଳେ, ଅମ୍ବତୋଟାମାଳେ,
ଠିକ୍ କଲେ ଶେଷେ
ଯା' କହୁ, ଯେ' ସେ,
ସେଇ ହିଁ ହେବ ଅଂକ-ଲକ୍ଷ୍ମୀ ଦେହ-ମନ-ସଙ୍ଗିନୀ,
ଶୁଷ୍କ, ନିଠୁର ଯାତ୍ରା-ପଥେ ଜୀବନ-ସଂଜୀବନୀ ।

କେତେକ ମାସ ପରେ
ବସ୍ତ୍ର ଭୂଷଣରେ,
ସେହି ସେ କନ୍ୟା ନୂତନ ବଧୂରୂପେ
ପଶିଲେ ଯେବେ, ପୁଷ୍ପ-ଶେଯର
ଉଷ୍ମ ଅନ୍ଧକୂପେ,
ବ୍ୟଗ୍ର ତରୁଣ ରହିଲେ ଚାହିଁ ଅନିନ୍ଦ୍ୟ ସେ ମୁଖେ,
କହିବାର ଯା' ବହୁତ କଥା ରହିଗଲା ତା ବୁକେ ।

କ୍ରମେ କିନ୍ତୁ ଆସ୍ତେ ଆସ୍ତେ
ହୋଇଲା ଆଳାପନ,
ହସ୍ତଗତ ହେଲା ତ ଶେଷେ ପ୍ରାଣର ସେ ସ୍ୱପନ !

ତରୁଣ ତେଣୁ ପୁଚ୍ଛନ୍ତି ବିଚାରି
ଅନ୍ତସ୍ଥଳର କଥା ଦୁଇ ଚାରି –
''ଗାଆଁକୁ ତମର ଯାଇଥିଲି ଯା,
କଅଣ ମନେକଲ ?''
ଉତ୍ତରେ ସେ କହିଲେ ନବ୍ୟା ବଧୂ-
''ଶୁଣିଲି ବାବୁ ଆସିଛି ପରା,
କରିବେ ଆମ ଗ୍ରାମେ ଟିକସ ଅସୁଲ ।''
''କେହି କି ସତେ ନ ଥିଲେ କହି,
ବିଭା ହେବାର କଥା ?''
କହିଲେ ବଧୂ ନୁଆଁଇ ଛୋଟ ମଥା,
''ବହୁତ ପରେ ସାଙ୍ଗ-ସୁଂଗା କରିଲେ ମତେ ଥଟ୍ଟା ।''
''ଜାଣିଲା ପରେ ?'' –
ଜବାବ୍ ନାହିଁ !
ଜବାବ୍ ନାହିଁ !
ତରୁଣ ଚାହିଁ
ସ୍ୱର୍ଣ୍ଣ-ମୁଖେ ପଚାରିଯାନ୍ତି ପୁଣି,
''ବିଭା ହେବାର ଘଟଣା ଶେଷେ ଶୁଣି
କଅଣ ତମେ ଭାବିଲ କହ ସତେ !''
''କାନ୍ଦ ମାଡ଼ିଲା ମତେ !''
ସ୍ତମ୍ଭିତ ତରୁଣ,
ବଦନ ଲଜ୍ଜାରୁଣ
ହୋଇଲା ତାଂକ, ଭାବିଲେ ମଜ୍ଜାରେ –
ଏଇ କି ତେବେ ଏ ବାଳିକାର ପ୍ରଣୟ ମୋହଠାରେ ?
ଦମ୍ଭ ଧରି ପୁଣ, ସୁନ୍ଦର, ମଉନ
ବଧୂ ବଦନ ଟିକାଏ ଟେକି ଜିଜ୍ଞାସିଲେ ହସି
କାନ୍ଦିଲ କାହିଁପାଇଁ ?
ବିବାହଟା କି ବିପଦ୍ ନା କ'ଣ,
ବିଭୀଷିକା ପାଇ ?''
ନିମ୍ନସ୍ୱରେ ଅର୍ଦ୍ଧସ୍ମିତେ କହିଲେ ନବପ୍ରିୟା,
''ବାପା ବୋଉକୁ ଛାଡ଼ିଗଲେ କି ନାହିଁ ବାଧିବ ହିୟା ?''
''ତା' ତ ଠିକ୍'' – କହିଲେ ଯୁବା
''ସାରା ଦିବସ ରାତି

ସେଥିପାଇଁ ତ ନକାନ୍ଦେ କିଏ ଫଟାଇ ଚିତ୍ତ, ଛାତି ?
କେତେବେଳେ କି, ବସୁଁ ଏକାକୀ
ଘରେ ଅବା ବାହାରେ,
ଏ ଲୋକକଥା ନ ଉଠୁଥିଲା ଟିକିଏ ହିଆରେ ?
ଗାଆଁରୁ ତମର ଫେରିଲା ଦିନୁ
ତମର ମଧୁର ସଂଗ ବିନୁ
ଦିନ ଯେ କଟେ, ଜାଣନି ତମେ
ଜରୁଆ ମଲୁ ପରି,
ଖାଏନି ଭାତ, ଶୁଣେନି ଗୀତ
ତୁମକୁ ସ୍ମରି ସ୍ମରି ।
ସତଟି କହ, ସରମ ଛାଡ଼ି,
କେବେ କି ହେଲେ ମନେ
ନ ଭାବୁଥିଲ, ତମ ପାଇଁ ଯେ
ମରଇ ଅନୁକ୍ଷଣେ !''
''ଭାବୁଥିଲି, ହଁ !'' –
ଶୁଣି ସେ ପଦ ଉଦ୍‌ଗ୍ରୀବ ରସିକ
ଜିଜ୍ଞାସଁତି, ''କି ଭାବୁଥିଲ,,
କହ ତ ମତେ ଠିକ୍ ।
କିପରି କିସ ?''
କହଁତି ବଧୂ, ''ପଡ଼ଁତି ଏ ମନରେ
ସଭିଏଁ ଯେହ୍ନେ, ତୁମକୁ ସ୍ମରେ ସେପରି
ଥରେ ନା ଥରେ !''
''ସଭିଙ୍କ ପରି ମୁହିଁ କି ଜଣେ,
ଅଧିକା କିଛି ନାହିଁ ?
ସ୍ୱପ୍ନ ନାହିଁ ଦେଖୁଥିଲ କି ଆମର ମିଳନ ପାଇଁ,
ମୋହରି ସାଥେ, ବିଜନ ରାତେ, ଦକ୍ଷିଣା ବତାସେ
ପ୍ରାଣର କଥା ଶୁଣିବା ପାଇଁ ନିବସି ପାଶେ ପାଶେ ?''
କହିଲେ ବଧୂ, ''ଭାବିବା ପାଇଁ ବେଳ ତ ଥିଲା ନାହିଁ,
ଖଟଣି ଖଟି ନ ଥାଏ ବେଳ ବେଳର ଅନ୍ନ ପାଇଁ !''
''ଏତେ ବା କାମ କି ଥିଲା ତବ, କି ଅବା ପୋଡ଼ା କାମ ?''

''ବୋଉ ତ ମତେ'' କହିଲେ ବଧୂ ''ନାହିଁ ନିଏ ବିଶ୍ରାମ''
ଶାଶୁଘରକୁ ଆସିବି ବୋଲି ଖଟାଇ ଦିନରାତି
ନାନା କାମରେ କଲା ସେ ମତେ ଜଳନ୍ତା ଇଟାଭାଟି ।
ସାଇ-ପଡ଼ିଶେ କହଇ ପୁଣି – ଏମିତି ହେବ ଗଢ଼ା
ସାବୀଟି ମୋର, ପରଶଂସିବେ ଶଶୁର ଶାଶୁ ଦୁହେଁ
ଏ ମୋର ହାତର ଗଢ଼ା ।

କାହାରି ହେଲେ ଖୁଣିବା ପାଇଁ ନାହିଁ ନ ଥିବ ବାଟ,
ଯହିଁ ସେ ଯିବ ଧନ୍ୟବାଦ ପାଉଥିବ ଏ ହାତ ।
ଏମିତି କରି ଘଷିପରାଠୁ ରୁମାଲ୍‌ବୁଣା ଯାଏଁ
ଖଟି ଖଟି ତ ଶୋଇବାକୁ ହିଁ ବେଳ ମୋ ନାହିଁ ଥାଏ !''

ଶୁଣିଲେ ସେ ତରୁଣ
ବିରକ୍ତିରେ ଏଥର ତାଙ୍କ ସ୍ୱପ୍ନକୋମଳ ମୁଖ
ହୋଇଲା କ୍ରୋଧାରୁଣ,
ବିଚାରହୀନ ସମାଜ ପ୍ରତି ଛାଡ଼ିଲେ ତୀକ୍ଷ୍ଣ ଶର –
''ବଧୂ କି ଖାଲି କରିବ ସେବା ଶ୍ୱଶ୍ରୂ-ଶ୍ୱଶୁରର ?
କାହିଁ ଗଲା ସେ କାବ୍ୟଚର୍ଚ୍ଚା,
ଯୌବନର ରୋମାଣ୍ଟିକ୍ ପତ୍ର-ବିନିମୟ ?
କାହିଁ ଗଲା ସେ ଶକୁନ୍ତଳାର ଧ୍ୟାନ ବା ସ୍ୱପ୍ନମୟ ?
ଶିକ୍ଷା କ'ଣ ଚୁଲିଜଳା ଓ ପୋଡ଼ପିଠା ପ୍ରସ୍ତୁତି,
ଖୁଡ଼ୀଶାଶୁର ଚରଣସେବା, ପାଳିବା ପୁଣି ଅଧଡ଼ଜନେ କୁତୀ !
ନିଶ୍ଚେ ହେବ ଧ୍ୱଂସ,
ଯେଉଁ ସମାଜ ସୌନ୍ଦର୍ଯ୍ୟକୁ ଏପରି ନୃଶଂସ !''*

---

* ଲେଖାକାଳ ବୋଧହୁଏ ୧୯୩୪-୩୫, ଯେତେବେଳେ ଲେଖକ ନିମାପଡ଼ାରେ ଶିକ୍ଷକ ଥିଲା । 'ସହକାର'ରେ ପ୍ରକାଶିତ ହୋଇଥିଲା – କିନ୍ତୁ କେଉଁ ବର୍ଷ, କେଉଁ ସଂଖ୍ୟା ମନେନାହିଁ । କଥନ-ଛନ୍ଦର ପରୀକ୍ଷା ଏଇ କବିତାରେ ପ୍ରଥମ ଥର ପାଇଁ କରାହୋଇଥିଲା; ତେଣୁ କେତେକ ଛନ୍ଦ-ପ୍ରମାଦ ରହିଯାଇଥିଲା । ସେଗୁଡ଼ିକୁ ଯଥା-ସମ୍ଭବ ସଜାଡ଼ିଦେବାର ଚେଷ୍ଟାଯୋଗୁହିଁ ଯାହା କିଛି ବର୍ତ୍ତମାନର ବିଶିଷ୍ଟ ପରିବର୍ତ୍ତନ । ପଠନର ସୌକର୍ଯ୍ୟ ପାଇଁ ଧ୍ୱନି ଅନୁରୋଧରେ ସ୍ଥାନେ ସ୍ଥାନେ ଅକ୍ଷର ଓ ମାତ୍ରା ସଂଖ୍ୟା ଜାଣି ଜାଣି ବିଷମ ରଖାଯାଇଛି ।

# ତଳିଆ ଜୀବର ବିଳାପ

## ରିକ୍ସାବାଲା

ରାତି-ପାଳିଆ ରିକ୍ସାବାଲା ସଂଜେ ବାହାରେ,
ସାରାଟି ରାତି ଘୂରିଘୂରିକା କଟକ ରାହାରେ ।
ସକାଳେ ଫେରେ ଚା'-ପାଣି ପିଇ ଛଅଟି ଅଣାର,
ଧରମ ରଖେ; ତା'ପରି ଆଉ କାହିଁଛି ଭୋଖ-ମାର ?
ବାକୀ ଯା ଥାଏ ତହିଁରୁ ନିଏ ମାଲିକ, ତା' ପାଉଣା,
ବାକିଟି ଧରି ଫେରେ ମୁଁ ଭରି ଗରିବ ମୋ' ମୁଣା ।
କେ'ଦିନ ବଁଚେ କେ'ଦିନ ନାଇଁ ନ ଥିଲେ ଉପବାସ;
ଉପାସରେ ବି ରିକ୍ସା ଭିଡ଼େ, ନ ହେଲେ କାହୁଁ ଗ୍ରାସ ?
ଗଳାରେ ମୋର ଓହଳା ପରା ସାତଟି ଜୀବନ,
ଝିଅ, ପୁଅ, ତା' ମାଆ, ଭଣଜା, ବାପା-ମା ଦି' ଦି' ଜଣ ।
ମୋ ଦୁଃଖ ଶୁଣି କେହି କି ହେଲେ କରିବେ ପରତେ ?
ସବାର୍ ସବୁ ଚାହାଁତି ଯିବେ ମାହାଳିଆ ସତେ ।
ରାତିକି ରାତି ବାବୁଏ ଯାଁତି ସିନେମା ଥେଟର୍
ଘଡ଼ିକ ପାଇଁ ହୁଏ ଯା ବେୟ ମାସକ ମୋ ପେଟର ।
ପଇସା ଗୋଟେ ମାଗିଲେ ବେଶି ଯାଆଁତି ବାବୁ ରାଗି,
ବୁଝିବେନି ସେ ଉପାସ ଯିବି ପଇସାଟି ଲାଗି ।
ବାବୁଏ ବସି କହଁତି ଖୁସି "ମଠୁଆଟାଏ ଖାଲି !"
ସେତକ ବାଟ କିଇ ଯେ ବାଧା, ଜାଣଁତେ ସେ କି ଚାଲି !
ନରର ଦୁଃଖ ବୁଝେନା ନର ବୁଝିବ କିଏ ଆଉ ?
ବାବୁଏ କ'ଣ ଜାଣିବେ କେବେ ଭୋକିଲା ପେଟଦାଉ ?

## ମଜଦୁର

ଚଟକଳେ ମୁଁ, ଓଡ଼ିଆ କୁଲି କଳର ଏକ ଚକ
ଖଟିଖଟିକା ସାରାଟି ଦିନ ଉଡ଼ିଯାଏ ମୋ ଧକ ।
ଛାଡ଼ି ଆସିଛି ଦୂର ମୋ ଗ୍ରାମେ ପତ୍ନୀ, ପିଲାପିଲି,
ନସହିପାରି ଭୋକରେ ତାଁକ ହୋଇବା କିଲିବିଲି ।
ଛାଡ଼ି ଆସିଛି ପଡ଼ିଆ, ବଣ, ବିଲ, ପାହାଡ଼, ନାଳ,
ଚରାଇ ନେବା ଗାଁ-ଗୋରୁପଲ ସୁଦାମ ବିଶ୍ୱାଳ ।

ଉଠୁଣୁ ବସୁ ପଡ଼ୁଁତି ମନେ ଗାଁ, ଘରର ଲୋକେ,<br>
ସହରଠାରୁ କେତେ ସେ ଭଲ; କୁଡ଼ିଆଟିରେ ଭୋକେ ।<br>
ଯାଇପାରୁନି ଗାଆଁକୁ ମୋର ଯିବିଯିବିକା ବୋଲି,<br>
ତିନି ବରଷ ହେଲା ମୁଁ ଛାଡ଼ି ଆସିଛି ପିଲାପିଲି ।<br>
ଗାଁ ଅବଧାନ ହାତରେ ଚିଠି ଲେଖି କୁଳିଆ-ମାଆ,<br>
କହିଲାଣି ସେ ଅନେକ ଥର 'ଲାଭ ନାହିଁ, ଚାଲିଆ !<br>
ପରବାସରେ କି ଲାଭ ଏତେ ଘରଦୁଆର ଛାଡ଼ି,<br>
ଗାଆଁ ଗହଳେ ମୂଲିଆ ପାଇଁ ଲୋକ ତ ବାଡ଼ାବାଡ଼ି !'<br>
ଗାଆଁ ମଜୁରି- ଠାରୁ ଯେ ଏଠି ଅଧିକା କିଛି କରେ<br>
ଆସେ ତା' ମାନିବାକୁଇ ହେବ; କେବଳ ସେ ଲୋଭରେ<br>
ପଡ଼ିଛି ଏଠି । ଅଧିକା ଯହିଁ ପଇସେ ହେଲେ ପାଏ,<br>
ଛାଡ଼ିବି କିଆଁ ? – ସେଥିରେ ମୋର ଦିନକ ଚଳିଯାଏ !<br>
ମୁଣ୍ଡ ଗୁଞ୍ଜି ଅଛି ଯା ଏକ ବାବୁର ବାରନ୍ଦାରେ;<br>
ସେତକ ପାଇଁ ବାବୁର ସେବା ସଞ୍ଜେ ଓ ସକାଳେ ।<br>
ଟିକିଏ କିଛି ବଖଡ଼ା ହେଲେ ନିଆଁ ସେ ବାବୁଆଣୀ<br>
କହିବେ, 'ବେଟା ଖାଇଁକି, ଘରେ ରଖିଛି ତତେ ଆଣି ?'<br>
ଖଟିଖଟିକା ଦେହ ହେଲାଣି କେବଳ ଚମ ହାଡ଼,<br>
ନ ଖଟିଲେ ମୁଁ ପିଲେ ମୋ କାହୁଁ ପାଇବେ ଖୁଦାହାର ?<br>
ଅରଜେ ଯାହା ଅରଧେକ ତ ନିଏ ସେ ସରଦାର,<br>
ବଳିବ କେତେ ଚଳିବୁ କାହୁଁ ମୁଁ, ଆଉ ପରିବାର ?<br>
ଧିକ ଜୀବନ, ପିଲାପିଲିର ସେନେହ ସମାଦର<br>
ନ ପାଇ ଏଠି ଖଟିବା ନିତି ବିକଳ ଅବିରଳ ।<br>
କି ପାପଫଳେ ବିଧାତା କରେ ଏମିତି ଛଡ଼ାଛଡ଼ି<br>
ଗରିବ ଠାଏ ନ ପାରେ ରହି କୁଟୁମ୍ବ ତା' ଧରି ।<br>
ବଡ଼ଲୋକର ଛାତିରେ ଅଛି କେବଳ ସ୍ନେହ-ପ୍ରୀତି;<br>
ଦୁଃଖୀର ନାହିଁ ? ବଡ଼ଲୋକେ କି ଭାବଁତି ଏଇମିତି !<br>
ଅଫିସି ଘରେ ଦେଖିଛି ଥରେ ଟଙ୍କା ଥଳି ଥଳି –<br>
ସମସ୍ତ ତା ଜଣେ ଲୋକର; ନ ପାରେ ଚିତ୍ତ କଳି !<br>
ଜଣେ ଲୋକର ଏତେ ଯେ ଧନ, ଶୂନ୍ୟ କୋଟି ଲୋକ,<br>
ଜଣେ ଲୋକର ଭୋଜି, ବିଳାସ ଆଉ ସବୁର ଭୋକ ।<br>
ଏ କି ବିଚାର ଲୋକ ହଜାର ଖଟିଖଟିକା ମରେ<br>
ଗୋଟାଏ ଲୋକ ବସି ବସି ତା' ବାକ୍ସ ଭର୍ତ୍ତିକରେ ।

## କୃଷକ

ଧରାତଳେ କ୍ରୂର ପରିହାସ
କାଟି ଶସ୍ୟ, ରହେ ଉପବାସ ।
ସକଳେ ଯେ ଯୋଗାଏ ଭୋଜନ
ନିଜ ଥାଳେ ନାହିଁ ତାର ଅନ୍ନ ।
ତା' ଥାଳିରୁ ଭାତ ନେଇ କାଢ଼ି,
ଦେଖ ବଡ଼ଲୋକ-କୋଠା-ଗାଡ଼ି ।
ସ୍ତିରୀ ତାଙ୍କ ବୁଲନ୍ତି ମୋଟରେ
ପିଲେ ଛନ୍ତି ସୁଖ ବିଳାସରେ ।
କୃଷକ ମୁଁ, ଅଧା ଉପବାସ,
ଆଶ୍ରୟ ମୋ ଭଙ୍ଗାରୁଜା ବାସ ।
ପିଲା ମୋର ଜରେ ଜରଜର,
ଦେବି କାହୁଁ ଓଷଦପତର ?
ଦୁଇ ମାଣ ଜମି ବନ୍ଧା ଦେଇ,
ଅଛି ଝିଅ ପୁଆଣୀ ପଠେଇ ।
ସ୍ତିରୀ ମୋର ଗୋଟିଏ ଲୁଗାରେ
ବରଷକ ଚଳଇ ଲଜ୍ଜାରେ ।
କିଣିବାକୁ ବସ୍ତ୍ର ନିଜ ପାଇଁ
(ଲଜ୍ଜାକଥା) ବଳ ମୋର ନାହିଁ ।
କାନଗୋଇ ବାବୁ ଯେ ସେ ଦିନ
ଆସିଥିଲେ; ଯିବି ବାସ-ହୀନ
କେମନ୍ତେ ମୁଁ ? ପୁଅର ବସନ
କାନ୍ଧେ ଦେଇଁ କଲା ସେ ରୋଦନ;
ଚାପୁଡ଼ାକେ ତୁନିକଲି ତା'ରେ
ସିନା, ଛୁରୀ ଲାଗିଲା ହିଆରେ ।
କି କରିବୁ ଗରିବ ତ ଆମେ,
ବଞ୍ଚୁ ଦୁଃଖେ ପଥର ସମାନେ ।
ଦେବା ପାଇଁ ଖଜଣା ଏ ସାଲ,
ସ୍ତିରୀ ନୋଥ ନେଲା ସାହୁକାର ।
ଝୁଅ ଆସି କହିଗଲା ମତେ,
ବୋଉ କାନ୍ଦୁଥିଲା ବାରିପଟେ ।

ସେ ବିଚାରୀ ହାତ ମୋର ଧରି
ଦୁଃଖେ ହୋଇଅଛି ସହଚରୀ;
ଲୁଗାଟିଏ, ଅଳଙ୍କାରଟିଏ
ଦେବି କ'ଣ, ଦେଇ ତୁଚ୍ଛା ସିଏ ।

ଚିରଦିନ ରହି ନିଅଁଟିଆ
କେତେ ଦିନ ହୋଇବି ମୁଁ ଠିଆ ?
ଚଉକିରେ ଖାଲି ବସି ବସି
ନେଉଁଛତି ବାବୁ ଟଙ୍କା କଷି ।
ଅକାଳେ ବି ଆମଠୁ ଖଜଣା,
ନେଇ ଗନ୍ତାଘରେ ହୁଏ ଜମା ।

ଛୁଟିରେ ବି ବାବୁଏ ଦରମା
ପାଇ ବାଙ୍କେ କରିଥାନ୍ତି ଜମା ।
ଆମେ ସବୁ ଖରା ବରଷାରେ
ଖଟି ଖଟି ଚଳୁ ହାହାକାରେ ।

ନ ଖଟି ଯେ ବସେ କୁରୁଚିରେ
ହାକିମ ସେ, ଆମ ପରେ ଚିଡ଼େ ।
ବିଧାତାର ଏଇ ପରିହାସ
ଅନ୍ନକାରୀ ରହେ ଉପବାସ !

## ବଢ଼େଇ

ମୋହରି ନିହଣ, ବାରିଶି ଗଢ଼େ ଲୋକଙ୍କ ଘର;
ମୋ କୁଡ଼ିଆ ସେଇ କୁଡ଼ିଆ ଭଙ୍ଗା, ଅଣ-ଛପର ।
କୁରୁଚି, ବେଁଏଚ ତିଆରେ ବାବୁମାନଙ୍କ ପାଇଁ,
ସାଆନ୍ତାଣୀମାନେ ଶୋଇବେ, ଦିଏ ଖଟ ଯୋଗାଇ ।

ମୋର କିନ୍ତୁ ଛିଣ୍ଡା ସନ୍ତରା, ମାଟି ପରେ ଶୟନ,
ରୋଜଗାର ପେଟେ ନିଅଁଟ ଅଶୋଭନ ବସନ ।
ଅଧିକା ଦି'ଅଣା ମଜୁରି ଦେଲେ ଆମକୁ ଦିଶେ,
ବିଦେଶୀ ବେପାରୀ ଖାତାରେ କେତେ ହଜାର ମିଶେ ।

ଭଲ କାମ ବାବୁ ମାଗନ୍ତି କିଛି ଆପତ୍ତି ନାଇଁ,
ଭଲ କାମ ହୋଇପାରେ କି ଚିର ଅଭାବେ ଥାଇ ?

## କିରାଣି

ଖାଟି, ଖାଟି, ଖାଟି,
ମନରେ ହୁଏ ପଡ଼ିବ ଅବା
ଅଣ୍ଟା ମୋର ଫାଟି !
କେମନ୍ତେ ସମ୍ଭାଳି
ତିରିଶ୍ ମୁଦ୍ରା ଦରମାକୁ ମୋ
ଛ-ପ୍ରାଣୀ କୁଟୁମ୍ବ ମରଇ ଭାଳି ଭାଳି ।
ସନ୍ତାନ-ସନ୍ତତି
(ବିଧାତାର ସେ ଏକହିଁ ଦୟା !)
ଅଳ୍ପ ତ ନୁହନ୍ତି !
ଦୁଗ୍ଧ ପାଏ ନାହିଁ,
ତାଙ୍କ ଭୋକ ମାରିବା ପାଇଁ
ଚାହାଟି ଦିଏ ପ୍ୟାଇ ।
ଶିକ୍ଷା ଅଛି ପୁଣି,
ପ୍ରତିଟି ବର୍ଷ ମଲିଣି ମୁଁ ଯେ
କିତାପ କିଣି କିଣି ।
ଅଛି ତ ଲୁଗାପଟା,
ଅଛି ତ ତେଣେ ସାମାଜିକତା
ଘରଭଡ଼ାର ହଟା !
କେ କହିବ ରେ ପାପ,
ବିବେକ ଚିପି ରିସିପତକୁ ବଢ଼ାଏଁ ଯେବେ ହାତ ?
ଅଫିସି ହାକିମ,
ହଜାରେ ଟଙ୍କା ଦରମା ପରେ ଟୀ.ଏ. ଇ ଅସୀମ;
ତଥାପି ଅଭାବ
ତିରିଶ୍-ଟଂକିଆ କିରାଣିଟି ସେ କିପରି ଚଳେ ଭାବ !

## କଳା-ସେବକ

ଋଗ୍‌ବେଦ, ଇଲିୟାଦ, କୋଣାର୍କ,
ଯେ ରଚିଲେ ପୁଣି, ତାଜମହଲ,
ରୁକ୍ଷ ଧରଣୀ କରିଲେ ଯେହୁ
ରୂପେ, କବିତାରେ ରସୋଜ୍ଜ୍ୱଳ ।

ଆମେ ସେ ଦଳର ଲେଖକ, କବି,
ଚିତ୍ରୀ, ଶିଳ୍ପୀ, ଗାୟକ-ଜାତି,
ମାନବ-ମନର ମରମ କଥା
ଆମରି ହାତରେ ରୂପ ପାଆଁତି ।
ବଣୁଆ ମଣିଷ ଆମରି ଯୋଗୁଁ
ଚିକଣା ଆଜି ରେ ବସନେ, ବାସେ
ସୁକୁମାର ତା'ର ଜୀବନ-ଭୋଗ,
କହଇ କଥା ସେ ଲଳିତ ଭାଷେ ।
ଯଉନ-କରମୁଁ ରୁବାଇୟାତ,
ଶକୁନ୍ତଳାକୁ ସୃଜିଛୁ ଆମେ,
ରଚିଛୁ କାବ୍ୟ, ତୋଳିଛୁ ଗିର୍ଜା
ପ୍ରତିମା ଥାପିଛୁ ବିଧାତା ନାମେ ।
ଅମର, ମଧୁର ଯା କିଛି ବିଶ୍ୱେ
ଜୀବନ ପାଇଛି ଆମରି ପାଇଁ,
ଜନ୍ତୁ-ମଣିଷ ହୋଇଛି ଭବ୍ୟ
ଆମରି କଳାର ପରଶ ପାଇ ।
କିନ୍ତୁ ଅଭାଗା ବାଣୀର ପୁତ୍ରେ
ଆମେଇ ବଞ୍ଚୁ ରେ ନୟନ-ନୀରେ,
ହାକିମ, ଧନିକ ବିଳାସେ ଭାସେ
ସୁଖରେ ଶୁଅନ୍ତି ଶାନ୍ତ ଶିରେ ।
ହୋମର୍ ବଞ୍ଚିବ ଭିକାରି ହୋଇ,
ମେହେର ବଞ୍ଚିବ ହୋଇ ଗୁମାସ୍ତା,
ଧନୀର ଦୟାକୁ ରହିବେ ଚାହିଁ,
ସେକ୍ସପିୟର; — ଏ କି ବ୍ୟବସ୍ଥା ?
ଗୋଷ୍ଠୀ-ଗୃଧ୍ର ହେ ଧନୀ, ମନ୍ତ୍ରୀ,
ତୁମେ ରାଷ୍ଟ୍ରର ଭୋଗିବ 'ସର'
ପିକ, ବୁଲ୍‌ବୁଲ୍ ଭାଗ୍ୟେ ଖାଲି
'ଫୋପଡ଼ା', ତମରି ଉଚ୍ଛିଷ୍ଟର !

## ସ୍କୁଲ-ମାଷ୍ଟର

କିଏ ସେ ଗଲେ ମୋଟର ଚଢ଼ି ?
ହାକିମ ଡି.ପି.ଆଇ. ?

କପାଳ ଭଲ, ମହାମହିମ
ନାହାନ୍ତି ମତେ ଚାହିଁ ।
ସାମାନ୍ୟ ମୁଁ ମାଷ୍ଟରଟେ,
ସେ ମୋର ଧାତା ସମ,
ଭାଗ୍ୟ ମୋର ଓଲଟାଇବ
ତାଙ୍କ ବାଁ କଲମ ।
ସେହି କ୍ଷମତା କରଇ ତାଙ୍କୁ
ବିଦ୍ୟା-ବୁଦ୍ଧି-ପତି,
କହିବେ ଯାହା, ନ ମାନିବାକୁ
କାହାର ଅଛି ଗତି ?
କହିବେ ବାବୁ – ''ଶିକ୍ଷକତା
ଗୌରବ ମହତ୍,
ଦରମା ପରେ ନ ରଖି ଆଖି
ଚାଲ ମହତ୍ ପଥ ।
ଦେଶସେବା ଓ ଜାତିସେବାର
କାହିଁ ହେ ଥାନ ଆଉ ?
ଭଲ କି ଦିଶେ ଦରମା ପାଇଁ
ହୋଇବା କାଉ କାଉ ?
ସରକାରର ପାଣ୍ଠି କାହିଁ ? –
ହାୟରେ ହେ ବିଧାତା !
ସେ ହାକିମର ଟି.ଏ. ରେ ହିଁ ଯେ
କଲେଜ ପୋଷାଯାନ୍ତା ।
ଚିକଣା ମୁଣ୍ଡେ ତେଲ ଢାଳ,
ନୁଖୁରା ରହୁ ଶୁଖା,
ଆମ ଦେଶରେ ଆଦର୍ଶର
କି ସୁନ୍ଦର ମୁଖା !
ବଡ଼ ସାହେବ ବୁଝିବା ଉଚିତ
ମାଷ୍ଟ୍ରର ବି ପିଲା
ହୁଅନ୍ତି, ଭାତ ଖାଆନ୍ତି, ଭୋକେ
ହୁଅନ୍ତି କିଲିବିଲା ।
ପଢ଼ିବେ ପୁଣି ପିନ୍ଧିବେ ଲୁଗା
ଦେଖିବେ ଥିଏଟର,

ଷାଠିଏ ମୁଦ୍ରା କେଶନେ କରି-
ପାରେ ଏ ଚଳାଚଳ !
ମାଷ୍ଟ୍ର ଘରେ ଗହଣା ଲୋଡ଼ା,
ତା ଚୂଲି ଲୋଡ଼େ କାଠ,
ଝିଅର ବର ଲୋଡ଼ା ଓ ପୁଅର
ଜୋତା, କୋଟ୍, ଶାଟ୍ ।
ଏପାଇଁ ନିକି ପଇସା ପଡ଼େ ?
ଚାହିଁଲେ ମିଶେ ଚିତ୍ତ
ଦେଶ-ଦଶର ସେବା କରିବ
କିପରି ଯେ ଅ-ବିତ୍ତ ?
ଭଲେ ମୁଁ ଜାଣେ, ଠକେଇ କାମ
ଇସ୍କୁଲରେ କରେ,
ଅଚଳ ଯେଣୁ କୃତ୍ୟ, ଭାଇ
ବିନା ଟ୍ୟୁସନରେ ।
ବିବେକ ଯେବେ ଦେଖାଏ ଆଖି,
ଦିଏ ମୁଁ ଉତ୍ତର –
''ଉପର ସ୍ତରେ ଚାହାଁ ତ ଭାଇ,
ଦେଖ ତ କେହ୍ନେ କୁଟ,
କେବଳ ଠକର ଦଳ ।''

## କବି କହେ

ହେ ଭାଇ ଚଷା, ଶ୍ରମିକ, ଗୁଣୀ,
ରିକ୍ସାବାଲା, କିରାଣି ମାଷ୍ଟ୍ର,
ତୁମରି ଭାଗ୍ୟ ତୁମରି ହାତେ
ଜାଣ, ଏକଥା ହେଲାଣି ରାଷ୍ଟ୍ର ?
ପିଟିଲେ ମଥା, ଦେଲେ ବି ଖୁନ୍,
କେହି ରେ ଭାଇ ଶୁଣିବେ ନାହିଁ,
ଅର୍ଥ, ପଦ, ସ୍ୱାର୍ଥ ନରେ
ପଥର କରେ ଜାଣିଥା ଭାଇ ।

ତମେ ରେ ଭାଇ ଏକାଠି ହୁଅ,
ଏକାଠି ହୁଅ ମଣିଷ ପରି,
ଏକତ୍ରିତେ କରରେ ଦାବି
ବଞ୍ଚିବ ସଭ୍ୟ ମଣିଷ ଭଳି ।
ଚାଷୀ, ମଜଦୂର୍, କିରାଣି, ମାଷ୍ଟ୍ର
ପିଠିରେ ତମର ଚରଣ ଥାପି,
ଉପର ପାହି ହୋଇଛି ଛିଡ଼ା
ଏକଥା ମନେ ନିଅ ହେ ମାପି ।
ପିଠିକି ତମର ସଳଖ କର,
ପରସ୍ପରର ମୈତ୍ରୀ ମାଗ,
ଉପରବାଲା ଚାହିଁବେ ତଳେ,
ଧରାର ସୁଖ ହୋଇବ ଭାଗ ।
ପ୍ରଥମେ ତମେ ସକଳେ ଭାବ
ରାଜ୍ୟେ ତମର ପ୍ରାଧାନ୍ୟତା,
ଚାଷୀ, ମଜଦୁର୍, ମାଷ୍ଟ୍ର ବିନା
ଶାସନ-ଗାଡ଼ି କି ଚଳିପାରନ୍ତା ?
ତମରି ଯୋଗୁଁ ଦୁନିଆ ଖାଏ
କରଇ ଦୁନିଆ ଗୃହରେ ବାସ,
ଦୁନିଆ ପିଲେ ପଢ଼ିବେ ପାଠ,
ତମେ କିପାଇଁ ରହ ଉପାସ ?
ଦୁନିଆ ଯିଏ ଚଳାଏ, ବୋହି
କଷଣ ନାନା ପିଠିର ପରେ,
ନ ବୁଝେ କେହି ତୋ' ପେଟକଥା
ତୋ ପିଲା ଓଷ ପାଉନି ଜରେ ।
ମଥା ପୋତିରେ ରହିବୁ ଯେତେ
ନଦିଲାଗିବେ ହୃଦୟହୀନେ,
ଉପରେ ମଥା ଟେକ ତ ଭାଇ,
ଖସିବ ବୋଝ ଦିନେ ନା ଦିନେ ।
ମନରେ କର ଉପରବାଲା-
ସମାନ ତମେ ସେଇ ମଣିଷ,
ଜନ୍ମେ ମରଣେ ବିଧାତା ଏହା
ଦେଖାଇ ଦିଏ ଅହର୍ନିଶ ।

ପ୍ରତିଭାବାନ୍ ଚରଣେ ସିନା
କରିବା ଆମେ ପ୍ରଣାମ ନିତି,
ଆମ ଝାଳରେ ପୋଷା ହେ ସିଏ
ପାଇବେ କିଆଁ ଆମଠୁ ଭୀତି ?
ଆମ୍ ଶ୍ରମରେ ଯା ପେଟ ମୋଟା
ତା ହାତେ କିଆଁ ରହିବା ଚାହିଁ ?
ହାକିମ, ଧନୀ, କଳମାଲିକ
କା' ଯୋଗୁଁ ଯାଁଙ୍କ ବିଭବ, ଭାଇ ?
ହିଂସା, ଘୃଣା ନ କରି କା'ରେ
ନ ଆଣି ମନେ କାହାର ନାଶ,
ନିଜର ମୂଲ୍ୟ ମନରେ ହେଜି
ଏକତ୍ରିତେ ଜୋ'ରେ ଭାଷ ।
ବହୁତ ଭାର ପଡ଼ିବ ଖସି,
ଶୋଷକ ଆସି ହୋଇବେ ସାଥୀ,
ଭୋଖ-ଦୁଃଖର ମାରକ ବୋଝ
ହୋଇବ ଲଘୁ, ସ୍କନ୍ଧେ ଫାଟି ।
କିନ୍ତୁ, ମନେ ରଖିଥା ସଦା,
ସମୂହ ଶୁଭ ଜାତି, ଦେଶର;
ନିଜ ସୁବିଧା ଖୋଜିଲେ ଖାଲି,
ତମେଇ ହେବ ଜାତିର ଶଲ ।
ସମସ୍ତେ ରେ ଲାଗିବା ଆସ
ଏପରି ଗୋଟିଏ ସମାଜ ପାଇଁ,
ସକଳେ ଯହିଁ ସେବକ ଖାଲି,
ହାକିମ ନାହିଁ, ସକଳେ ଭାଇ ।

## ଭୁଲିଯାଅ ଇତିହାସ

ଭୁଲିଯାଅ ଇତିହାସ ଆଜି,
ନାହିଁ ଶୁଣ ଅତୀତ କାହାଣୀ,
ସମସ୍ତ ସେ ଧୂଳିଘର ଖେଳ,
ମାନବର ଶୈଶବର ବାଣୀ ।

ନର ଆଜି ଯୌବନର ଦ୍ୱାରେ,
ନାରୀ ଆଜି ମୁକ୍ତ, ସଚେତନ,
ନିଜ ଭାଗ୍ୟ ଗଢ଼ିବେ ନୂଆରେ,
ନବ ବିଶ୍ୱ ହେବ ବିରଚନ ।
ଆଜି ତେଣୁ ବନ୍ଧ୍ୟା-ଶ୍ରମ ଖାଲି,
ଅତୀତର କବର ଖୋଳିବା,
କାଳଗର୍ଭେ ଜୀର୍ଣ୍ଣୀଭୂତ ଯାହା,
ତା' ଉଦ୍ଧାର ବୃଥାରେ ଚେଷ୍ଟିବା ।
କୋଟି କୋଟି ବାସହୀନ ଆଜି,
ଅନ୍ନହୀନ, କଉପୀନହୀନ,
କରିବ କି କୋଟି ଗତ-କାଲି,
ଆଜିକାର ଦୁଃଖରୁ ଉତ୍ତୀର୍ଣ୍ଣ ?
ବିଶ୍ୱେ ଆଜି ଦୁର୍ଦ୍ଦିନର ମେଘ,
ନାରୀ ଭୀତ ହେବାକୁ ଜନନୀ,
ଗୃହେ ଆଜି ଅବାଞ୍ଛିତ ଶିଶୁ,
ଅନିଶ୍ଚିତ ଜୀବନ-ସରଣୀ ।
ଦରିଦ୍ରର ନାହିଁ ଅଧିକାର
ଭୋଗିବାର କରିବ କଳ୍ପନା,
ପୁଞ୍ଜିପତି ଶ୍ୱାନ ଯାହା ପାଏ
ସେ ଆଶାହିଁ ତାର ପ୍ରବଞ୍ଚନା ।
କିବା ଲାଭ, ଇତିହାସେ ଯାହା
ଖାଲି ରାଜା, ଧନୀର ବ୍ୟାପାର ?
କାହିଁ ତହିଁ ଲେଖାଅଛି ଗାଥା
କୁଟୀବାସୀ ଦୁଃସ୍ଥ ଜନତାର ?
ଭୁଲିଯାଅ ତେଣୁ ଇତିହାସ,
ଭୁଲ ରାଜା-ଜୟ-ପରାଜୟ,
ଭୁଲିଯାଅ ବର୍ଣ୍ଣ-ଧର୍ମ-ଭେଦ,
ଆଣ ବିଶ୍ୱେ ନୂତନ ସମୟ ।
ଧରିତ୍ରୀର କଳ୍ପ-କଳ୍ପ-ବ୍ୟାପୀ—
ବୟସରେ ନରର ସଭ୍ୟତା,

ଦିବସର ଦୀର୍ଘ ବ୍ୟସ୍ତତାରେ
ଶଯ୍ୟାତ୍ୟାଗ ପରି ଅଳ୍ପ କଥା ।
ଗତ-ରାତ୍ରି-ସ୍ୱପ୍ନ ପରି ତାକୁ
ଭୁଲିଯାଅ, ଗଢ଼ ନବ କାଳ,
ଏକ ଧରା, ଏକ ନରଜାତି,
ନାହିଁ ଧନୀ, ନାହିଁ ବା କାଙ୍ଗାଳ ।
ଉଜ୍ଜୀବିତ, ଉଦ୍ଭିଷ୍ଠିତ 'ଗଣ'
କି ବିରାଟ ସୃଷ୍ଟି କରିପାରେ,
ଭାବି ଥରେ, ଅତୀତରୁ ଆଣି
ଦୃଷ୍ଟି ଦିଅ ମୂଳ ସମସ୍ୟାରେ ।
ଯେ ସମାଜେ ନାହିଁ ଅନାହାର,
ଜନନୀତ୍ୱ ଶଙ୍କାହୀନ ଯହିଁ,
ନାହିଁ ଯହିଁ ଧନ-ବର୍ବରତା,
ମାନବତ୍ୱ ଅବାଧେ ଫୁଟଇ ।
ସେ ସମାଜ ତୋଳିବାରେ ଲାଗ,
କୋଣାର୍କ ସେ ନବ, ଅନଶ୍ୱର,
ଆଶ୍ଚର୍ଯ୍ୟ ଯା ନୁହେଁ ଜଣକର,
ଶୁଭ ଗର୍ବ ଆମ ସର୍ଭିଁକର ।*

---

* ଲେଖାକାଳ ଖୁବ୍ ସମ୍ଭବତଃ ୧୯୩୩ । କୌଣସି ଏକ ମାସିକ ପତ୍ରିକାରେ ବୋଧହୁଏ ପ୍ରକାଶପାଇଥିଲା ।

# ପରିଶିଷ୍ଟ-୧

ଗ୍ରନ୍ଥାବଳୀର ଏହି ଖଣ୍ଡରେ ସଂକଳିତ ଲେଖାର ରଚନାକାଳ, ପ୍ରକାଶନକାଳ ଓ ତତ୍‌ସଂପର୍କୀୟ ବିଶଦ ବିବରଣୀ ।

(କ) ଜୀବନଚିତା –

୧ । କବିର ପୁରସ୍କାର – ହେମପୁଷ୍ପ (୧୯୩୫) ।

୨ । ବୀଣା-ଭିକ୍ଷା – ୧୯୩୨ ମଧ୍ୟରେ ରଚିତ – ହେମପୁଷ୍ପ (୧୯୩୫, ଭଞ୍ଜ-ପ୍ରଦୀପ, ଜାନୁୟାରୀ, ୧୯୪୨ ।

୩ । ନିଦ୍ରିତ ଭଗବାନ – ଉତ୍କଳ ସାହିତ୍ୟ, ୩୨/୮, ମାର୍ଗଶୀର ୧୩୩୬, ନଭେମ୍ବର, ୧୯୨୮, ଜୀବନଚିତା, ୧୯୪୭, ପୃ. ୮, ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ (୧୯୬୨) ପୃ. ୩୮୪ । ଏହି କବିତା ପ୍ରଥମେ 'ଉତ୍କଳ-ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ପ୍ରଥମ ପ୍ରକାଶନ ପରେ ଏହା ପରିବର୍ତ୍ତିତ ରୂପ ନେଇ ପୁସ୍ତକ ତଥା ଗ୍ରନ୍ଥାବଳୀରେ ସ୍ଥାନିତ ହେବା ସମୟରେ ଏଥିରୁ ୩୦ ଧାଡ଼ି ବାଦ୍ ପଡ଼ିଯାଇଛି । ମାନସିଂହଙ୍କ ବ୍ୟକ୍ତିତ୍ୱର ପୂର୍ଣ୍ଣ ପରିଚୟ ପାଇଁ ଏହି ତିରିଶ ଧାଡ଼ିର ବିଶେଷ ପ୍ରୟୋଜନ ରହିଛି । କବିତାଟି ଏହି କ୍ରମରେ ଥିଲା ।

ଦ୍ୱିତୀୟ ଅଂଶର ଶେଷ ଦୁଇଧାଡ଼ି ଏହିପରି ଥିଲା –

ଧରଣୀରେ ଆସି ମନ୍ତ୍ର ଭୁଲିଲି ମୁଁ ଯେ,
ଭଗବାନ ତୁମେ ନିଦ୍ରିତ କେଉଁ କୁଞ୍ଜେ ।

ଏହାପରେ କବିତାର ତୃତୀୟ ଅଂଶରେ କୌଣସି ପରିବର୍ତ୍ତନ ହୋଇନାହିଁ । ଚତୁର୍ଥ ଅଂଶର ୨୪ଟି ଧାଡ଼ି ପତ୍ରିକାରେ ଏହି ପ୍ରକାର ଥିଲା –

(୪)

ପଥେ ଆସୁ ଆସୁ କରିଲି ଦିଓଟି ସାଥୀ
ନେବାକୁ ହୃଦର ଦୁର୍ବହ ଲୁହ ବାଣ୍ଟି,
ବକ୍ଷେ ଧରି ସେ ପୋଛିଲେ ନୟନ-ପତା,
ଅଶ୍ରୁ ବୁହାଇ କହିଲେ ପ୍ରାଣର କଥା,
(ମୁଁ ଗୋ) ତାଙ୍କରି ହୋଇ ରହିଲି ତାଙ୍କୁ ଘେରି,
ଅତୀତ ଭୁଲିଲି ନ ଚାହିଁଲି ପଥ ଫେରି,
ନଗଣ୍ୟର ବା ଭବିଷ୍ୟତ କିବା ଥାଏ
ବର୍ତ୍ତମାନର ଝଞ୍ଜାଳେ ତ ଦିନ ଯାଏ ।

ଦୁଇ ସାଥୀ ଧରି ରଚିଲି ବିଶ୍ୱ ମୋର,
ଏକଦା ଆସିଲା ମୋ ଘରେ ବିଶ୍ୱ-ଚୋର ।
ଚାଲିଗଲା ଧରି ଦୁଇରୁ ଗୋଟିଏ ସାଥୀ,
ସହସା ଘେରିଲା ମତେ ଦୁର୍ବଳ ରାତି,
ପଥତଟେ ବସି ପ୍ରଳୟର ଆଖି ତଳେ,
ଦୁହେଁ ଗୋ ଦୁହିଁଙ୍କୁ ତିନ୍ତାଇ ଆଖି ଜଳେ
ଡାକିଲୁ ଉଚେ – 'ଶଙ୍କର', 'ଶଙ୍କର',
ଚମକ ଆସିଲା, ଆଉ ଯେତେ ପଥିକର ।
ରହିଲ କାହିଁ ହେ 'କୃପାମୟ' ଭଗବାନ,
କାହିଁବା ରହିଲା ତୁମ ମଙ୍ଗଳ-ଦାନ ?
ସକଳେ ଶୁଣିଲେ ତୁମେ ନ ଶୁଣିଲ କିଆଁ ?
କିପରି ସେ ଦୟା ସାଇତିଛି ତବ ହିୟା ?
ସାଥୀରେ ଛଡ଼ାଇ ଏ ଜୀବନ ଦୁରୁବହ
କରିଛି; କିଏ ସେ ପୋଛିବ ଏ ମୋର ଲୁହ ?
ଉଷ୍ଣତା ଏ ମୋ ଲୋତକର ବୁଝୁଛଟି ?
ପ୍ରସାଦ ପାଅ ବା ଅନାଶ୍ରିତରେ ଠକି ।

ଏହାପରେ ଗ୍ରନ୍ଥାବଳୀରେ ଥିବା ଚତୁର୍ଥ ଅଂଶର ଆରମ୍ଭ, ମାତ୍ର ପତ୍ରିକାରେ ତାହା ପଞ୍ଚମ ଅଂଶ ଭାବରେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଗ୍ରନ୍ଥାବଳୀର ଷଷ୍ଠ ଅଂଶ ତଥା ସେବେଳ ପତ୍ରିକାର ସପ୍ତମ ଅଂଶର ୧୪ ଧାଡ଼ିର ପରେ ନିମ୍ନଲିଖିତ ଦୁଇପଦ ରହିଥିଲା–

ବିଷ୍ଣୁର ଗଦା କାହିଁ ବା ରହିଲା ଲୁଚି,
ଅପମାନ ନିକି ହେଉଛି ପଛକୁ ଘୁଞ୍ଚି ?

ଏହାର ପରବର୍ତ୍ତୀ ଦୁଇ ପଦ ବଦଳାଯାଇଛି । ମୂଳ ପଦ ଏହିପରି ଥିଲା–

ଯୋଗନିଦ୍ରାରେ ଶୋଇଲ ଦେବତାବୃନ୍ଦ,
ବୁଝିବ କିଏସେ ଏ ମୋର ଦାରୁଣ ଦ୍ୱନ୍ଦ ?

୪ । ଧରଣୀ ବାସ – ୧୯୩୨ ମଧ୍ୟରେ ରଚିତ ଓ ହେମପୁଷ୍ପ (୧୯୩୫)ରେ ପ୍ରଥମ ପ୍ରକାଶିତ ।

୫ । ଶେଷକଥା – ରଚ଼ନା –୧୯୩୩, ପ୍ରକାଶ – ଜୀବନଚିତା (୧୯୪୭) ।

୬ । ବିଶୃଙ୍ଖଳ ସୃଷ୍ଟି – ପ୍ରଥମପ୍ରକାଶ (ଅଗଷ୍ଟ-୧୯୩୮), ବିଚ୍ଛିନ୍ନା ୨/୧, ଜୀବନଚିତା (୧୯୪୭) ।

୭। ଜୀବନ – ହେମପୁଷ୍ପ (୧୯୩୫)।
୮। ଦକ୍ଷିଣା ପ୍ରତି – ଉତ୍କଳ ସାହିତ୍ୟ, ୩୩/୫, ଭାଦ୍ର ୧୩୩୭ (ଅଗଷ୍ଟ, ୧୯୨୯), ହେମପୁଷ୍ପ (୧୯୩୫), ପୃ. ୮୦, ଜୀବନଚିତା(୧୯୪୭) ପୃ. ୨୫।
୯। ସ୍ୱର୍ଣ୍ଣଯୁଗ – ହେମପୁଷ୍ପ (୧୯୩୫)।
୧୦। ସୁଖ ଦୁଃଖ – ହେମପୁଷ୍ପ (୧୯୩୫)।
୧୧। ବନ୍ଧନ – ଜୀବନଚିତା (୧୯୪୭)।
୧୨। ପ୍ରାଣପକ୍ଷୀ – ହେମପୁଷ୍ପ (୧୯୩୫)।
୧୩। ବିଶ୍ୱରୂପ – ହେମପୁଷ୍ପ (୧୯୩୫)।
୧୪। ଦେବପୂଜା – ନବଭାରତ, ୧/୫, ତୁଳା ୧୩୪୧, ଅକ୍ଟୋବର-୧୯୩୪, ହେମପୁଷ୍ପ (୧୯୩୫) ପୃ. ୧୩୩, ଜୀବନଚିତା – ପୃ. ୩୯, ଏହାର ଫୁଟ୍‌-ନୋଟରେ ଲେଖାଥିଲା – ଲେଖକଙ୍କ ଅପ୍ରକାଶିତ 'ହେମପୁଷ୍ପ'ରୁ।
୧୫। ମୂକଦେବତା – ହେମପୁଷ୍ପ (୧୯୩୫, 'ଗୀତାର୍ପଣ'ର ପ୍ରଥମ କବିତା। ମାନସିଂହ ଗ୍ରନ୍ଥାବଳୀ(୧୯୬୨) ପ୍ରଥମ ଭାଗରେ ଏହା ଉଭୟ 'ହେମପୁଷ୍ପ' ଓ 'ଜୀବନଚିତା'ରେ ପ୍ରକାଶିତ ହୋଇଥିଲା। କବିତାର ପାଠ ସମାନ ଥିବାରୁ ଚଳିତ ସଂସ୍କରଣରେ କେବଳ 'ଜୀବନଚିତା'ରେ ହିଁ ସ୍ଥାନିତ ହେଲା।
୧୬। ଆଲୋକ ମାଗେ– ହେମପୁଷ୍ପ(୧୯୩୫)। 'ଗୀତାର୍ପଣ'ର ଦ୍ୱିତୀୟ କବିତା।
୧୭। ଆହୁତି – ହେମପୁଷ୍ପ (୧୯୩୫), ଗୀତାର୍ପଣର ତୃତୀୟ କବିତା।
୧୮। ତୁମର ପ୍ରୟୋଜନ – ହେମପୁଷ୍ପ (୧୯୩୫), ଗୀତାର୍ପଣର ଚତୁର୍ଥ କବିତା।
୧୯। କୃତାର୍ଥ – ଜୀବନଚିତା (୧୯୪୭)।
୨୦। ଦୂର୍ବାର ଆରାଧନା – ଜୀବନଚିତା (୧୯୪୭)।
୨୧। ଅନୁତପ୍ତ ରଚନା – ସମ୍ବଲପୁର, ୨୪।୯।୧୯୫୫
୨୨। ଦୁର୍ବଳ ସୈନିକ – ଜୀବନଚିତା (୧୯୪୭)।
୨୩। ତୀର୍ଥଧୂଳୀ, ରଚନା- ୧୯୩୧-୩୨, 'ଜୀବନଚିତା' (୧୯୪୭) 'ସେ ଦିନର କବିତା'ରେ ସ୍ଥାନିତ ଓ ମାନସିଂହ ଗ୍ରନ୍ଥାବଳୀ ପ୍ରଥମ (୧୯୬୨)ରେ ଓ ୧୯୯୪ ସଂସ୍କରଣରେ ଥିବା 'ସେ ଦିନର କବିତା' ତଥା 'ଜୀବନଚିତା'ରେ ସମାନ ପାଠ ସ୍ଥାନିତ ହୋଇଥିଲା। ଚଳିତ ସଂସ୍କରଣରେ କେବଳ ଗୋଟିଏ ସ୍ଥାନରେ ପ୍ରଦାନ କରାଯାଇଛି।
୨୪। ରିକ୍ତତାର ଗୌରବ – ଭଞ୍ଜପ୍ରଦୀପ, ଜାନୁୟାରୀ-୧୯୪୨ରେ ପ୍ରଥମେ ପ୍ରକାଶିତ।
୨୫। ଅଶ୍ରୁ-ପୂଜା- ଜୀବନଚିତା (୧୯୪୭)।

୨୬ । ସମର ବିମୁଖ – ନବଭାରତ, ୬ - ୮, ମକର ୧୩୪୭, ପୃ. ୫୬୧-୬୨, 'ଜୀବନଚିତା' (୧୯୪୭) ।

୨୭ । ଆତତାୟୀ - ସହକାର - ନଭେମ୍ବର - ୧୯୪୧ ।

୨୮ । ଦ୍ୱନ୍ଦ୍ୱ – ଜୀବନଚିତା (୧୯୪୭) ।

୨୯ । ଜୀବଯଜ୍ଞ – ଡଗର-୧୨ଶ ବର୍ଷ ୧୫, ୧୬, ୧୭, ୧୮ ହୋଲି ସଂଖ୍ୟା – ୧୬ । ୩ । ୧୯୪୯ ।

୩୦ । ତୀର୍ଥଯାତ୍ରା – ନବଭାରତ, ୨ୟ ବର୍ଷ, ଷଷ୍ଠ ସପ୍ତମ ସଂଖ୍ୟା, ବିଛା ୧୩୪୨ ପୃ. ୪୭୫, ଡିସେମ୍ବର – ୧୯୩୫ ।

୩୧ । ହାତୀବାଡ଼ି – ଝଙ୍କାର-୬ଷ୍ଠ, ନବମ ସଂଖ୍ୟା, ଧନୁ, ୧୩୬୨, ପୃ. ୭୮୮ ।

**(ଖ) କୁଶ – ପ୍ରଥମ ମୁଦ୍ରଣ, ସେପ୍ଟେମ୍ବର – ୧୯୫୬ ।**

ପ୍ରକାଶକ – ଜନଶକ୍ତିପୁସ୍ତକାଳୟ, କଟକ । ଏହି ପୁସ୍ତକର ଅଧିକାଂଶ କବିତା ପ୍ରଥମେ 'କୁଶ'ରେ ହିଁ ପ୍ରକାଶ ଲାଭ କଲା । ଏଣୁ ଏଠାରେ କେବଳ ରଚନା ତାରିଖ ପ୍ରଦାନ କରାଯାଇଛି । ଯେଉଁ କେତେକ ଆଗରୁ ପ୍ରକାଶିତ ହୋଇଛି ସେ କବିତାର ସମୟ ଓ ନାମ ସ୍ୱତନ୍ତ୍ର ଭାବରେ ଦିଆଗଲା ।

୩୨ । ଏକାନ୍ତ ଏକାକୀ, ରଚନା ୨୯ । ୨ । ୧୯୫୬, ସମ୍ବଲପୁର ।

୩୩ । ବିଶ୍ୱ-ଆକର୍ଷଣ, ରଚନା ୩ । ୧୦ । ୧୯୫୫, ସମ୍ବଲପୁର ।

୩୪ । ନୂତନ ପ୍ରଣୟ, ରଚନା ୧୮ । ୧୧ । ୧୯୫୫, ସମ୍ବଲପୁର ।

୩୫ । ଏକ ଶାନ୍ତ ବିନ୍ଦୁ, ରଚନା ୩ । ୧୦ । ୧୯୫୫, ସମ୍ବଲପୁର ।

୩୬ । ଆକାଙ୍‌କ୍ଷିତ ଶୂନ୍ୟତା, ରଚନା ୩ । ୧୦ । ୧୯୫୫, ସମ୍ବଲପୁର ।

୩୭ । ବିଶ୍ୱପ୍ରାଣ, ରଚନା ୪ । ୧୦ । ୧୯୫୫, ସମ୍ବଲପୁର ।

୩୮ । ଉଦ୍‌ଗମନ, ରଚନା ୨୮ । ୧୧ ।୧୯୫୫, ସମ୍ବଲପୁର ।

୩୯ । ବିରାଟର ଆକର୍ଷଣ, ରଚନା ୨ । ୧୧ । ୧୯୫୫, ସମ୍ବଲପୁର ।

୪୦ । ପୂର୍ଣ୍ଣତାପ୍ରାପ୍ତି, ରଚନା ୧୨ । ୧୨ । ୧୯୫୫, ସମ୍ବଲପୁର ।

୪୧ । ତତ୍ତ୍ୱାନୁସଂଧାନ, ରଚନା ୧୮ । ୧୧ । ୧୯୫୫, ସମ୍ବଲପୁର ।

୪୨ । ଜୀବନ ତାରକା, ରଚନା ୧ । ୩ । ୧୯୫୬, ସମ୍ବଲପୁର ।

୪୩ । ଚିର ଅନ୍ୱେଷଣ, ରଚନା ୧୨ । ୧୧ । ୧୯୫୫, ସମ୍ବଲପୁର ।

୪୪ । ଜନ୍ମଜନ୍ମାନ୍ତର, ରଚନା ୨୬ । ୧ । ୧୯୪୬, ଦଶପଲ୍ଲା, ପ୍ରକାଶ – ଶଙ୍ଖ, ପ୍ରଥମବର୍ଷ, ଅଷ୍ଟମ ସଂଖ୍ୟା, ମାଘ, ୧୩୪୬, ପୃ. ୪୯୩, ଏହା 'ଅକ୍ଷତ' (୧୯୪୬) ସଂସ୍କରଣର ୨୭ ନମ୍ବର କବିତା ।

୪୫ । କସ୍ତୁରୀ ମୃଗ, ରଚନା ୨୧ । ୨ । ୧୯୫୬, ସମ୍ବଲପୁର ।

୪୬ । ଅଧଃପତନ, ରଚନା ୨୬ । ୧୧ । ୧୯୪୫, ରେଢ଼ାଖୋଲ, ଏହା 'ଅକ୍ଷତ' (୧୯୪୬) ସଂସ୍କରଣର ୫ ନମ୍ବର କବିତା ଭାବରେ ପ୍ରଥମେ ପ୍ରକାଶିତ ।

୪୭ । ଜନ୍ମେଜନ୍ମାନ୍ତର, ରଚନା ୧୬ । ୧୨ । ୧୯୫୫, ସମ୍ବଲପୁର ।

୪୮ ଦୁର୍ବଳର ଦଣ୍ଡ, ରଚନ ୨୩ ୧୧ ୧୯୪୫, ରେଢ଼ାଖୋଲ, 'ଅକ୍ଷତ' (୧୯୪୬) ସଂସ୍କରଣର ୭ ନମ୍ବର କବିତା ।

୪୯ । ମାତା ଓ ଶିଶୁ, ରଚନା ୨୯ । ୧୧ । ୧୯୫୫, ସମ୍ବଲପୁର ।

୫୦ । ହୋମାଗ୍ନି, ରଚନା ୨୨ । ୨ । ୧୯୫୬, ସମ୍ବଲପୁର ।

୫୧ । ତଳେତଳେ, ରଚନା ୨୧ । ୨ । ୧୯୫୬, ସମ୍ବଲପୁର ।

୫୨ । ଦର୍ଶନ ଗୌରବ, ରଚନା ୨୦ । ୧ । ୧୯୪୬, ଖଣ୍ଡପଡ଼ା, 'ଅକ୍ଷତ' (୧୯୪୬ ସଂସ୍କରଣର ୨୩ ନମ୍ବର କବିତା ।

୫୩ । ଛମଲାଗି, ରଚନା-୧୫-୯-୧୯୫୫, ସମ୍ବଲପୁର ।

୫୪ । ଭ୍ରାନ୍ତିମୟ ଜୀବନ, ରଚନା-୫-୧-୧୯୪୬, ସମ୍ବଲପୁର 'ଅକ୍ଷତ' (୧୯୪୬) ସଂସ୍କରଣର ୧୪ ନମ୍ବର କବିତା ।

୫୫ । ଉଚ୍ଛୃଙ୍ଖଳ, ରଚନା ୨୮ । ୧୧ । ୧୯୪୫, ରେଢ଼ାଖୋଲ, 'ଅକ୍ଷତ' (୧୯୪୬)ର ୮ ନମ୍ବର କବିତା ।

୫୬ । ମାତାର ଦୁଃଖ, ରଚନା ୧୪ । ୧୨ । ୧୯୫୫, ସମ୍ବଲପୁର ।

୫୭ । କ୍ଷୁଦ୍ର ପ୍ରୀତି, ରଚନା ୨୩ । ୧ । ୧୯୪୬, ଖଣ୍ଡପଡ଼ା, 'ଅକ୍ଷତ' (୧୯୪୬) ସଂସ୍କରଣର ୨୬ ନମ୍ବର କବିତା ।

୫୮ । ଈଶ୍ୱର ସାଧାରଣ, ରଚନା ୨ । ୧ । ୧୯୪୬, ସମ୍ବଲପୁର, 'ଅକ୍ଷତ' (୧୯୪୬) ସଂସ୍କରଣର ୧୦ ନମ୍ବର କବିତା ।

୫୯ । ପୁଣ୍ୟ ସ୍ପର୍ଶ, ରଚନା ୧୧ । ୧୨ । ୧୯୫୫, ସମ୍ବଲପୁର ।

୬୦ । ଅମୃତତ୍ତ୍ୱ ଲୋଡ଼ାନାହିଁ, ରଚନା ୨୨ । ୯ । ୧୯୫୫, ସମ୍ବଲପୁର ।

୬୧ । ତୃତୀୟ ନେତ୍ର, ରଚନା ୩ । ୨ । ୧୯୪୬, ସମ୍ବଲପୁର, 'ଅକ୍ଷତ' (୧୯୪୬) ସଂସ୍କରଣର ୧୧ ନମ୍ବର କବିତା ।

୬୨ । ଗୁପ୍ତ ପ୍ରଣୟ, ରଚନା ୧୯ । ୧ । ୧୯୪୬, ଖଣ୍ଡପଡ଼ା, 'ଅକ୍ଷତ' (୧୯୪୬) ସଂସ୍କରଣର ୨୧ ନମ୍ବର କବିତା ।

୬୩ । ଅନ୍ତର ଆରାଧନା, ରଚନା ୭ । ୧୨ । ୧୯୫୫, ସମ୍ବଲପୁର ।

୬୪ । ଅନ୍ତରାଲୋକ, ରଚନା ୧୦ । ୧୦ । ୧୯୫୫, ସମ୍ବଲପୁର ।

୬୫ । ଆଦାନ, 'ଅକ୍ଷତ' (୧୯୪୬) ସଂସ୍କରଣର ୯ ନମ୍ବର କବିତା ।

୬୬। ସାମାନ୍ୟ ସଞ୍ଚୟ, ରଚନା ୬।୧।୧୯୪୬, ସମ୍ବଲପୁର, 'ଅକ୍ଷତ' (୧୯୪୬) ସଂସ୍କରଣର ୧୫ ନମ୍ବର କବିତା।

୬୭। ଅଶ୍ରୁର ହିସାବ, ରଚନା ୭।୧।୧୯୪୬, ସମ୍ବଲପୁର, 'ଅକ୍ଷତ' (୧୯୪୬) ସଂସ୍କରଣର ୧୬ ନମ୍ବର କବିତା।

୬୮। କେବଳ ଦ୍ରୁତି, ରଚନା ୧୮।୧୧।୧୯୫୫, ସମ୍ବଲପୁର।

୬୯। ନିର୍ବୋଧର ଅଧିକାର, ରଚନା ୧୭।୧।୧୯୪୬ ଦଶପଲ୍ଲା, 'ଅକ୍ଷତ', (୧୯୪୬) ସଂସ୍କରଣର ୨୯ ନମ୍ବର କବିତା।

୭୦। ଜନତା ବୈରାଗ୍ୟ, ରଚନା ୩୦।୧।୧୯୪୬, ଖଡ଼ଗପୁର, 'ଅକ୍ଷତ' (୧୯୪୬) ସଂସ୍କରଣର ୩୦ ନମ୍ବର କବିତା।

୭୧। ସର୍ବସମର୍ପଣ, ରଚନା ୨୧।୧।୧୯୪୬, ଖଣ୍ଡପଡ଼ା, 'ଅକ୍ଷତ' (୧୯୪୬) ସଂସ୍କରଣର ୨୪ ନମ୍ବର କବିତା।

୭୨। ତୁମରି ଅହଂକାର, ରଚନା ୨୧।୧।୧୯୪୬, ଖଣ୍ଡପଡ଼ା, 'ଅକ୍ଷତ' (୧୯୪୬) ସଂସ୍କରଣର ୨୫ ନମ୍ବର କବିତା।

୭୩। ରୂପ ଭିକ୍ଷା, ରଚନା ୨୬।୧୧।୧୯୪୫, ରେଢ଼ାଖୋଲ, 'ଅକ୍ଷତ' (୧୯୪୬) ସଂସ୍କରଣର ୭ ନମ୍ବର କବିତା।

୭୪। ଐଶ୍ୱର୍ଯ୍ୟମୟ, ରଚନା ୧୧।୯।୧୯୫୫, ସମ୍ବଲପୁର।

୭୫। ସୁଖ ଓ ସୌନ୍ଦର୍ଯ୍ୟ, ରଚନା ୧୮।୧୧।୧୯୫୫, ସମ୍ବଲପୁର।

୭୬। ବିଭୁ ଓ ପ୍ରକୃତି (୧) ରଚନା ୧୮।୧।୧୯୪୭, ଖଣ୍ଡପଡ଼ା, 'ଅକ୍ଷତ' (୧୯୪୬) ସଂସ୍କରଣର ୨୦ ନମ୍ବର କବିତା।

୭୭। ବିଭୁ ଓ ପ୍ରକୃତି (୨), ରଚନା-୧୮।୯।୧୯୫୪।

୭୮। ବିଭୁ ଓ ପ୍ରକୃତି (୩), ରଚନା-୧୯।୯।୧୯୫୪।

୭୯। ବିଭୁ ଓ ପ୍ରକୃତି (୪), ରଚନା-୧୭।୯।୧୯୫୪।

୮୦। ବିଭୁ ଓ ପ୍ରକୃତି (୫), ରଚନା-୧୯।୯।୧୯୫୪।

୮୧। ପ୍ରଶ୍ନକାରୀ ପ୍ରାଣୀ, ରଚନା-୧୮।୧୧।୧୯୫୫, ସମ୍ବଲପୁର।

୮୨। ଅକିଞ୍ଚନର ତିତିକ୍ଷା, ରଚନା-୧୯।୧୧।୧୯୪୫, ଆଠମଲ୍ଲିକ, 'ଅକ୍ଷତ' (୧୯୪୬)ର ୧ ନମ୍ବର କବିତା।

୮୩। ନିର୍ବିକାର, ରଚନା ୩।୨।୧୯୪୭, ସମ୍ବଲପୁର, 'ଅକ୍ଷତ' (୧୯୪୭)ର ୧୨ ନମ୍ବର କବିତା।

୮୪। ଅନ୍ୟୋଽନ୍ୟ ସଂହାର, ରଚନା ୫।୧।୧୯୫୬, ସମ୍ବଲପୁର।

୮୫। ମାୟାବାଦ, ଝଙ୍କାର ୩/୮, ନଭେମ୍ବର, ୧୯୫୧, ପୃଷ୍ଠା-୬୫୪।

୮୬। ଅନ୍ୟାୟ ସୃଷ୍ଟି, ରଚନା ୧୬।୧୨।୧୯୫୫, ସମ୍ବଲପୁର।

୮୭ । ନିଖିଳର ଦୁଃଖ, ରଚନା ୧୮ । ୧୨ । ୧୯୫୫, ସମ୍ବଲପୁର ।
୮୮ । ମୋ ପ୍ରାଣେ ଧ୍ୱନିତ, ରଚନା ୧୮ । ୧୨ । ୧୯୫୫, ସମ୍ବଲପୁର ।
୮୯ । ଉପ୍ଦ୍ରିତ ଈଶ୍ୱର, ରଚନା ୫ । ୧ । ୧୯୪୬, ସମ୍ବଲପୁର, 'ଅକ୍ଷତ' (୧୯୪୬ର ୧୩ ନମ୍ବର କବିତା ।
୯୦ । କାହାଲାଗି, ରଚନା ୨୦-୮-୧୯୫୫, ସମ୍ବଲପୁର ।
୯୧ । ମୋ କ୍ରୁଶ, ରଚନା-୨୧-୮-୧୯୫୫, ସମ୍ବଲପୁର ।
୯୨ । କ୍ରୁଶ କୋଟି କୋଟି, ରଚନା-୨୪-୮-୧୯୫୫, ସମ୍ବଲପୁର ।
୯୩ । ବିକାଶର ଅଂଗ, ରଚନା- ୨୫-୨-୧୯୫୬, ସମ୍ବଲପୁର ।
୯୪ । ନିଜେଇ ବୋହିବ, ରଚନା-୨୫-୨-୧୯୫୬, ସମ୍ବଲପୁର ।
୯୫ । କ୍ରୁଶର ଆନନ୍ଦ, ରଚନା-୩୧-୧-୧୯୪୬, ଗୋବିନ୍ଦପୁର, ବାମଣ୍ଡା ।
୯୬ । କର୍ମ-ଚକ୍ର, ରଚନା-୨୭-୮-୧୯୫୫, ସମ୍ବଲପୁର ।
୯୭ । ଦ୍ୱୈତ ସମାହାର, ରଚନା-୧୧-୧-୧୯୫୬, ସମ୍ବଲପୁର ।
୯୮ । ଆପେକ୍ଷିକ ଦୃଷ୍ଟି, ରଚନା-୧୮-୧୨-୧୯୫୫, ସମ୍ବଲପୁର ।
୯୯ । ରସାଳ ଦୁଃଖ, ରଚନା-୧୧-୧-୧୯୫୬, ସମ୍ବଲପୁର ।
୧୦୦ । କିଛି ପ୍ରଶ୍ନ ନାହିଁ, ରଚନା-୨୫-୧-୧୯୪୬, ସମ୍ବଲପୁର, ଝଙ୍କାର ୭/୧୨, ମୀନ ୧୩୬୧, ପୃ. ୧୦୦୪ ।
୧୦୧ । ସର୍ବତ୍ର ବିରାଟ ଅଛି ଲୁଚି ସଂଗୋପନେ, ରଚନା-୧୬-୧୨-୧୯୫୫, ସମ୍ବଲପୁର ।
୧୦୨ । ଜୀବହଂସ ଆମୃସରେ ଖେଳେ ସଂତୋଷରେ, ରଚନା-୫-୧-୧୯୫୬, ସମ୍ବଲପୁର ।
୧୦୩ । ସ୍ରଷ୍ଟାର ଯାଦୁ, ରଚନା-୧୦-୧-୧୯୫୫, ସମ୍ବଲପୁର ।
୧୦୪ । ଆନନ୍ଦମୟ ସୃଷ୍ଟି, ରଚନା-୭-୩-୧୯୫୬, ସମ୍ବଲପୁର ।
୧୦୫ । ଦୁଃଖ ଜୟ, ରଚନା-୭-୩-୧୯୫୬, ସମ୍ବଲପୁର ।
୧୦୬ । ନାଶ ଓ ସୃଷ୍ଟି, ରଚନା-୩୧-୧୧-୧୯୫୬, ସମ୍ବଲପୁର ।
୧୦୭ । କ୍ରୁଶ ପ୍ରତ୍ୟେକର, ରଚନା ୬-୩-୧୯୫୬, ସମ୍ବଲପୁର ।
୧୦୮ । ପରିବର୍ତ୍ତିତ, ରଚନା-୨୨-୨-୧୯୫୬, ସମ୍ବଲପୁର ।
୧୦୯ । ଜନନୀ ସଂଘ, ରଚନା-୪-୧-୧୯୫୬, ସମ୍ବଲପୁର ।
୧୧୦ । ଅନୁତାପ କ୍ରୁଶ, ରଚନା-୨୨-୮-୧୯୫୫, ସମ୍ବଲପୁର ।
୧୧୧ । ଜଣକର ଉପକାର, ରଚନା-୧୪-୧୨-୧୯୫୫, ସମ୍ବଲପୁର ।
୧୧୨ । ପ୍ରତ୍ୟକ୍ଷ ଦେବତା, ରଚନା-୧୧-୧-୧୯୫୬, ସମ୍ବଲପୁର ।

୧୧୩। ଉତ୍‌ଥାନ ପତନ, ରଚନା-୨୫-୧୧-୧୯୪୫, ରେଢ଼ାଖୋଲ, 'ଅକ୍ଷତ' (୧୯୪୬)ର ୪ ନମ୍ବର କବିତା।
୧୧୪। ପ୍ରକୃତ ପୂଜା, ରଚନା-୪-୨-୧୯୫୬, ସମ୍ବଲପୁର।
୧୧୫। ଗାଏ ସେହି ମହାଗାନ, ରଚନା-୬-୩-୧୯୫୬, ସମ୍ବଲପୁର।
୧୧୬। ଯିଏ କଲା ତୁମକୁ ପ୍ରଚାର, ରଚନା-୪-୨-୧୯୫୬, ସମ୍ବଲପୁର।
୧୧୭। ଅଗ୍ରଣୀ ଭାରତ, ରଚନା-୨୭-୨-୧୯୫୬, ସମ୍ବଲପୁର।
୧୧୮। ଭବିଷ୍ୟତ ଭାରତବର୍ଷ, ରଚନା-୫-୨-୧୯୫୬, ସମ୍ବଲପୁର।
୧୧୯। ଗୃହ-ସଂସ୍କାର, ରଚନା-୨୨-୨-୧୯୫୫, ସମ୍ବଲପୁର।
୧୨୦। ମାତୃଦ୍ରୋହୀ, ରଚନା-୫-୨-୧୯୫୬, ସମ୍ବଲପୁର।
୧୨୧। ମାନବିକ ଇଂରେଜ, ରଚନା-୧-୩-୧୯୫୬, ସମ୍ବଲପୁର।
୧୨୨। ନିର୍ଦ୍ଦୟ ବ୍ରାହ୍ମଣ — ମୂଳ ବହିରେ 'ଗୀଭସ ବ୍ରାହ୍ମଣ' ନାମ ଦିଆଯାଇଛି, ରଚନା ୧-୩-୧୯୫୬, ସମ୍ବଲପୁର।
୧୨୩। ରହ ଭାରତୀୟ, ରଚନା-୬-୩-୧୯୫୬।
୧୨୪। ସଂଗ୍ରାମର କ୍ରୁଶ, ରଚନା-୨୯-୨-୧୯୫୬।
୧୨୫। ବରେଣ୍ୟ ସେ ସଂଗ୍ରାମୀର ଦଳ, ରଚନା-୮-୩-୧୯୫୬।
୧୨୬। ଚଳୀଅ ସଂଗ୍ରାମ, ରଚନା-୬-୩-୧୯୫୬।
୧୨୭। ଅଜନ୍ତା, ରଚନା-୮-୩-୧୯୫୬।
୧୨୮। ଏଲିଫାଣ୍ଟା, ପ୍ରକାଶିତ ଝଙ୍କାର ୮/୧, ବିଷୁବ ୧୩୬୩, ପୃ.୬୬।

**(ଗ) ସିନ୍ଧୁ ଓ ବିନ୍ଦୁ –**

୧୨୯। ନମସ୍କାର (୧) ପ୍ରକାଶ- ଝଙ୍କାର ୫/୬,୭, ଅକ୍ଟୋବର ୧୯୫୩, ପୃ.୪୮୯।
୧୩୦। ନରତତ୍ତ୍ୱ, ରଚନା ୮-୪-୧୯୪୯, ବାରିପଦା- ଏହି କବିତାଟି 'ଜୀବ ଅକୃତଜ୍ଞ' ନାମରେ 'ସେଦିନର କବିତା'ରେ ସ୍ଥାନିତ।
୧୩୧। ଅପେକ୍ଷମାଣ, ଡଗର ୨୦/୯,୧୦, ମାର୍ଚ୍ଚ-ଏପ୍ରିଲ ୧୯୫୭।
୧୩୨। ସମଦୁଃଖୀ ପ୍ରାଣୀ, ଝଙ୍କାର ୬/୧, ମେଷ ୧୩୬୧, ପୃ.୩୨।
୧୩୩। କପୋତ-କପୋତୀ, ରଚନା-୩୧-୨-୧୯୪୯, ବାଟ ଗାଁ, ବାଲେଶ୍ୱର।
୧୩୪। ରୂପତତ୍ତ୍ୱ, ଝଙ୍କାର- ୬/୧୦. ମକର ୧୩୬୨, ପୃ.୮୮୨।
୧୩୫। ପତିତପାବନ ବୁଦ୍ଧ, ଝଙ୍କାର-୯/୧, ମେଷ ୧୩୬୪, ପୃ.୩।
୧୩୬। ବୁଦ୍ଧଂ ଶରଣଂ ଗଚ୍ଛାମି- ଝଙ୍କାର, ୨/୧୧, ଫେବୃୟାରୀ ୧୯୫୧।
୧୩୭। ନବ ପ୍ରଣୟୀ, ଡଗର-୨୬/୨,୩ ରଜତଜୟନ୍ତୀ ସଂଖ୍ୟା, ୧୯୬୭।

୧୩୮ । ଦୂର ଓ ନିକଟ, ନବଭାରତ ନୂତନ ପ୍ରସ୍ଥ, ୧/୧୦, ପୃ. ୪୩୯-୪୪୦, କର୍କଟ ୧୩୫୫, ଜୁଲାଇ ୧୯୪୭ ।

୧୩୯ । ଶ୍ରୀକୃଷ୍ଣ, ଝଙ୍କାର ୬/୬, କନ୍ୟା ୧୩୬୨, ପୃ. ୬୦୩ ।

୧୪୦ । ସିନ୍ଧୁ ଓ ବିନ୍ଦୁ-ଝଙ୍କାର-୧୦/୨, ବୃଷ ୧୩୬୪-ମେ ୧୯୫୮, ପୃ. ୨୪୨ ।

**(ଘ) ସ୍ୱରାଜ୍ୟାଶ୍ରମ –**

୧୪୧ । ସ୍ୱରାଜ୍ୟାଶ୍ରମ-(୧), ଝଙ୍କାର ୪/୫, ଅଗଷ୍ଟ ୧୯୫୨, ପୃ. ୪୪୮ ।

୧୪୨ । ସ୍ୱରାଜ୍ୟାଶ୍ରମ-(୨), ଝଙ୍କାର ୪/୬, ସେପ୍ଟେମ୍ବର ୧୯୫୨, ପୃ. ୫୭୦ ।

୧୪୩ । ସ୍ୱରାଜ୍ୟାଶ୍ରମ (୩), ଝଙ୍କାର ୪/୭, ଅକ୍ଟୋବର ୧୯୫୨, ପୃ. ୭୫୧-୫୪ ।

୧୪୪ । ପ୍ରାଦେଶିକ, ଝଙ୍କାର ୫/୨, ମଇ ୧୯୫୩, ପୃ. ୧୫୪ ।

୧୪୫ । କଟକ ମ୍ୟୁନିସିପାଲିଟି, ଡଗର ୨୨/୫, ନଭେମ୍ବର ୧୯୫୮ ।

୧୪୬ । ଆତ୍ମାବତରଣ, ଝଙ୍କାର ୧୦/୧୨, ମାର୍ଚ୍ଚ ୧୯୫୯, ପୃ. ୧୧୦୯-୧୧୧୩ ।

୧୪୭ । ନୂତନ ପଞ୍ଚକ- ଏ କବିତାରୁ ପ୍ରଥମ ୫ଟି 'ଆସନ୍ତାକାଲି', ୧୧/୭ ଜୁଲାଇ, ୧୯୬୧ରେ ପ୍ରକାଶିତ । ଏ କବିତାରେ ଡ. ମାନସିଂହ ନୂତନ କବିତାର ତନୁତ୍ୟାଗ(ପୃ.୧-୫) ପ୍ରବନ୍ଧ ପରେ କବିତାଗୁଡ଼ିକ ମୁଦ୍ରିତ । କବିତାର କ୍ରମ- 'ତାର ତୀର୍ଥ', 'ବେଦାନ୍ତ' (ପୃ. ୬), 'ଚାଲେଞ୍ଜ', 'ରୂପକଥା' (ପୃ.୭) 'ଅହଲ୍ୟା ପ୍ରଧାନ' (ପୃ. ୮) । 'ଚାଲେଞ୍ଜ' କବିତାରୁ ଏହି ୧୯ ଧାଡ଼ିର ପରେ ନିମ୍ନ ଅଂଶକୁ କାଟିଦିଆଯାଇଛି । ମାନସିଂହଙ୍କୁ ବିଚାରକରିବାପାଇଁ ପୂର୍ବ ପଦର ଆବଶ୍ୟକତା ଥିବାରୁ ଏଥିରେ ଉଲ୍ଲେଖ କରାଗଲା ।

ମୁଖ୍ୟମନ୍ତ୍ରୀ ହେବ ସେ ଏହି ଦେଶର / ଦେଇ ନବ ସ୍ୱର୍ଗର ଆଶା/ ସେଇ ନବ ଧରାର ସ୍ୱପ୍ନ/ସେଇ ନବ ଦକ୍ଷତାର ଯୁଗ/ତା'ରି ସଂଗ୍ରାମୀ ମୁଁ/ ତା'ରି ଶହୀଦ !/ଏଇ ମୋର ମାନିଫାଷ୍ଟୋ !/ଏଇ ମୋର ଚାଲେଂଜ୍/କି ଚିର ବସନ୍ତର ସେ ସ୍ୱର୍ଣ୍ଣ ଯୁଗ !/ଉଠିଯିବ ଯେବେ ସବୁ ଭେଦାଭେଦ/ଫେଲ୍ ହୋଇ ହୋଇ ମଧ୍ୟ ମୁଁ ଖାଲି ମଟରକାର ହାଁକି/ଦେଉଥିବି ଖାଲି ଅର୍ଡର/ଅନ୍ୟମାନଙ୍କୁ ଦେଉଥିବି ମଧ୍ୟ ବକ୍ତୃତା/କ୍ଷମତା ଓ ଦେଶଭକ୍ତି ଓ ଦାୟିତ୍ୱଜ୍ଞାନ ଉପରେ/ ସେଇମାନେ ଯିଏ ଫାଷ୍ଟ ଡିଭିଜନରେ କରିଥିଲେ ପାସ୍/ତାଙ୍କୁଇ ତାଙ୍କୁଇ ଲକ୍ଷ୍ୟ କରି/କେବେ ତା' ଘଟିବ ?/ କେବେ ?/କେବେ ?/

୧୪୮ । ନିନ୍ଦା କେ କରେ ? – 'ଡଗର' ୨୨/୮, ଫେବୃୟାରୀ-୧୯୫୯ ।

**(ଙ) ଗୀତରେଣୁ** – ବିଭିନ୍ନ ପାଠ୍ୟପୁସ୍ତକରେ ସଂଯୋଜିତ ।

## ପରିଶିଷ୍ଟ-୨

**ମାନସିଂହଙ୍କ ସୃଷ୍ଟି-ବିଚାରବିମର୍ଶ –**

୧ । ଆତତାୟୀ (କବିତା-ସମୀକ୍ଷା), ଡଗର, ୫/୧୯ସଂଖ୍ୟା, ୧.୩.୧୯୪୨ ।

୨ । 'ମୋର ପ୍ରିୟ ଲେଖକ-କବି ମାନସିଂହ', ମହାପାତ୍ର ନୀଳମଣି ସାହୁ, ଡଗର ୨୪/୪, ଅକ୍ଟୋବର-୧୯୫୬ ।

୩ । କବି ମାନସିଂହଙ୍କ କାବ୍ୟପ୍ରତିଭା (ଆଲୋଚନା)-ଶ୍ରୀ ଚିନ୍ତାମଣି ବେହେରା
(କ) ଡଗର, ୨୧/୪,୫,ଅକ୍ଟୋବର-ନଭେମ୍ବର-୧୯୫୭, ପୃ.୧୩-୧୮ ।
(ଖ) କାବ୍ୟ ଓ କଳାକାର (ପ୍ରଥମ ସଂସ୍କରଣ) ପୃ.୧୦୬-୧୨୬ ।
(ଗ) କାବ୍ୟ ଓ କଳାକାର (ଦ୍ୱିତୀୟ ସଂସ୍କରଣ) ପୃ.୧୧୭-୧୪୭ ।

୪ । 'ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ' (ପ୍ରବନ୍ଧ) – ଶ୍ରୀ ଚିନ୍ତାମଣି ବେହେରା, ଓଡ଼ିଆ ସାହିତ୍ୟର ଇତିହାସ-ପରିଶିଷ୍ଟ ।

୫ । 'କୃଶ' (ସମୀକ୍ଷା)-ଅଧ୍ୟାପକ ହରେନ୍ଦ୍ର ପ୍ରସାଦ ମହାନ୍ତି, ଡଗର, ୨୨/୬, ଡିସେମ୍ବର ୧୯୫୮ ।

୬ । 'କବି ମାନସିଂହଙ୍କ ପନ୍ଦରବର୍ଷ ରଚନାର କାଳ ନିର୍ଣ୍ଣୟ' ଡ. ନଟବର ସାମନ୍ତରାୟ –
(କ) ଡଗର, ୨୧/୭, ୧୯୫୮ ପୃ.୧୬-୨୩ ।
(ଖ) ମାନସିଂହ ସ୍ମରଣିକା (ଅକ୍ଟୋବର-୧୯୭୩), ଏକାମ୍ର ଥିଏଟର୍ସ, ଭୁବନେଶ୍ୱର ।
(ଗ) ମାନସିଂହ ସୃଷ୍ଟି ଓ ସମୀକ୍ଷା (୧୯୭୮)
ସଂପାଦନା- ଅଧ୍ୟାପକ ରାଧାଶ୍ୟାମ ବେହୁରା ।
(ଘ) 'ମାନସିଂହ ପରିକ୍ରମା' (୧୯୭୯), ସଂପାଦନା- ଡ. ନିତ୍ୟାନନ୍ଦ ଶତପଥୀ ।

୭ । 'ଚତୁର୍ଦ୍ଦଶପଦୀ କବିତା ଓ ଓଡ଼ିଆ ସାହିତ୍ୟରେ ଏହାର ଧାରା' (ମଧୁସୂଦନ-ମାନସିଂହ) । (କ) ଡଗର ୨୩/୧, ଜୁଲାଇ-୧୯୫୯, (ଖ) ସାହିତ୍ୟ ଦୃଷ୍ଟି (ପ୍ରଥମ ପ୍ରକାଶ-ଅକ୍ଷୟ ତୃତୀୟା-୧୯୭୦) ପୃ.୪୫-୫୧ ।

୮ । 'ରବୀନ୍ଦ୍ରନାଥ ଓ କବି ମାନସିଂହଙ୍କ ମର୍ତ୍ତ୍ୟପ୍ରୀତି' (ପ୍ରବନ୍ଧ) – ଶ୍ରୀ ଦାଶରଥି ଦାସ ।
(କ) ଡଗର ୨୫/୧, ଜୁଲାଇ-୧୯୬୧, ପୃ.୧୯-୨୪, (ଖ) କାବ୍ୟ ସମ୍ବାଦ (ଦ୍ୱିତୀୟ ସଂସ୍କରଣ-୧୯୮୩, ପୃ- ୩୧୮-୩୪୫)

୯ । 'ରୂପ ଓ ସୌନ୍ଦର୍ଯ୍ୟର କବି ମାନସିଂହ', ଅଧ୍ୟାପକ ଦାଶରଥି ଦାସ, ସାହିତ୍ୟ ସନ୍ଧାନ, (୧୮-୧୧-୧୯୭୫) ପୃ୮୯-୧୨୬ (ଏହା ପୁସ୍ତକ ଆକାରରେ ପ୍ରକାଶ ପୂର୍ବରୁ କବି ମାନସିଂହ ଏହା ପଢ଼ି ମନ୍ତବ୍ୟ ଦେଇଥିଲେ) ।
୧୦ । 'ରବୀନ୍ଦ୍ରନାଥଙ୍କ ଅତୀନ୍ଦ୍ରିୟବାଦ ଓ ଓଡ଼ିଆ ସାହିତ୍ୟରେ ତା'ର ସଂକ୍ରମଣ'- ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ, 'ଡଗର' ୨୫/୮,୯, ଫେବୃଆରୀ-ମାର୍ଚ୍ଚ-୧୯୬୨ ।
୧୧ । 'ମାନସିଂହଙ୍କ କବିତାରେ ବେଦନାବୋଧ'- ଅଧ୍ୟାପକ ବାଳକୃଷ୍ଣ ଶତପଥୀ- (କ) ସପ୍ତର୍ଷି, ୨/୧୧, (୧୯୭୩) (ଖ) ମାନସିଂହ: ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ.୧୦୬-୧୧୩, (ଗ) ଆଧୁନିକ ଓଡ଼ିଆ କାବ୍ୟ କବିତାର ଅନ୍ତଃସ୍ୱର ଓ ଅଭିବ୍ୟକ୍ତି (୧୯୮୩), ପୃ.୧୦୩-୧୨୯ ।
୧୨ । 'ମାନସିଂହଙ୍କ କବିତାରେ ବୈଚିତ୍ର୍ୟ' - ଡ. ଗୋପାଳ ଚନ୍ଦ୍ର ମିଶ୍ର, ଉତ୍କଳ ସାହିତ୍ୟ (ନୂତନ ପ୍ରସ୍ଥ) ୧୯୭୪ ।
୧୩ । ମାଟିର କବି ମାନସିଂହ' – ଶ୍ରୀ ରାଧାଶ୍ୟାମ ବେହୁରା, ଉତ୍କଳ ସାହିତ୍ୟ (ନୂତନ ପ୍ରସ୍ଥ) ୧୯୭୪, ପୃ.୨୧-୨୩ ।
୧୪ । 'ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନାରେ ନାରୀ' – ଡ. ଖଗେଶ୍ୱର ମହାପାତ୍ର (କ) ଝଙ୍କାର, ୨୮/୧, ବିଷୁବ-୧୯୭୫, ପୃ.୪୮-୫୧ ।
(ଖ) ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ.୧୫୦-୧୫୫ ।
୧୫ । 'ମାନସିଂହଙ୍କ କାବ୍ୟ-ପ୍ରତିଭାର ଆଦ୍ୟ ଉନ୍ମେଷ' – ଅଧ୍ୟାପକ ପଠାଣି ପଟ୍ଟନାୟକ, ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮) ।
୧୬ । 'ମାନସିଂହଙ୍କ କବିତାରେ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ'- ଶ୍ରୀ ବସନ୍ତ କୁମାର ସାମଲ ମାନସିଂହ : ସୃଷ୍ଟି ଓ ସମୀକ୍ଷା' (୧୯୭୮) ।
୧୭ । 'ମାନସିଂହଙ୍କ ଜୀବନଚିତାରେ ଜୀବନଗାଥା' – ଶ୍ରୀ ରାଧାଶ୍ୟାମ ବେହୁରା, ମାନସିଂହ: ସୃଷ୍ଟି ଓ ସମୀକ୍ଷା (୧୯୭୮) ।
୧୮ । 'ମାନସିଂହ ସାହିତ୍ୟର ଏକ ଅନାଲୋଚିତ ଦିଗ – ଶିଶୁସାହିତ୍ୟ' – ଶ୍ରୀ ମନୀନ୍ଦ୍ର ମହାନ୍ତି, 'ମାନସିଂହ: ସୃଷ୍ଟି ଓ ସମୀକ୍ଷା' (୧୯୭୮) ।
୧୯ । 'ସବୁଜ ସମସାମୟିକ ଏକକ କବି ଡ. ମାନସିଂହ' ଡ. ନିତ୍ୟାନନ୍ଦ ଶତପଥୀ, ମାନସିଂହ ପରିକ୍ରମା (୧୯୭୯) ।
୨୦ । ସବୁଜରୁ ସାଂପ୍ରତିକ – ଡ. ନିତ୍ୟାନନ୍ଦ ଶତପଥୀ – ପ୍ରକାଶକ - ଗ୍ରନ୍ଥମନ୍ଦିର, କଟକ ।
୨୧ । କଳ୍ପନାର ଅଭିଷେକ – ଡ. ପ୍ରତିଭା ଶତପଥୀ (ରୋମାଣ୍ଟିକକବି ମାନସିଂହ)

୨୨ । 'ମାନସିଂହଙ୍କ କାବ୍ୟ – କବିତାରେ ଉପମା' - ଡ. କିଶୋର ଚନ୍ଦ୍ର ମିଶ୍ର ।

(କ) 'ଉତ୍କଳ ଗୌରବ, ୧୭ଶ ଅର୍ଘ୍ୟ (୧୯୮୪) ପୃ.୧୧-୧୯, ପ୍ରଗତି ଉତ୍କଳ ସଂଘ, ରାଉରକେଲା, ମୁଖପତ୍ର ।

(ଖ) ବାସନ୍ତିକା, ସପ୍ତମ ଅର୍ଘ୍ୟ (୧୯୮୪), ପୃ. ୨୬-୩୨, ମିଉଜିକ୍ ସର୍କଲ, ରାଉରକେଲା, ମୁଖପତ୍ର ।

(ଗ) 'ଡଗର', ୪୭/୨, ଅଗଷ୍ଟ-୧୯୮୩, ପୃ.୪-୭ ।

(ଘ) ଉତ୍କଳ ଗୌରବ, ୧୮ଶ ଅର୍ଘ୍ୟ (୧୯୮୫),ପୃ.୨୧-୩୨ । ପ୍ରଗତି ଉତ୍କଳ ସଂଘ, ରାଉରକେଲା, ମୁଖପତ୍ର ।

(ଙ) ବାସନ୍ତିକା, ଅଷ୍ଟମ ଅର୍ଘ୍ୟ (୧୯୮୫) ମିଉଜିକ୍ ସର୍କଲ, ରାଉରକେଲା, ମୁଖପତ୍ର ।

(ଚ) ଉତ୍କଳ ଗୌରବ, ୧୯ଶ ଅର୍ଘ୍ୟ (୧୯୮୬), ପୃ. ୧୬-୩୪ । ପ୍ରଗତି ଉତ୍କଳ ସଂଘ, ରାଉରକେଲା, ମୁଖପତ୍ର
ଡ. କିଶୋରଚନ୍ଦ୍ର ମିଶ୍ରଙ୍କର ଏହା ଏକ ଧାରାବାହିକ ଆଲୋଚନା – ଉପରୋକ୍ତ କ୍ରମରେ ଏହା ପ୍ରକାଶିତ ହୋଇଛି ।)